# ବିଲଙ୍କା ରାମାୟଣ

बिलंका रामायण (ଉତ୍ତର ଖଣ୍ଡ) उत्तर खण्ड)



ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର

ମୂଲ୍ୟ —ପାଞ୍ଚଟଙ୍କା ମାତ୍ର

## ବିଲଙ୍କା ରାମାୟଣ ଉତ୍ତରଖଣ୍ଡ

# ସୂଚିପତ୍ର



— ସମାପ୍ତ —

## ସଚିତ୍ର

# ବିଲଙ୍କା ରାମାୟଣ

## ଉତ୍ତର ଖଣ୍ଡ

୨

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ୍ ।
ବେଦ ରାମାୟଣେ ଚୈବ ପୁରାଣେ ଭାରତ ତଥା ।
ଆଦୌ ଅନ୍ତ୍ୟେ ଚ ମଧ୍ୟେଚ ହରିଃ ସର୍ବତ୍ର ଗୀୟତେ ।

ନମାମି ରାମଂ ରଘୁବଂଶ ମୁଖ୍ୟଂ
ନମାମି ରାମଂ ସୁର କଳ୍ପବୃକ୍ଷଂ ।
ନମାମି ରାମଂ କମଳାୟତାକ୍ଷଂ
ନମାମି ରାମଂ ରଘୁନନ୍ଦନାକ୍ଷଂ ।

### ପାର୍ବତୀଙ୍କ ପ୍ରଶ୍ନ ଓ ରାମଙ୍କ ଅଜ୍ଞାନର କାରଣ ବର୍ଣ୍ଣନ

ବନ୍ଦଇ କାଳକା ମାଗୋ ଦୁରିତ ନାଶିନୀ
ବନ୍ଦଇ କାଳକା ମାଗୋ ଅଭୟ ଦାୟିନୀ ।
ବନ୍ଦଇ କାଳକା ମାଗୋ ତୋ ପୟର ବେନି
ବନ୍ଦଇ କାଳକା ମାଗୋ ଜଗତ ଜନନୀ ।
ଜଗତ ଜନଙ୍କୁ ମାତ ପାଳୁ ଯେ ସଂହାରୁ
ତୋହର ମହିମା ମାଗୋ ଅପାର ଅପାରୁ ।
ମାତ ତୁ ଶାରଳା ପୁଣି ମଙ୍ଗଳା ବୋଲାଉ
ନାମ ତୋହର ଅସଂଖ୍ୟ କେତେରୂପେ ଥାଉ ।

ହସ୍ତରେ ଖପର ଧରି କରୁ ମା ସଂହାର
ତୋହର ଦାଢ଼ୁ ତରୁରି ନ ପାରନ୍ତି ହର ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଚନ୍ଦ୍ର କୁବେର ବରୁଣ
ଏଣୁ ବନ୍ଦୁ ଥାନ୍ତି ନିତ୍ୟ ତୋହର ଚରଣ ।
ତୋର କୃପା ନୋହିଲେ କି ମୁଁ ମୂଢ଼ ମୂରୁଖ
ରାମାୟଣ ଲେଖିବାକୁ ହୋଇବଇଁ ଶକ୍ୟ ।
ସାମବେଦୁ ଜାତ ଯେଉଁ ରାମାୟଣ ଗ୍ରନ୍ଥ
ଶିବଙ୍କର ପଞ୍ଚମୁଖେ ହୋଇଛି ଉକତ ।

ତାହା ମୁହିଁ ଲେଖୁଅଛି ନାହିଁ ମୋର ଦୋଷ
ଯାହା ତୁ କହୁଛୁ ତାହା କରଇ ପ୍ରକାଶ ।
ସତ ହେଉ ମିଛ ହେଉ ତୋହର ଯା ଆଜ୍ଞା
ତାହା ମୁହିଁ କେବେ କରି ନ ପାରେ ଅବଜ୍ଞା
ଜଗତଜନନୀ କାଳୀ ଚରଣେ ଶରଣ
ହୀନ ମୂଢ଼ ଜଗନ୍ନାଥ ଅଟେ ହୀନ ଜନ ।
ଜୟ ତୁ ଜୟ ତୁ ରାମ କରୁଣା ସାଗର
ରାକ୍ଷସଙ୍କ ପାଇଁ ତୋର ସିନା ଅବତାର ।



ତୋହର ଚରଣ ତଳେ ପଶୁଛି ଶରଣ
ନାମ ବହିଛୁ ତୁ ଯେଣୁ ପତିତ ତାରଣ ।
ଲେଖୁଛି ଚରିତ ତୋର ନାହିଁ ମୋର ଦୋଷ
ଯେଣୁ ମୁହିଁ ତବ ପାଦ ଦାସର ମୁଁ ଦାସ ।
ଶିବ ପାର୍ବତୀଙ୍କ ପାଦେ ପଶିଲି ଶରଣ
ଜଗତର ପିତା ମାତା ଯେଉଁ ଦୁଇଜଣ ।
ଶଙ୍କର କହନ୍ତି ଦେବୀ ପାର୍ବତୀ ଶୁଣନ୍ତି
କଇଳାସ ପରବତେ ବସି ହୈମବତୀ ।

ଧରି ଚରଣରେ ପଡ଼ି ବୋଲନ୍ତି ହେ ନାଥ
ତୁମ୍ଭେ ତ ପରମଯୋଗୀ ଯୋଗମାର୍ଗେ ରତ ।
ହେଲେ ସମସ୍ତଙ୍କୁ ବର ଦିଅ ମହେଶ୍ୱର
ଶତ୍ରୁ ମିତ୍ର ବୋଲି କିଛି ନାହିଁ ନ ଈଶ୍ୱର ।
ଏଣୁ ତୁମ୍ଭଙ୍କୁ ବୋଲନ୍ତି ଭୋଳାନାଥ ଯୋଗୀ
କିଞ୍ଚିତ କଥାରେ ନାଥ ଯାଅ ପୁଣି ରାଗି ।
ଏଣୁ କହିବାକୁ ମୋତେ ମାଡ଼ୁଅଛି ଡର
ଟିକିକ କଥାରେ ଶଡ଼ ଲେଙ୍ଗଟିକ ଚୀର ।

ଚଢ଼ ଚଢ଼ କାହାକୁ ଯେ ଦିଅ ବଡ଼ କରି
କାହାକୁ ବା କୋପକରି ରସାତଳେ ଭରି ।
ତପେ ବରି କୋପେ ବରି ଦିଅ ପ୍ରାଣନାଥ
ତୁମ୍ଭ ମହିମା ନ ଜାଣେ ଦେବ ଶଚୀନାଥ ।
ନ ଜାଣନ୍ତି ବ୍ରହ୍ମା ବିଷ୍ଣୁ ମହିମା ତୁମ୍ଭର
ଦେବଙ୍କ ଉପରେ ତୁମ୍ଭେ ମହାଦେବ ହର ।
କେତେବେଳେ କେଉଁବେଶ କେ ପାରିବ ଜାଣି
ବସିବା ଶୋଇବା ସ୍ଥାନ ତୁମ୍ଭର ମଶାଣି ।
ମନରେ ସନ୍ଦେହ ମୋର ହୋଇବାରୁ ଜାତ
ପଚାରିବା ପାଇଁ ଡର ମାଡ଼ୁଛି ହେ ନାଥ ।
ଲେଙ୍ଗୁଟି ଖଣ୍ଡିକ କାଲେ ପକାଇବ ଚିରି
ପଳାଇବ କାଲେ ଏଥୁ କପାଳକୁ ଧରି ।
ମୋର କଥାକୁ ତ ନାଥ ଚଳ ପୁଣି ବେଶି
ମୁହିଁ ସତ କହିବାରୁ ଆହେ କାଶୀବାସୀ ।
ପାର୍ବତୀଙ୍କ କଥା ଶୁଣି ହସିଲେ ଶଙ୍କର
ବୋଇଲେ ପ୍ରିୟା କମ୍ପାଇ ଏତେ ତୋର ଡର ।
ତୁ ମୋହର ଅର୍ଦ୍ଧଅଙ୍ଗ ମୁଁ ତୋହର ପ୍ରାଣ
ତୋହର ମୋହର କିଛି ନାହିଁ ଭିନ୍ନାଭିନ୍ନ ।
ତୁ ଜୀବ ପରମ ମୁହିଁ ସିନା ଆଗୋ ସଖି
ତୁ ପିଣ୍ଡ ବ୍ରହ୍ମାଣ୍ଡ ମୁହିଁ ଏଥିରେ କି ଧୋକା ।
ମୁହିଁ ଦିନ ତୁହି ରାତି କି ଭାବନା ତୋର
ତୋ ଯୋଗ କରୁଛି ସିନା ମୁହିଁ ଏ ସଂସାର ।
ତୋତେ ଛାଡ଼ି କାହିଁ ରହି ପାରିବି କି କ୍ଷଣେ
ଉଠ ଉଠ ସଖୀ କମ୍ପା ପଡ଼ୁଛୁ ଚରଣେ ।
କହୁଛି ତୋତେ ଗୁପତ ବ୍ରହ୍ମଜ୍ଞାନ ଗୋଟା
ଯେଉଁ ଜ୍ଞାନବଳେ ମୁହିଁ ହୋଇଲି ଲଙ୍ଗଟା ।
ସେ ଗୁପତ ଧନ ଗୋଟା ସମର୍ପିଲି ତୋତେ
ଯାହା କେହି ନ ଜାଣନ୍ତି ଏ ତିନି ଜଗତେ ।
ଯାହା ପଚାରିବୁ ତାହା କହିବି ନିଶ୍ଚିତ
ଏମନ୍ତ ଶୁଣି ପାର୍ବତୀ ହୋଇ କୃତକୃତ୍ୟ ।
ବୋଇଲେ ନାଥ ମୋ ଆଗେ କହିଲ ପୁରାଣ
ସାତଖଣ୍ଡ ରାମାୟଣ ଆଦ୍ୟ ପ୍ରାନ୍ତ ଜାଣ ।
ଲଙ୍କା କାଣ୍ଡ କହିଲ ଅନୁଗ୍ରହ କରି
ଶୁଣିଲି ତୁମ୍ଭ ମୁଖରୁ ଭବୁ ଗଲି ତରି ।
ରାମ ନାମ ଠାରୁ ନାମ ନାହିଁ ଯେ ଅଧିକ
ଯେଉଁନାମ ଗୋଟି ଅଟେ ବ୍ରହ୍ମ ଯେ ତାରକ ।

ଯେଉଁନାମେ ରତ୍ନାକର ପାପୀ ଗଲା ତରି
ଭୁଷଣ୍ଡି କାକ ଅମର ହେଲା ମୁଖେ ଧରି ।
ବ୍ରହ୍ମାର ଯେ କଣ୍ଠରତ୍ନ ମାଳା ଯେଉଁ ନାମ
ତୁମ୍ଭଙ୍କୁ ପଞ୍ଚଶର କଲା ନାଶି ପାପତମ ।
ଗୋରୁହତ୍ୟା ବ୍ରହ୍ମହତ୍ୟା ସ୍ତ୍ରୀହତ୍ୟା କରି
ତରିଗଲ ତୁମ୍ଭେ ନାଥ ରାମ ନାମ ଧରି ।
ସେହି ନାମ ଧରି ମୁହିଁ ନାଶିଲି ଦୁଷ୍କୃତ
କଥାଏ ସନ୍ଦେହ ମନେ ହୋଇଲା ହେ ନାଥ ।
ବୋଇଲେ ଜଗତନାଥ ରାମରୂପ ଧରି
ଦଶରଥ ରାଜା ରାଣୀ ଗର୍ଭେ ଅବତରି ।
ଦଶଶିରା ରାବଣକୁ ମାରିବା ନିମନ୍ତେ
ସୀତା ଠାକୁରାଣୀକି ସେ ଘେନିଣ ସଙ୍ଗତେ ।
ସାତସମୁଦ୍ରକୁ ପାରି ହୋଇ କଲେ ବଧ
ଦଶଶିରା ରାବଣକୁ ଯେ ଜଗତେ ଅବଧ ।
ବିଶ୍ରବା ଋଷିର ପୁଅ ଅଟଇ ବ୍ରାହ୍ମଣ
ବ୍ରହ୍ମାର ବରେ ଦର୍ପିଷ୍ଠ ହୋଇଲା ରାବଣ ।
ସୀତା ହରି ନେଇ ସିନ୍ଧୁ ମଧ୍ୟେ ଥିଲା ଲୁଚି
ସମୁଦ୍ର ବାନ୍ଧି ତାହାର ବଂଶ ଦେଲେ ପୋଛି ।
ଦଶଗୋଟା ଶିର କାଟିଦେଲେ ରଘୁବଳ
ତହୁଁ ଯାଇଁ ଲଙ୍କାରେ ପଶି କଲେ କଳି ।
ଦେବଙ୍କ ପାଇଁ ମାନବ ଦେହ ଧରି ରାମ
ବହୁତ କଷ୍ଟ ସହିଲେ ଛାଡ଼ି ରାଜଧର୍ମ ।
ଜଗତନାଥ କମ୍ପାଇଁ ପାଇଲେ ଏ କଷ୍ଟ
ଜନ୍ମ ହେଲା ମାତ୍ରେ କଲେ ଅସୁରଙ୍କୁ ନଷ୍ଟ ।
ତାଡ଼କା ମାରି ମୁନିଙ୍କ ଯାଗ ଯାଇଁ ରଖି
ମୁନିଙ୍କ ସଙ୍ଗତେ ଫଳ ମୂଳମାନ ଭକ୍ଷି ।
ମୃଗଚ୍ଛାଲରେ ଶୋଇଣ କଟାଇଲେ କାଳ
ରାଜାର ଘରେ ଜନମି ହେଲା କେଉଁ ଫଳ ।
ରାଜ୍ୟ ସୁଖ ଭୋଗ ତେଜି ପଶିଲେ ବନସ୍ତ
ରାକ୍ଷସ ନାଶି ମୁନିଙ୍କି କରିଣ ନିଶ୍ଚିନ୍ତ ।
ମିଥିଳାରେ ବିଭା ହୋଇ ସୀତା ଠାକୁରାଣୀ
ତୁମ୍ଭ ଧନୁ ଗୋଟାକୁ ସେ ଭାଙ୍ଗିଦେଇ ପୁଣି ।
ପରଶୁରାମକୁ ବାଟେ ତୋଷ କରି ଆସି
ରାଜାହେବା ଦିନ ଗଲେ ବନେ ହୋଇ ଖୁସି ।
ଚଉଦ ବରଷ କାଳ ସହି କଷ୍ଟ ଘୋର
ରାବଣ ମାରି ତୁଅନ୍ତେ ପୁଣି ନୃପବର ।

ବଲଙ୍କା ଯାଇ ସହସ୍ରଶିରାକୁ ମାଇଲେ
ପୁଣି ଆସି ସୀତାଙ୍କୁ ସେ ବନସ୍ତେ ପେଶିଲେ ।
ତ୍ରୈଲୋକ୍ୟ ଠାକୁର ହୋଇ ପାଇଲେ ଏ ଦୁଃଖ
ଏଥିର କାରଣ ମୋତେ କହ ପଞ୍ଚମୁଖ ।
ଆବର କଥାଏ ଏବେ କହୁଅଛୁ ଶୁଣ
ସହସ୍ରଶିରା ନାମରେ ଯେବଣ ରାବଣ ।
ତାହାର ପୁତ୍ରର ନାମ ଅଟେ ଶତଶିରା
ଭାଇର ନାମ ତାହାର ଅଟଇ ତ୍ରିଶିରା । ୯୦
ବାପର ନାମ ତାହାର ଲକ୍ଷଶିରା ବୀର
ସେହିକ ତହିଁ ନୃପତି ନ ଥିଲା ହେ ହର ।
କାହାର ପୁତ୍ର କେମନ୍ତେ କାହା ଗର୍ଭୁ ଜାତ
ଜଗତେ ଜନ୍ମି ସେ କରିଥିଲା କି କି କୃତ୍ୟ ।
କେମନ୍ତେ ମଲା ତା ମୋତେ କହିବା ବୁଝାଇ
ବଲଙ୍କାରେ ବୁଲାଇଲେ ରାମ ଲୁହାମଇ ।
ରାମଙ୍କ ହାତେ ସେ ମଲା କାହିଁ ପାଇଁ ପୁଣି
କାହାଠାରୁ ବର ପାଇଥିଲା ବୀରମଣି ।
ଏଡ଼େ ବଳବନ୍ତ କିମ୍ପା ହୋଇଲେ ଅସୁରେ
କେମନ୍ତେ ରହିଲେ କହ ସେ ବଲଙ୍କାପୁରେ ।
ସେ ଦ୍ୱୀପ ଗୋଟି ସୃଜିଲା କିଏ ଶୂଳପାଣି
ଦାନବ ବଳ ପାଇଲା କାହୁଁ ସେହି ପୁଣି ।
ଏହି ସନ୍ଦେହ ମନରେ ହେବାରୁ ମୋହର
ପଚାରୁଅଛି କୃପାକରି କହ ପ୍ରାଣେଶ୍ୱର ।
ପାର୍ବତୀ ଦେବୀଙ୍କ ମୁଖୁଁ ଏମନ୍ତ ଯେ ଶୁଣି
ବୋଇଲେ ତୁ ଧନ୍ୟ ଧନ୍ୟ ପର୍ବତ ଦୁଲଣୀ ।
ତୋହତୁଲ୍ୟ ଶ୍ରୋତା ମୁହିଁ ଦେଖିନାହିଁ ଜଣେ
ତୋମନ ରହିଲା ରାମ ଚରିତ ଶ୍ରବଣେ ।
ଗଣ୍ଡି କଥା ଯାକ କାହୁଁ ପଚାରୁଛୁ ଆଣି
ଜାଣିଲି ବୁଝି ପାରୁଛୁ ଶ୍ରୀରାମ କାହାଣୀ ।
ନୋହିଲେ ଏତେ ସନ୍ଧିରୁ ଭେଦନ୍ତୁ କେମନ୍ତେ
କହିବ ରାମ ଚରିତ ସାଧୁ ସନ୍ଧ ହିତେ ।
ପାପୀଏ ଶୁଣି ତରିବେ ଏହି ସାଧୁ ଗ୍ରନ୍ଥ
ପାଷାଣ୍ଡ କର୍ଣ୍ଣେ ବାଜିଲେ ହୋଇବେ ସେ ସନ୍ଥ
ଶ୍ରୀରାମ କିଷ୍କିନ୍ଧ୍ୟା ନଗ୍ରେ ହୋଇଲେ ପ୍ରବେଶ
ସୁଗ୍ରୀବ ହେଲା ତାଙ୍କର ଅତ୍ୟନ୍ତ ବିଶ୍ୱାସ ।
ଦୁଇଜଣଙ୍କର ଦଶା ହେବାରୁ ଏକତ୍ର
ଅଗ୍ନି ଛୁଇଁ ବେନିଜନ ହୋଇଲେ ମଇତ୍ର ।

ମଇତ୍ର ଛଳେ ବାଳିକି ବଧିଲେ ଶ୍ରୀରାମ
ମହାବଳ ବାଳିର ଯେ ଦେଖି ପରାକ୍ରମ ।
ବୃକ୍ଷର ଉହାଡ଼େ ଲୁଚି ଗୁଣେ ଯୋଚି ବାଣ
ଟାଣ କରି ବେନି ଭାଇ କରୁଛନ୍ତି ରଣ ।
ଏମନ୍ତବେଳେ ଓଟରି ବିନ୍ଧିଦେଲେ କୋପେ
ବାଳିବୀର ସେ ନାରାଚ ଗୋଟା ଖାଇ କମ୍ପେ
ମୂର୍ଚ୍ଛି ବୁଲାଇ ପଡ଼ିଲା ଲୋଟି ଭୂମିତଳେ
ଶ୍ରୀରାମଙ୍କ ମୁଖଚାହିଁ ବୋଲଇ ବିକଳେ ।
ଜାଣିଲି ତାରା ତୁ ଅଟୁ ପରମ କଲ୍ୟାଣୀ
ମନା କରିଥିଲୁ ମୋତେ ଆଗରୁ ତୁ ଜାଣି ।
ନ ମାନିଲି ତୋର କଥା ମନେ ଗର୍ବ ବହି
ସତ୍ୟକଥା କହିଥିଲୁ ଆଲୋ ତାରା ତୁହି ।
ଏମନ୍ତ କହି ବୋଇଲା ଆହେ ରଘୁନାଥ
ତୁମ୍ଭେ ଯେ ଅଟ ଅନାଥ ଜନଙ୍କର ନାଥ ।
ମୁଁ ହୀନ ବାନର ସ୍ଥିର ଜାତିରେ ତ ପଶୁ
ଉଦ୍ଧାର କରିବା ନାଥ ଯମରାଜା ତ୍ରାସୁ ।
ବେଶି କହିବାକୁ ମୋର ପ୍ରାଣ କଣ୍ଠାଗତ
ଏମନ୍ତ ଶୁଣି ଶ୍ରୀରାମ ହୋଇ ମହାପ୍ରୀତ ।
ବୋଇଲେ ବାନର ରାଜ କାହାକୁ ତୁ ଡରୁ
ପାଇବୁ ଅକ୍ଷୟ ସ୍ୱର୍ଗ ଆମ୍ଭରି କୃପାରୁ ।
ଏହା କହି ବାଳି ଦେହେ ବୁଲାଇଲେ କର
ବିମାନେ ଘେନି ମିଳିଲେ ଆକାଶେ ଅମର ।
ବାଳିର ଭାରିଯା ଯେହୁ ତାରା ମହାସତୀ
ଅନ୍ତଃପୁରରୁ ଅଇଲା ଶୁଣି ସେ ତଡ଼ିତ ।
ଦେଖିଲା ପଡ଼ିଛି ସ୍ୱାମୀ ଧୂଳିର ଉପରେ
ରାମ ଲକ୍ଷ୍ମଣ ସୁଗ୍ରୀବ ଅଛନ୍ତି ପାଖରେ ।
ସୁଗ୍ରୀବ ଆଉଁସି ଦେଉଅଛି ବାଳିପାଦ
ଶିର ଆଉଁସି ଦିଅନ୍ତି ପ୍ରଭୁ ରାମଚନ୍ଦ୍ର ।
ଶଇଳ ଫୁଟି ଯେସନେ ବହିଯାଏ ନଈ
ତେସନ ରୁଧିର ଧାରା ହୃଦରୁ ବହଇ ।
ଦେଖିଣ ରମଣୀମଣି ଶିରେ କରତାଡ଼ି
ବୋଇଲା ରାଘବ ତୁମ୍ଭେ ରାଜ୍ୟ ବାଡ଼ି ଗୁଡ଼ି ।
ମୋତେ ରଣ୍ଡି କରିବାକୁ ଆସିଥିଲ ଏଥେ
ଅନାଥ ନାଥ ବୋଲନ୍ତି ତୁମ୍ଭଙ୍କୁ କେମନ୍ତେ ।
ମୁହିଁତ ନିର୍ଦ୍ଦୋଷୀ ମୋର ସ୍ୱାମୀତ ନିର୍ଦ୍ଦୋଷୀ
ମାଇଲ କିମ୍ପାଇଁ ବୃକ୍ଷମୂଳେ ଲୁଚି ବସି ।

ଯହିଁପାଇଁ ମାଇଲ ହେ ରଘୁକୁଳ ବର
ତାହାର ଉପରେ ପଡ଼ୁ ନିଶ୍ୱାସ ମୋହର ।
ତାକୁ ତୁମେ ଭୋଗ କରି ନ ପାରି ହେ ରାମ
ମୁହିଁ ଯେବେ ସତୀ ମୋର କଥା ନୋହୁ ଆନ ।
ଏମନ୍ତ ଶାପ ଦିଅନ୍ତେ ତାରା ମହାଦେଈ
ବ୍ୟାକୁଳ ହେଲେ ତା ଶୁଣି ରଘୁକୁଳସାଇଁ ।
ବୋଇଲେ ନ ବୁଝି କୋପ ନ କର ସୁନ୍ଦରୀ
ଆମ୍ଭେ ସଂସାର ଅହିତ ନ କରୁ କାହାରି ।
ତୋହର ସ୍ୱାମୀକି କଲୁ ପଶୁଜନ୍ମୁ ପାର
ଆମ୍ଭର ହସ୍ତେ ସେ ମରି ପାଇଲା ଉଦ୍ଧାର ।
ବହୁତ କାଳ ବଞ୍ଚି ସେ ପାଳିଲାକ ମହୀ
ଅବଶ୍ୟ ଦିନେ ମରନ୍ତା ନ ପାଆନ୍ତା ତାହି ।
ଯମର ଦାଣ୍ଡରୁ କେହି ନ ଯାଇ ଉବୁରି
ସ୍ୱର୍ଗରେ ସୁଖେ ବସିଲା ଆମ୍ଭ ହସ୍ତେ ମରି ।
ନ ବୁଝି କଥାର ସନ୍ଧି କରୁଅଛୁ କୋପ
ବିଧବା ନୋହିବୁ ଦେଖି ତୁ ଆମ୍ଭର ରୂପ ।
ମହାସତୀ ବୋଲାଇବୁ ଆମ୍ଭର ବଚନ
ଆମ୍ଭଙ୍କୁ ତୁ ଶାପ କିମ୍ପା ଦେଉ ଅକାରଣ ।
ଯେବେ ଶାପ ଦେଲୁ ସତୀ କହ ପ୍ରତିକାର
ଯେଉଁ ମୁଖେ ଉଦ୍‌ଗାରଇ ବିଷ ଅହିବର ।
ସେ ଯେସନେ ସେ ମୁଖରେ ବିଷ ନିଏ ହରି
ତୁହି ମୋହର ଶାପକୁ ନିଅ ସେହିପରି ।
ଆମ୍ଭର ବୋଲେ ଯେ ତୋତେ ସୁମରିବପ୍ରାତେଃ
ତାହାର ଆପଦମାନ ଖଣ୍ଡିବୁ କହୁଁଛେ ।
ବିଧବା ନୋହି ସଧବା ହେବୁ ତୁ ଗୋ ସତୀ
ଅଷ୍ଟ ଅଳଙ୍କାର ତୋର ଥିବ ସେହିମତି ।
ତୁହି ରାଣୀ ହେବୁ ରାଜା ହେବ ତୋ ଦିଅର
ଯୁବରାଜ ହୋଇବ ତୋ ଅଙ୍ଗଦ କୁମର ।
ରାଜ୍ୟ ପାଳିବ ସେ ତୁମ୍ଭେ ଦୁହେଁ ଥିବ ସୁଖେ
ପ୍ରଭୁ ମୁଖରୁ ଏମନ୍ତ ଶୁଣି ତାରା ଦୁଃଖେ ।
ବୋଇଲା ହେ ପ୍ରଭୁ ମୁହିଁ କହିଗଲି ଯାହା
ତୁହି କି ଆନ କରିବୁ କହ ପ୍ରଭୁ ତାହା ।
ଅବଶ୍ୟ ପାଇବୁ ତୁହି ସୀତା ଠାକୁରାଣୀ
କିଛି ଦିବସ ତୁ ଭୋଗ କରିବୁ ତା ପୁଣି ।
ଅବଶ୍ୟ ତାର ତୋହର ହୋଇବ ବିଚ୍ଛେଦ
ପରମାନନ୍ଦ ପୁରୁଷ ତୋର କି ବିଷାଦ । ୧୧୦

ଏମନ୍ତ ଶୁଣି ଆନନ୍ଦ ହେଲେ ରଘୁମଣି
ଖଣ୍ଡି ନ ପାରିଲେ ସତୀ ଶାପକୁ ସେ ପୁଣି ।
ତେଣୁ ଏ ଦଣ୍ଡ ପାଇଲେ ଜାଣ ହୈମବତୀ
ଆବର ପୂର୍ବରେ ଶାପ ଦେଇଥିଲେ ସତୀ ।
ସେହି ଶାପେ ବାଳକାନ୍ତ ପାଇଲେ ସେ କଷ୍ଟ
ତାଙ୍କ ଭାରିଯାକୁ ହରିନେଲା ସେହି ଦୁଷ୍ଟ ।
ପାର୍ବତୀ ବୋଇଲେ ତାହା କହ ମୋରଆଗେ
ଶ୍ରୀ ବିଷ୍ଣୁଙ୍କୁ ଶାପଦେଲା ସତୀ କେଉଁବାଗେ । ୧୧୪
କି ନାମ ତାହାର ସେହି କାହାର ଘରଣୀ
ଜଗତନାଥଙ୍କୁ ଶାପ ଦେଲା ସେ ତରୁଣୀ ।
ଏତେ ବଡ଼ କଥା ହେଲା ନାହିଁ ପୁଣି ଭୟ
ତାକୁ ଏଡ଼ି ନ ପାରିଲେ ସେ ଦେବାଧିରାୟ ।
ଏ ବଡ଼ ବିଚିତ୍ର କଥା କହିବା ବୁଝାଇ
ଏମନ୍ତ ଶୁଣି ବୋଇଲେ ହସି ଉମାସାଇଁ ।
ସତୀ କନ୍ୟା ଠାରୁ ବଡ଼ ନାହିଁ କେହି ଜାଣ
ପୁରୁଷ ମଧ୍ୟେ ଯେମନ୍ତେ ଗରିଷ୍ଠ ବ୍ରାହ୍ମଣ ।
ଦେବଙ୍କ ମଧ୍ୟେ ଯେସନେ ଶ୍ରୀହରିଟି ବଡ଼
ପକ୍ଷୀଙ୍କ ମଧ୍ୟେ ଯେସନେ ଅଟଇ ଗରୁଡ଼ ।
ଭକତ ମଧ୍ୟେ ଯେସନେ ପ୍ରହ୍ଲାଦ ଅସୁର
ବଇଷ୍ଣବ ମଧ୍ୟେ ଯେହ୍ନେ ବିଭୀଷଣ ବୀର ।
ଋଷିଙ୍କ ମଧ୍ୟେ ଯେସନେ ଅଟଇ ନାରଦ
ମନ୍ତ୍ରୀଙ୍କ ମଧ୍ୟେ ପ୍ରଣବ ତା ମଧ୍ୟରେ ନାଦ ।
ଯୋଗୀଙ୍କ ମଧ୍ୟେ ଯେସନେ ଆମ୍ଭେ ଅଟୁ ବଡ଼
ନାମଙ୍କ ମଧ୍ୟେ ଯେସନେ ରାମନାମ ଦୃଢ଼ । ୧୨୨
କ୍ଷୀରଙ୍କ ମଧ୍ୟେ ଯେସନେ ଅଟଇ ଗୋରସ
ଋତୁ ମଧ୍ୟରେ ବସନ୍ତ ଯେସନେ ସରସ ।
ରସ ମଧ୍ୟରେ ଯେସନେ ଭୂମିରସ ସାର ।
ତେସନେ ସତୀ ବଚନ ଅଟେ ନିରାଧାର ।
ତାହା ମେଣ୍ଟି ନ ପାରିବେ ତିନିପୁରେ କେହି
ସତ୍ୟଯୁଗର ହେ କଥା କହୁଅଛି ମୁହିଁ ।
ଜଳନ୍ଧର ନାମେ ଥିଲା ଏକଇ ଅସୁର
ସାଗର ସୁତ ସେ ପୁଣି ବଳେ ବଳୀୟାର ।
ତାହାର ଭାରିଯା ନାମ ଅଟେ ବୃନ୍ଦାବତୀ
ଅସୁର ଦୁହିତା ସେହି ସୁନ୍ଦରୀ ଯୁବତୀ ।
ତା ସମାନ ପତିବ୍ରତା ନାହିଁ ତିନିପୁରେ
ତାର ଧର୍ମେ ଜଳନ୍ଧର ପଶି ସ୍ୱର୍ଗପୁରେ । ୧୨୫

ଦେବତାମାନଙ୍କୁ ଆଣି ଖଟାଇଲା ପାଦେ
ଦେବଙ୍କ ଚିନ୍ତା ଲଗିଲା ନାରାୟଣ ହୃଦେ ।
ଗରୁଡ଼ ଚଢ଼ି ତା ସଙ୍ଗେ କଲେ ଆସି ରଣ
ନ ପାରିଲେ ଅସୁରର ସଙ୍ଗେ ନାରାୟଣ ।
ତା ସଙ୍ଗେ ବନ୍ଧୁ ବାନ୍ଧିଲେ ଯହୁଁ ଗଲେ ହାରି
ବୋଇଲେ ତୁ ଆମ୍ଭ ଶଳା ଅଟୁ ଦଣ୍ଡଧାରୀ ।
ଲକ୍ଷ୍ମୀ ତୋହର ଭଉଣୀ ତୁ ତାହାର ଭାଇ
ସାଗର ଗର୍ଭୁ ଉପୁଜି ଅଛ ତୁମ୍ଭେ ଦୁଇ ।
ନ ଜାଣିବା ପଣେ କଳି କଲେ ସିନା ଆମ୍ଭେ
ଅସୁର ବୋଇଲା ବନ୍ଧୁ ହେଲ ଯେବେ ତୁମ୍ଭେ
ଭଉଣୀକି ଘେନି ଆସି ରହ ଆମ୍ଭ ଘରେ
ଭରେ ଲକ୍ଷ୍ମୀନାରାୟଣ ରହିଲେ ତା ଘରେ ।
ନାରଦ ମୁଖୁ ତୁମ୍ଭର ରୂପଗୁଣ ଶୁଣି
ତୁମ୍ଭଙ୍କୁ ନେବା ନିମନ୍ତେ ବାହୁରିଲା ପୁଣି ।
ଦୂତ ବରଗିଲା ଆମ୍ଭ ପୁରେ ସେ ଅସୁର
ଆମ୍ଭେ ନାସ୍ତି କରିବାରୁ କଲା ସେ ସମର ।
ତାର ପତ୍ନୀ ପତିବ୍ରତା ଧର୍ମ ରଖିବାରୁ
ଆମ୍ଭେ ତାହାକୁ ସମରେ ଜିଣି ଯେ ନ ପାରୁ ।
ଆମ୍ଭ ନିମନ୍ତେ ଶ୍ରୀବତ୍ସ ମାୟା ତିଆରିଲେ
ଦାନବର ମୁଣ୍ଡ ନେଇ ତା ଆଗରେ ଦେଲେ ।
ପତିମୁଣ୍ଡ ଦେଖି ସତୀ କାନ୍ଦିଲା ବହୁତ
ସନ୍ନ୍ୟାସୀବେଶେ ମିଳିଲେ ପୁଣିସେ ଅଚ୍ୟୁତ ।
ବୋଇଲେ ତୋର ପତିକୁ ବଞ୍ଚାଇଣ ଦେବା
ଚକ୍ଷୁ ବୁଜିଲେ ସିନା ତୋ ସ୍ୱାମୀକି ପାଇବା ।
ମାୟାଧର ମାୟାରେ ସେ ହୋଇଛି ମୋହିତା
ଜାତିରେ ଅବଳା ପୁଣି ଅସୁର ଦୁହିତା ।
ଯାହାର ମାୟା ଆମ୍ଭଙ୍କୁ ଅଟେ ଅଗୋଚର
କାହୁଁ ଜାଣିବ ଯୁବତୀ ବୁଦ୍ଧି କେତେ ତାର ।
ଚକ୍ଷୁ ବୁଜନ୍ତେ ତା ଆଗେ ଦେବ ନାରାୟଣ
ଅସୁର ସ୍ୱରୂପେ ବିଜେ କଲେ ତତକ୍ଷଣ ।
ବୃନ୍ଦାବତୀ ସ୍ୱାମୀକି ଯେ କଲା ଯାଇଁ କୋଳ
ବୋଇଲା କେ ନାଥ କମ୍ପା ବହୁଅଛି ଝାଳ ।
ସଂଗ୍ରାମ ନ କର ଚାଲ ଯିବା ଆମ୍ଭ ଘରେ
ଲକ୍ଷ୍ମୀ ଠାକୁରାଣୀ ଅଛି ଆମ୍ଭର ମନ୍ଦିରେ ।
ତାଠାରୁ ସୁନ୍ଦରୀ ଅଛି ଆନ କାହିଁ ପୁଣି
ତିନିପୁର ମୋହିନୀ ସେ ବିଷ୍ଣୁ ପାଟରାଣୀ ।

ଯୋଗୀର ଭରସା ସେହି ଗୁଡ଼ ତାକୁ ନାଥ
ଏମନ୍ତ ଶୁଣି ବୋଇଲେ ଧୀରେ ଜଗନ୍ନାଥ ।
ଆଗୋ ସଖୀ କି କହିବି ମୁଁ ତାହାର ରୂପ
ଯୁଦ୍ଧ କରୁଥିଲି ତହୁଁ ଧରି ମାୟାରୂପ ।
ଶଙ୍କର ବେଶେ ତା ପାଶେ ହୋଇଲି ପ୍ରବେଶ
ଦେଖି ମୋହିତ ହୋଇଲି ଉଡ଼ିଲା ସାହସ ।
ତ୍ରିଭୁବନ ମୋହିନୀ ସେ ସୁନ୍ଦରୁ ସୁନ୍ଦର
ତାହାକୁ ଲକ୍ଷ ଦେବାକୁ ନାହିଁ ତିନିପୁର ।
ତୋଠାରୁ ସୁନ୍ଦରୀ ନାରୀ ନାହିଁ ତିନିପୁରେ
ସ୍ୱର୍ଗର ସୁନ୍ଦରୀ ଶଚୀ ଖଟେ ତୋ ପୟରେ ।
ବଡ଼ ସୁନ୍ଦରୀ ବୋଇଲି ରମ୍ଭା ଅପସରୀ
ଉର୍ବଶୀ ଅଟଇ ଶୋଭା ଲକ୍ଷ୍ମୀର ପସରୀ ।
ମୋର ବଡ଼ ଭଉଣୀ ଯେ ବିଷ୍ଣୁ ପାଟରାଣୀ
ଏମାନେ ନୋହିବେ ପାଦ ଅଙ୍ଗୁଳିକ ସରି ।
କାହିଁ ନାହିଁ ନାହିଁ ସଖୀ ତିନିପୁରେ ନାହିଁ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଠାକୁରାଣୀ ସେହି ।
ତାର ରୂପକୁ ଅନାଇଁ ଗଲି ମୁହିଁ ମୁର୍ଚ୍ଛା
ମୋର ମାୟା ବୁଦ୍ଧି ପାଶି ଦେଲା ଅଙ୍ଗଲୁଗା ।
ବିଜୁଳି ଯେସନେ ଝଟକି ଲୁଚିଯାଇ ମେଘେ
ତେସନେ ଗଲା ମୋ ଆଗୁ ସେ ସୁନ୍ଦରୀ ବେଗେ
ତେତେବେଳୁ ମୋର ଅଙ୍ଗ ହୋଇଲା ଅସ୍ଥିର
ଘରେ ଖୋଜିଲି ମୁଁ ତୋତେ ନପାଇ ସତ୍ୱର
ଦାସୀଙ୍କ ମୁଖରୁ ଶୁଣି ଆଇଲଇଁ ଧାଇଁ
ସ୍ୱାମୀର ଏସନ ବାକ୍ୟେ ସତୀ ପ୍ରତେ ଯାଇ ।
ଦେହ ଦେଲା ପ୍ରତିବ୍ରତା ଧର୍ମ ଗଲା ନାଶ
ଅସୁର ପ୍ରାଣ ମୋ ବାଣେ ଗଲା ଯମ ପାଶ ।
ଜାଣି ନାରାୟଣ ନିଜ ରୂପେ ଦେଲେ ଦେଖା
ସତୀ ସେ ରୂପକୁ ଦେଖି ହେଲା ଚିତ୍ରରେଖା ।
କଞ୍ଚିତକାଳ ନିର୍ଜୀବ ହୋଇ ବୋଲେ କୋପେ
ଘୋର ଦୁଃଖ ପାଇବୁ ତୁ ଏ ମୋହର ଶାପେ
ମୁହିଁ ଯେବେ ସତୀ ମୋର କଥା ନୋହୁଆନ
ତୋର ଭରିଯାକୁ କରୁ ଅସୁର ହରଣ ।
ତୁ ଯେମନ୍ତେ ମାୟାକରି କଲୁ ମୋତେ ନଷ୍ଟ
ତେସନେ ମାୟା କରନ୍ତୁ ତୋତେ ସେହି ଦୁଷ୍ଟ
ଯେସନ କପି ହସ୍ତରେ ଦେଖାଇଲୁ ଶିର
ଯୋଗୀ ବେଶରେ ହରିଲୁ ତିରକୁ ମୋହର ।

ଯେମନ୍ତେ କଷ୍ଟ ଦେଇ ତୁ ବୁଲାଇଲୁ ବନେ
ତେସନେ କଷ୍ଟ ପାଇବୁ କବଡ଼ କାନନେ ।
ଯୋଗିବେଶେ ତୋର ଦିନ ଯାଉଥିବ ପୁଣି
ମାୟା ତୋତେ ଘୋଟିଥିବ କାଳଗତି ଜାଣି ।
ଅସୁରେ ମାୟାରେ ହରି ନେବେ ତୋ ଭରଯା
ଲୋକେ ପାଇବୁ ମୋ ପରି ଦୁହିଁ ଲୋକଲଜ୍ଜା ।
ଏମନ୍ତ କହି ସେ ସତୀ କୋପେ ପ୍ରଜ୍ୱଳିତ
ନୟନରୁ କୋପେ ଅଗ୍ନି ହେଲା ତାର ଜାତ ।
ସେ ଅନଳେ ତାର ଦେହ ପକାଇଲା ଦହି
ଶ୍ରୀହରି ତାହାର ଭସ୍ମ ଅଙ୍ଗେ ବୋଳି ହୋଇ ।
ତୁଳସୀ ରୂପେ ତାହାକୁ କଲେ ଗଳାମାଳା
ଖଣ୍ଡି ନ ପାରିଲେ ସତୀଶାପେ ହେଲେ କଳା ।
ଶୁଣିଲୁ ତ ହେମବନ୍ତ ଦୁଲଣୀ ଗୋ ତୁହି
ଏ ସନ୍ଧ କଥା କହିଲି ତୋ ଆଗରେ ମୁହିଁ ।
ବହୁତ କାଳ ପୁରୁଣା କଥା ଗୋଟି ତୋତେ
ବୁଝାଇ କରି କହିଲି ଗଲୁ କି ପରତେ ।
ହିମବନ୍ତ ଦୁଲଣୀ ସେ ସାକ୍ଷାତେ ହିଙ୍ଗୁଳା
କାକଟପୁରେ ରହିଲେ ହୋଇଣ ମଙ୍ଗଳା ।
କାଳିକାରୂପେ ରହିଲେ କାଳୀମଣ୍ଡପରେ
ଚଣ୍ଡୀ ଗ୍ରାମଣ୍ଡା ରୂପରେ ଭ୍ରମନ୍ତି ଗ୍ରାମରେ ।
ଜଗତଜନନ ଜନମୀ ଭବାନୀ ଚରଣ
ଧ୍ୟାନ ଚନ୍ଦ୍ରଧର ଉରେ ପଶଇ ଶରଣ ।

—✻—

## ମହିଷାସୁର, ରକ୍ତବୀର୍ଯ୍ୟ, ଶୁମ୍ଭ, ନିଶୁମ୍ଭ ଓ ଦୁର୍ଗମ ଅସୁର ବଧ ଏବଂ କାତ୍ୟାୟନୀ, କୌଶିକୀ ଓ ଦୁର୍ଗା ଜନ୍ମ

ଏଥୁ ଅନନ୍ତରେ ପୁଣି କହନ୍ତି ଶଙ୍କର
ଏ ବଳଙ୍କା ରାମାୟଣ ଅଦ୍ଭୁତ ଉତ୍ତର ।
ଯେ ଶୁଣଇ ଶୁଣାଇ ସେ ଧନ୍ୟ ଏ ସଂସାରେ
ଉତ୍ତର କାଣ୍ଡ ଚରିତ ସାର ତା ମଧ୍ୟରେ ।
ସାମବେଦରେ ଉକତ ହୋଇଛୁ ଏ ଗ୍ରନ୍ଥ
ସାତକାଣ୍ଡ ରାମାୟଣ ଶୁଣିଅଛୁ ତୁ ତ ।
ବିଚିତ୍ର କଥା ଗୋଟାଏ ଶୁଣାଉଛୁ ତୋତେ
ବଳଙ୍କାକାଣ୍ଡ ଚରିତ ଅପୂର୍ବ ଯେ ଗ୍ରନ୍ଥେ ।
ବଳଙ୍କା ଉତ୍ତର କାଣ୍ଡ ଅପୂର୍ବ ଯେ ବାଣୀ
ଭବସାଗରୁ ତରିବେ ଶୁଣି ପୁଣି ପ୍ରାଣୀ ।
ପାପ ତମରାଶିକି ଏ ଜାଣ ମାର୍ତ୍ତଣ୍ଡ
ବଳଙ୍କା ରାମାୟଣର ଏ ଉତ୍ତର କାଣ୍ଡ ।
ସନ୍ଧ କଥାମାନ ରହି ଅଛଇ ଏଥିରେ
ମନଦେଇ ଶୁଣ କହୁଅଛୁ ତୋ ଆଗରେ ।
ଅତି ପୁରାତନ କଥା ଦେବ ଯୁଗ ଆଦ୍ୟେ
ବ୍ରହ୍ମା ବେକ ରୂପେ ଥିଲେ ଶ୍ରୀ ବିଷ୍ଣୁର ହୃଦେ ।
ସୃଷ୍ଟି ଆଦ୍ୟରେ ସେ ନାଭିପଦ୍ମୁ ହେଲେ ଜାତ
ପଦ୍ମଯୋନି ବ୍ରହ୍ମା ନାମେ ହୋଇଲେ ଉଦିତ ।
ତାହାଙ୍କ ପୁତ୍ର କଶ୍ୟପ ନାମେ ଏକ ଋଷି
ତାଙ୍କ ଭରଯା ସୁନ୍ଦରୀ ଦନୁ ଶୁଭ୍ରକେଶୀ ।
ଭାଦ୍ରବମାସ ଶୁକଳପକ୍ଷ ନବମୀରେ
କୃତ୍ତିକା ନକ୍ଷତ୍ର ଚନ୍ଦ୍ର ବୃଷଭ ରାଶିରେ ।
ମଙ୍ଗଳବାର ସେ ଦିନ ବ୍ୟତିପାତ ଯୋଗ
ସିଂହ ସଙ୍କରାନ୍ତିରୁ ସେ ଦଶଦିନ ଭୋଗ ।
ଗର ନାମେ କରଣ ସେ ରାତ୍ର ଦୁଇଘଡ଼ି
ସ୍ୱାମୀସଙ୍ଗ କଲା ବାଞ୍ଛା ଧର୍ମ କର୍ମ ଛାଡ଼ି ।
ଅଶୁଦ୍ଧ ଯୋଗେ ଜନମ ହେବାରୁ ସେ ପୁତ୍ରେ
ଦୁଷ୍ଟପଣେ ଜାତ କଲେ ଦେବଙ୍କ ସହିତେ ।
ତାହାଙ୍କ ବଂଶରେ ଜାତ ହେଲେ ଦୁଇ ଭାଇ
ରମ୍ଭ କରମ୍ଭ ନାମରେ ଉଦିତ ସେ ହୋଇ ।
ଅପୁତ୍ରିକ ହୋଇ ଦୁହେଁ କରୁଥିଲେ ତପ
ଜଳ ମଧ୍ୟରେ କରମ୍ଭ ନାମେ କଉଣପ ।

ଘୋର ତପ କରୁଥିଲା ଇନ୍ଦ୍ର ତାହା ଜାଣି
କପଟେ ଗ୍ରାହରୂପରେ ନେଲେ ତାକୁ ଟାଣି ।
ଜଳେ ବୁଡ଼ାଇ ତାହାର ହରନେଲେ ପ୍ରାଣ
ତାହାର ପାପ ପୁଣ୍ୟକୁ ବୁଝି ଜନ୍ତୁଗଣ ।
ମଇଁଷି ଜନ୍ମ ତାହାକୁ ଦେଲେ ପୁଣି ନେଇ
ଏଥୁଅନନ୍ତରେ କଥା ଶୁଣ ମନଦେଇ ।
ରମ୍ଭ ଦାନବ ଅନଳ ସେବି ଘୋର ତପେ
ପ୍ରସନ୍ନେ ଅଗ୍ନି ଦର୍ଶନ ଦେଲେ ଦ୍ୱିଜ ରୂପେ ।
ବୋଇଲେ କି ବରେ ଇଚ୍ଛା ଅଛଇ ତୋହର
ଦାନବ ବୋଇଲା ନାହିଁ ମୋହର କୁମର ।
ପୁତ୍ରେକ ଦେବୁ ସେ ହେବ ମହାବଳବନ୍ତ
ପୁରୁଷ ହସ୍ତେ ଅମର ହେବ ସେହି ପୁତ୍ର ।
ଅସ୍ତ୍ର ଶସ୍ତ୍ର ନ ଭେଦିବ ଶରୀରେ ତାହାର
କାମରୂପୀ ହୋଇବ ସେ ମୋହର କୁମର ।
ମୋ ବଂଶ ପୁରୁଷହାତେ ନ ମରିବେ କେଭେ
ଦେବେ ଦାନବେ ମାନବେ ଅବଧ ହୋଇବେ ।
ଏମନ୍ତେ ବରମାଗନ୍ତେ ସ୍ୱାହା ଦେବୀ ନାହା
ବୋଇଲେ ପୁତ୍ର ନିମନ୍ତେ ହୁଅ ଯାଇଁ ବେହା ।
ବଳେ କାହାରିକି ବଶ ହୋଇ ନ ପାରିବୁ
ଯେ ତୋତେ ଭଜିବ ତାକୁ ତୁ ବଶ ହୋଇବୁ ।
ଗୃହିଖାନଙ୍କ ମଧ୍ୟରୁ ଯେ ଭଜିବ ତୋତେ
ତୁ ତାହାକୁ ବଶ ହେବୁ ପୁତ୍ରର ନିମନ୍ତେ ।
ଏମନ୍ତ କହି ଅନଳ ଗଲେ ଅନ୍ତର୍ଦ୍ଧାନେ
ରମ୍ଭ ଅସୁର ବୁଲଇ ଯାଇଁ ତ୍ରିଭୁବନେ ।
କେହି ଯେ ତାହାକୁ ବଶ ନୋହିଲେକ ପୁଣି
ବନ କନ୍ଦର ଭ୍ରମଇ ସେ ଦାନବମଣି ।
କରମ୍ଭ ମଇଁଷି ହୋଇ ବୁଲୁଥିଲା ବନେ
ତପ ଧର୍ମବଳେ ପୂର୍ବକଥା ଭାଳି ମନେ ।
ବିଚାରିଲା ଇନ୍ଦ୍ର ମୋର ଅଟଇ ବଇରି
ଭାରିଯା ହେବ ଇଚ୍ଛାରେ ଏହାକୁ ମୁଁ ବରି ।
ଯେବେଣ ପୁତ୍ର ଜନମ ହେବ ଆମ୍ଭଠାରୁ
ଅଗ୍ନିବରେ ବଳବନ୍ତ ପଣେ ହେବ ମେରୁ ।
ଏମନ୍ତ ବିଚାରି ଆସି ବରିଲା ତାହାକୁ
ରମ୍ଭ ଯେ ବଶ ହୋଇଲା ନ କହି କାହାକୁ ।
ଦଶମାସ ଅନ୍ତେ ତାର ପୁତ୍ର ହେଲା ଜାତ
ପାପୀ ବୋଲି ନ ଛୁଇଁଲେ ତାର କୁଳ ଗୋତ୍ର

ପଶୁ ହରଣ ଦୋଷରେ ଦୋଷୀ ତାକୁ କଲେ
ମାର ମାର କରି ପୁରୁ ବାହୁଡ଼ାଇ ଦେଲେ ।
ରମ୍ଭିଲା ଅରଣ୍ୟ ମଧ୍ୟେ ଭାରିଯାକୁ ଘେନି
ମଇଁଷି ପଣ୍ଡା ତାହାଙ୍କୁ ଗୋଡ଼ାଇଲା ପୁଣି ।
ଦେଖି କୋପେ ରମ୍ଭ ତାକୁ ଗୋଡ଼ାଇଲା ମାରି
ସେ ମଇଁଷି ପଣ୍ଡା ରମ୍ଭ ପେଟେ ଦେଲା ଶିର ।
ଭୟେ ସେ ମଇଁଷି ନେଲା ଯକ୍ଷଙ୍କ ଶରଣ
ମଇଁଷି ପଣ୍ଡାକୁ କଲେ ଆସି ନିବାରଣ ।
ପଳାଇ ମଇଁଷି ପଣ୍ଡା ପଶିଲା ବନରେ
ଦେହ ଜଳି ଯିବାରୁ ସେ ଏକ ସରୋବରେ ।
ପଶିଣ ଚକଟି ମନ୍ଥି ଦେବାରୁ ସେ ପାଣି
ନମର ନାମେ ଦାନବ ଥିଲା ଜଳେ ପୁଣି । ୫୦
ମଇଁଷ ପାଦରେ ଦଳି ହୋଇ ସେହି ମଲା
ରାଗରେ ମଇଁଷି ପଣ୍ଡା ଶିଙ୍ଗରେ ଧଇଲା । ୫୧
ବୁଲାଇ ଫିଙ୍ଗି ଦିଅନ୍ତେ ବଳବନ୍ତ ପଣେ
ନମର ଅସୁର ଶବ ଆସି ତତକ୍ଷଣେ ।
ଯହିଁ ରମ୍ଭ ଶବ ଗୋଟି ପଡ଼ିଅଛି ଜାଣ
ତହିଁ ପଡ଼ିଲା ସେ ଶବଗୋଟି ଅସି ପୁଣ ।
ଯକ୍ଷମାନେ ସେଠାବରେ ଆସି ହୋଇ ମେଳ
ଶବକୁ ପୋଡ଼ିଲେ କାଠ ଖଞ୍ଜି ଅଗ୍ନିଜାଳ ।
ରମ୍ଭ ଭାରିଯା ସେ ଅଗ୍ନି ମଧ୍ୟେ ଝାସଦେଲା
ପ୍ରଜ୍ୱଳିତ ହୋଇ ଅଗ୍ନି ଶିଖା ଉଠିଗଲା ।
ସେ ତିନି ଅସୁର ଶବ ଏକାଠି ହୁଅନ୍ତେ
ଅଗ୍ନିରତେଜ ତାହାଙ୍କ ଦେହରେ ଲାଗନ୍ତେ ।
ପୁରୁଷେକ ଜନମିଲା ଅନଳ ମଧ୍ୟରୁ
ତାହାର ତେଜ ଅଧିକ ଅଗ୍ନିତେଜ ଠାରୁ ।
ବଳବନ୍ତ ପଣେ ସେହି ମେରୁଠାରୁ ଗରୁ
ସୂର୍ଯ୍ୟ ଡରିଲେ ରଥେ ତା ଶିର ଲାଗିବାରୁ । ୫୪
ଭାଳିଲେ ଉଁଆସ ତିଥି ଆଜ କି ନୁହଇ
ଗ୍ରାସିବା ପାଇଁକି କାହୁଁ ରାହୁ ଆସେ ଧାଇଁ ।
ଖଡ଼ଗ ଗୋଟା ହସ୍ତରେ ଦିଶେ ଜକଜକ
ତହୁଁ ବାହାରି ଆସନ୍ତି ଜୁଳୁଜୁଳା ପୋକ ।
ଦନ୍ତ କଟମଟ କରି ଗୁଣ୍ଡଇ ସେ ରଡ଼ି
କିବା ସେ ପ୍ରଳୟକାଳ ମେଘ ଘଡ଼ଘଡ଼ି ।
ମନ୍ଦର ପର୍ବତ ଠାରୁ ଅଧିକ ସେ ମୋଟା
ମତ୍ତସିଂହରୁ ଅଧିକ ଗର୍ଜିବାର ଛଟା । 52

କାଳାନ୍ତକ ଯମପରି ମହାଭୟଙ୍କର
ଯକ୍ଷେ ଡରି ପଳାଇଲେ ରୂପ ଦେଖି ତାର ।
ତାର ନାମ ରକ୍ତ ବୀର୍ଯ୍ୟ ଜାଣ ମାହେଶ୍ୱରୀ
କୋପେ ଧାଇଁଲା ଅସୁର ଖଡ୍ଗକୁ ଧରି । ୫୬
ରମ୍ଭକୁ ସଂହାରିଥିଲା ଯେବଣ ମହିଷ
ତାହାକୁ ଯାଇଁ ସଂହାର କଲା ସେ ରାକ୍ଷସ ।
ତହୁଁ ପୁଣି ପୃଥିବୀରୁ ମହିଷ ମାଇଲା
ବଣ କନ୍ଦରେ ମଇଁଷି ଏକ ନ ରଖିଲା । ୫୮
ରମ୍ଭର ପୁତ୍ର ମହିଷ ଅସୁରକୁ ଗୁଡ଼ି
ତିନି ଭୁବନ ଏକାକେ ବସିଲା ସେ ମାଡ଼ି ।
ପାତାଳେ ପଶି ଦାନବଦଳଙ୍କୁ ସାଧିଲା
ତା ବଳେ ମହିଷାସୁର ପ୍ରତାପୀ ହୋଇଲା ୬୪
ସତ୍ୟଯୁଗେ ତାଙ୍କୁ ବଧ କଲେ କାତ୍ୟାୟିନୀ
ତାହାର ସଙ୍ଗେ ଯେ ଥିଲେ ଦାନବ ସଇନି ।
ପୃଥିବୀରେ ପୂରିଥିଲା ସେ ଅସୁର ଥାଟ
ବନ୍ଦ ହୋଇ ଯାଇଥିଲା ହାଟ ଘାଟ ବାଟ ।
କାତ୍ୟାୟିନୀଙ୍କ ଅଙ୍ଗରୁ ହେଲେ ଉତପନ୍ନ
ଚଉଷଠି ଯୋଗିନୀ ଯେ ଭଇରବୀଗଣ ।
ଡାକିନୀ ଶାକିନୀ ଚଣ୍ଡୀ ଚାମୁଣ୍ଡା ଆଇଲେ
ଅସୁର ରୁଧିର ପିଇ ସନ୍ତୋଷ ହୋଇଲେ । 62
କୋଟି କୋଟି ଦାନବଙ୍କୁ ପକାଇଲେ ମାରି
ଦେବୀଗଣରେ ବ୍ରହ୍ମାଣ୍ଡ ଯାକ ଗଲା ପୂରି ।
ପୃଥିବୀ ବ୍ୟାପି ଦାନବଗଣ ଗଲେ ଖାଇ
ରକ୍ତବୀର୍ଯ୍ୟ ଚଣ୍ଡମୁଣ୍ଡ ଉବୁରିଣ ଯାଇଁ ।
ସାଗର ଭିତରେ ଲୁଚି ରଖିଲେ ପରାଣ
ଏଥୁ ଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ ।
ସାବର୍ଣ୍ଣି ନାମରେ ମନୁରାଜା ହେଲେ ଯେବେ
ଶୁମ୍ଭ ନିଶୁମ୍ଭ ନମୁଚି ଆଦି ଯେ ଦାନବେ । 68
ବ୍ରହ୍ମା ବରେ ବଳୀୟାର ହୋଇ ପୁରେ ପୁରେ
ଦାନବ ମାନବ ଦେବ ଗନ୍ଧର୍ବେ କନ୍ଦରେ ।
ବଳେ ପଶି ଧରିଆଣି ଦେଲେ ନାନାଦଣ୍ଡ
ଅମରାବତୀ ପୁରକୁ ନେଲେ ସେ ପ୍ରଚଣ୍ଡ ।
ଦଶଦିଗପାଳେ ହାରି ପଳାଇଲେ ଡରି
ଚଣ୍ଡମୁଣ୍ଡ ରକ୍ତବୀର୍ଯ୍ୟ ଏହା ଶୁଣିପାରି ।
ତାହାଙ୍କ ପାଖେ ମିଳନ୍ତେ କଲେ ସେ ଆଦର
ଥଟେ ସେନାପତି ହେଲେ ଏହି ତିନିବୀର । 70

କଉଶିକୀ ଦେବୀ ହେଲେ ତାଙ୍କପାଇଁ ଜାତ
ଅସୁର କୁଳରେ ପୁଣି କଲେକ ନିପାତ ।
ଚାମୁଣ୍ଡା ରୂପେ ମାଇଲେ ଚଣ୍ଡମୁଣ୍ଡ ବେନି
ରକ୍ତବୀର୍ଯ୍ୟ ରକତରେ ପୂରିଲା ମେଦିନୀ ।
ଯେତେ ଟୋପା ରକ୍ତ ମହୀ ଉପରେ ପଡ଼ଇ
ତେତେ ଗୋଟା ରକ୍ତବୀର୍ଯ୍ୟ ତହୁଁ ଉପୁଜଇ
ଏମନ୍ତେ ପୃଥିବୀ ଯାକ ହେଲା ରକ୍ତବୀର୍ଯ୍ୟ
ଏହା ଦେଖି ଦେବୀଗଣ ପାଇ ବଡ଼ ଲାଜ ।
କଉଶିକୀ ମାତା ଆଗେ ଜଣାଇଲେ ଯାଇ
ଦେବତାଏ ସ୍ତୁତି କଲେ ମହାଭୟ ପାଇ ।
ତତକ୍ଷଣେ ଭଦ୍ରାକାଳୀ ରୂପ ସେ ଧଇଲେ
ସମର ଭୂମିରେ ନେଇ ଖପର ପାତିଲେ ।
କୋଟି କୋଟି ଖପର ଯେ ପାତିଛନ୍ତି ତହିଁ
ଧାଇଁଲେ ମାରିଲେ ବୋଲି ଦେବୀଙ୍କ ସେ କହି
ଗହ ଗହ ନାଦ କରି ଧାଇଁଗଲେ ମାଏ
ଲହ ଲହ ଜିଭ କରି କେହି ଚାଟିଦିଏ । 78
ଗହ ଚହ ଶବଦରେ ପୂରିଅଛି ମହୀ
ରହରହ ବୋଲି କେହି ଯାଏ ଆଗହୋଇ ।
ମହ ମହ ବାସୁଅଛି କାହାର ଶରୀର
ଟହ ଟହ ହସଇ କେ ପିଇଣ ରୁଧିର ।
ନଖେ ବିଦାରଇ କେହି ଅସୁରଙ୍କ ବୁକୁ
ପାତି ଅଛନ୍ତି ଯେ ମାଏ ରଣେ ଖପରକୁ ।
ସମରେ ଧରି ରକତ ଯାକ ଦେଲେ ପିଇ
ନିରକତ ହେଲା ମଲା ରକ୍ତବୀର୍ଯ୍ୟ ତହିଁ ।
ମହାବଳବନ୍ତ ଦୈତ୍ୟ ଗଲା ଯହୁଁ କ୍ଷୟ
ସ୍ୱର୍ଗପୁରେ ଦେବତାଏ କଲେ ଜୟ ଜୟ ।
ରକ୍ତବୀର୍ଯ୍ୟ ମଲା ପୃଥ୍ୱି ଉଶ୍ୱାସ ପାଇଲା
ଧୀରେ ଧୀରେ ଅବସନ୍ତେ ବସନ୍ତ ବହିଲା । 84
ସହସ୍ର କିରଣ ଧରି ଉଦେ ହେଲେ ରବି
ବେଳକୁ ବେଳ ବଢ଼ିଲା ଚନ୍ଦ୍ରମାର ଛବି ।
ସୁର ସୁନ୍ଦରୀ ବଦନ ଇନ୍ଦୁ ବିକାଶିଲା
ଦଶଦିଗ ଯାକ ଅତି ନିର୍ମଳ ଦିଶିଲା ।
ମୁନିଜନ ମାନସର ପଡ଼ିଲା ଉଛୁଳ
ଲହରୀ ଭଙ୍ଗି ସମୁଦ୍ର ଯାକ ଦିଶେ ଝଳ ।
ଧରଣୀ ନେତ୍ର ଲୋତକ ଧାରା ଗଲା ରହି
ଅନଳ ଶିଖା ଟେକିଲା ଯାଇଥିଲା ଲହିଁ ।

ଉତ୍ସବରେ ପୂରିଗଲା ବାସବର ପୁର
ଋଷି ନ ପଢ଼ ଗଗନ ତାରା ହୋଇଲେ ସ୍ଥିର ।
ଚଉଦ ବ୍ରହ୍ମାଣ୍ଡ ଯାହାକେ ହୋଇଥିଲା ଶଲ
ପାଉଥିଲେ ସେ ଦୁରନ୍ତ ଯୋଗୁଁ କଳବଳ ।
ମହାପ୍ରତାପୀ ଦାନବ ଗଲା ଯହୁଁ କ୍ଷୟ
ବ୍ରହ୍ମା ବିଷ୍ଣୁ ରୁଦ୍ର ହୃଦେ ଆନନ୍ଦ ଉଦୟ ।
ମହାବଳିଷ୍ଠ ଦାନବ ରକ୍ତବୀର୍ଯ୍ୟ ଜାଣ
ଶୋଣିତ ବୀର୍ଯ୍ୟ ତାହାର ଅଟଇ ନନ୍ଦନ ।
ଅକ୍ଷୟ ବୀର୍ଯ୍ୟ ନାମେ ତା ପୁତ୍ର ଉପୁଜିଲା
ତା ତହୁଁ କନକବୀର୍ଯ୍ୟ ନାମେ ଦୈତ୍ୟହେଲା ।
କନକବୀର୍ଯ୍ୟ ନନ୍ଦନ ଜାଣ ସୋମବୀର୍ଯ୍ୟ
ପିଶିତବୀର୍ଯ୍ୟ ନାମରେ ତାହାର ତନୁଜ ।
ଅମ୍ବୁବୀର୍ଯ୍ୟ ନାମେ ପୁତ୍ର ହେଲା ତାର ଜାଣ
ଅମ୍ବୁଜବୀର୍ଯ୍ୟ ନାମରେ ତାହାର ନନ୍ଦନ ।
ରଜବୀର୍ଯ୍ୟ ନାମରେ ଯେ ପୁତ୍ର ହେଲା ତାର
ଅମୃତବୀର୍ଯ୍ୟ ନାମରେ ତାହାର କୁମର ।
ବଡ଼ବା ସଙ୍ଗେ ଅମୃତବୀର୍ଯ୍ୟ କଲା ପ୍ରୀତି
ହୟରୂପ ହେଲ ଗୁଢ଼ ଦାନବ ମୂରତି ।
ପୁତ୍ରେକ ଜାତ ହୋଇଲା ନାମେ ହୟଶିରା
ତାରକା ଅସୁର ନାମେ ଥିଲା ମହାବୀରା ।
ତାର ଆଠେ ସେନାପତି ଥିଲେ ଏ ସମସ୍ତେ
ତାରକା ଅସୁର ମଲା କାର୍ତ୍ତିକେୟ ହସ୍ତେ ।
କାର୍ତ୍ତିକ ସଙ୍ଗେ ଯେ ଥିଲେ ଭଇରବୀଗଣ
ଅସୁରଙ୍କୁ ମାଇଲେ ସେ ଖପର ପାତିଣ ।
ରକ୍ତବୀର୍ଯ୍ୟ ବଂଶଯାକ ହେଲେ ସେ ନିପାତି
ହୟଶିରା ପଳାଇଲେ ପାଇ ମହାଭୀତି ।
ହୟଶିରାର ନନ୍ଦନ ହୋଇଲା ତ୍ରିଶିରା
ତାହାର ନନ୍ଦନ ନାମ ଅଟେ ଏକଶିରା ।
ତା ତହୁଁ ଜନମ ହେଲା ଦନୁଜ ଯେ ଘୋର
ଅନ୍ଧକନାମେ ହିରଣ୍ୟ ଦଇତ୍ୟ କୁମର ।
ମହାପ୍ରତାପୀ ହେଲା ସେ ମହାରୁଦ୍ର ବରେ
ଗୋଟି ଗୋଟି ଦେବତାଙ୍କୁ ଜିଣିଲା ସମରେ ।
ତୁମ୍ଭଙ୍କୁ ଦେଖି କାମରେ ହୋଇଲା ସେ ଭୋଳ
କାହାର କଥା ନ ମାନି ହିରଣ୍ୟର ବାଳ ।
ହାଟକେଶ୍ୱର ପୁରକୁ ଯାଇଥିଲୁ ଆମ୍ଭେ
ଏକାହୋଇ କଇଲାସେ ଥିଲ ଦେବୀ ତୁମ୍ଭେ ।

ତୁମ୍ଭଙ୍କୁ ହରିବା ପାଇଁ ଅନ୍ଧକ ଅସୁର
ଆଠ ଘେରି ଅଇଲା ସେ କଇଲାସ ପୁର ।
ହୟଶିରା ବଂଶ ତାର ଆଠେ ସେନାପତି
ଅସୁରବଳ ଘେନି ସେ ପୁରରେ ପଶନ୍ତି ।
ଶତପୁର କରି ତୁମ୍ଭ ପୁରକୁ ବେଢ଼ିଲେ
ନନ୍ଦୀ ବୀରଭଦ୍ର ତାଙ୍କ ସଙ୍ଗେ ଯୁଦ୍ଧକଲେ ।
ନ ପାରିଲେ ତାଙ୍କୁ ସେହି ପଶିଲେ ଝସାଇ
ତାହାଦେଖି ମହାକୋପକଲ ମହାଦେଇ ।
କପାଳୀଗଣ ତୋହର ଦେହୁଁ ହେଲେ ଜାତ
ହୟଶିରା ବଂଶକୁ ସେ କଲେ ଗୋ ନିପାତ ।
ପଳାଇଲା ଘୋର ଦୈତ୍ୟ ତହୁଁ ଭୟ ପାଇ
ଅନ୍ଧକ ଆଗରେ ସବୁ କହିଲା ବୁଝାଇ ।
ସେ ବାହ୍ନି ଅସିଲା ତାକୁ ମାଇଲୁ ଯେ ଆମ୍ଭେ
ପଳାଇ ପଶିଲା ଘୋର ଦୈତ୍ୟ ସିନ୍ଧୁ ଗର୍ଭେ ।
କେତେକ ଦିନେ ସେ ପୁଣି ହୋଇଲା ଉଦିତ
କାଳୀରୂପେ ତାକୁ ତୁହି କଲୁ ଗୋ ନିପାତ ।
ଦୁର୍ଗମନାମେ ତାହାର ଥିଲା ଯେ ନନ୍ଦନ
ବିଶ୍ୱକର୍ମାକୁ ସେବିଲା ସେ ବହୁତ ଦିନ ।
ପ୍ରସନ୍ନେ ତାହାକୁ ବର ଦେଲା ବିଶ୍ୱକର୍ମା
ମହାପ୍ରତାପୀ ହୋଇଲା ସେ ଦୁର୍ଗମନାମା ।
ଆକାଶରେ ଏକପୁର କଲାକ ନିର୍ମାଣ
ତହିଁରେ ଥାଇ ଉଡ଼ି ସେ କରଇ ପ୍ରୟାଣ ।
ସକଳ ପଦାର୍ଥ ତହିଁ ରଖିଥାଇ ପୁଣି
ଅସ୍ତ୍ରଶସ୍ତ୍ର ରଖିଥାଇ ଆପେ ଯେ ନିର୍ମାଣି ।
ଦୁର୍ଗମଗଡ଼ କହିଣ ରହିଛି ଅସୁର
ପବନ ପରାୟେ ଗତି ଅଟଇ ତାହାର ।
ଗଡ଼ ସହିତ ତାହାର ଉଡ଼େ ତା ସଙ୍ଗରେ
କେହି ଜିଣି ନ ପାରିଲେ ତାହାକୁ ସମରେ ।
ହରିହର ବ୍ରହ୍ମା ଇନ୍ଦ୍ର ଚନ୍ଦ୍ରହିଁ ବରୁଣ
ଯମ ସୋମ ନଇଋତ ଆଦି ଦେବଗଣ ।
ଦୁର୍ଗମ ଅସୁର ସଙ୍ଗେ ନ ପାରିଲେ ଯୁଝି
ଦୁର୍ଗ ନିର୍ମାଣି ଅଛଇ ଆକାଶର ମଝି ।
ଏମନ୍ତେ ବହୁତ କାଳ ଗଲା ଗୋ ପାର୍ବତୀ
ଦେବେ ଯେ ବହୁତକଷ୍ଟ ପାଇ ଦିବାରାତି ।
ଚିନ୍ତାରେ ଦେହ ତାଙ୍କର ପଡ଼ିଲାକ ଝଡ଼ି
ବୃହସ୍ପତି କହିଲେ ଯେ ପାଞ୍ଜି ଗୋଟା କାଢ଼ି ।

ଯୋଗମାୟାଙ୍କୁ ଯେ ସ୍ତବ କର ଏକ ଲୟେ
ମରିବ ଦାନବବର ତାହାଙ୍କ ଉପାୟେ ।
ପୁରୁଷ ହସ୍ତେ କଦାପି ନ ମରିବ ସେହି
ରମ୍ଭ ଦୈତ୍ୟ ଅଗ୍ନି ଠାରୁ ବର ଅଛି ନେଇ ।
ଏମନ୍ତ ଶୁଣି ଦେବତା ମାନେ ତହୁଁ ଗଲେ
ମେରୁ ପରବତେ ରହିସ୍ତୁତି ଆରମ୍ଭିଲେ ।
କରପଲ୍ଲବକୁ ନେଇ ନିବେଶିଲେ ଶିରେ
ଲୟ ଲଗାଇଲେ ମହାମାୟାଙ୍କ ପୟରେ । 124
ଇନ୍ଦ୍ରିୟ ମାନ ନିରୋଧି ବସି ଯୋଗାସନେ
ଦଶ ଦୁଆରେ ପବନ ରୁନ୍ଧିଲେ ସ୍ତବନେ ।
ବୋଇଲେଗୋ ଯୋଗମାୟା କରବାରେ ଦୟା
50 ତୁହି ଜୟା ତୁ ବିଜୟା ତୁହି ମା ଅଭୟା ।
ତୋହର ମହିମା ଏକା ତୁହି ସିନା ଜାଣୁ
ତୁହି ଆଦି ତୁ ଅନାଦି ଅଣୁ ପରମାଣୁ ।
ତୁହି ରୂପା ତୁ ଅରୂପା ଜଗତ କାରଣୀ
ତୋହର ମହିମା ବ୍ରହ୍ମା ନ ପାରେ ବଖାଣି ।
ତୋହର ନାମକୁ ଗଣି ପାରିବ ବା କିଏ
ଅଗଣିତ ସମୁଦ୍ରର ବାଲିର ପରାୟେ । 125
ଅବଧ ମହିଷାସୁର ବଧିଲୁ ଗୋ ମାତ
ରକ୍ତବୀର୍ଯ୍ୟ ବଂଶକୁ ତୁ କଲୁ ଗୋ ନିପାତ ।
ଏବେ ଏ ଅସୁର ଡରେ ସ୍ୱର୍ଗପୁର ଛାଡ଼ି
ତୋତେ ଡାକୁଅଛୁ ମାତ ଅତି ଦୁଃଖେ ପଡ଼ି ।
ରଖିଲେ ରଖିବୁ ତୁହି ନ ରଖିଲେ ମଲୁ
ପୂର୍ବେ ତୁ ଆମ୍ଭଙ୍କୁ ମାତା ବର ଦେଇଥିଲୁ ।
ଏମନ୍ତେ କରନ୍ତେ ସ୍ତୁତି ବିଷ୍ଣୁ ଆଦି ଦେବେ
ଅସୁର ଗୁପତ ଚର ଥିଲା ମେରୁଗର୍ଭେ ।
କହିଲା ଯାଇ ଦାନବ ଆଗରେ ବୁଝାଇ
ହେ ମଣିମା କି କହିବି ଦେବେ ତୁମ୍ଭପାଇଁ । 134
ଯୋଗମାୟା ସ୍ତବ ବସି ପଢ଼ୁଛନ୍ତି ନିତି
ଏକଲୟେ ଏକଯୋଗେ ନାହିଁ ବିବାରତି ।
ଏମନ୍ତ ଶୁଣି ଦାନବ ମନ୍ତ୍ରୀକି ହକାରି
ବୋଇଲା ଶୁଣ ତୁ ଏବେ ଦୂତର ଗୁହାରି ।
ଦେବେ ତପ କରୁଛନ୍ତି ମାରିବାକୁ ମୋତେ
ଅବିଶ୍ୱାସୀ ଦେବଙ୍କୁ ଯେ ନ ଯିବା ପରତେ ।
ସମସ୍ତେ ଏକାଠି ହୋଇ ମେରୁଗିରିଶିଖେ
ବ୍ରହ୍ମା ବିଷ୍ଣୁ ରୁଦ୍ର ଇନ୍ଦ୍ର ଆଦି ଏକମୁଖେ । 142

ଯୋଗମାୟା ସ୍ତବ ବସି ପଢ଼ୁଛନ୍ତି ନିତି
କି ବୁଦ୍ଧି କରିବା କହ ବିଚକ୍ଷଣ ମନ୍ତ୍ରୀ ।
ତାହାର ମନ୍ତ୍ରୀର ନାମ ଅଟେ କଲ୍ପସୁର
ବୋଇଲା ହେ ରାଜା ଏବେ ମୋର ବୋଲ କର
ଏ ବେଳେ ଯାଇ ତାହାଙ୍କୁ ପକାଇବା ବାନ୍ଧି
ତାହାଙ୍କ ତପ ଭାଙ୍ଗିଲେ ହେବ ସର୍ବସିଦ୍ଧି । 145
ଏମନ୍ତ ଶୁଣି ମନ୍ତ୍ରୀର ମୁଖୁ ସେ ଅସୁର
ସ୍ୱର୍ଗକୁ ଉଡ଼ାଇନେଲା ପବନ ପ୍ରକାର ।
ମାଡ଼ି ପଡ଼ିଲା ସେ ଗଡ଼ ମେରୁଶିଖେ ଯାଇଁ
ବନ୍ଦୀ ହୋଇଲେ ସକଳ ଦେବତାଏ ତହିଁ ।
କରେ ଅସ୍ତ୍ର ଶସ୍ତ୍ର ନାହିଁ ସମସ୍ତେ ନିସତ
ଅସୁର ଗଡ଼କୁ ଦେଖି ହୋଇଲେ ଚକିତ ।
ରାଗେ ବୋଇଲେ କେତିକ ଗଲୁଟରେ କିନଖା
ସୁଖା ଦୁଃଖା ପଞ୍ଚଶିଖା ସୁମୁଖା ଦୁର୍ମୁଖା ।
ଭୀମମୁଖା ରକ୍ତ ଜିହ୍ୱା ଅରୁଣା ଦାରୁଣା
ଲମ୍ବଶିର ଖରଣସା ଭୀମା ଗୋବଦଣା । 150
ଧର ଧର ବେଗେ ଯାଇଁ ବିଳମ୍ବ ନ କର
ଗୋଟି ଗୋଟି କରି ବନ୍ଦୀ ଆଣ ମୋ ଛାମୁର
ଦେଖିବା ନା ତାହାଙ୍କର ବଳବୁଦ୍ଧି କେତେ
ଯୋଗମାୟା ଆସି ତାଙ୍କୁ ରଖିବେ କେମନ୍ତେ ।
ଏତେକ ଶୁଣି ଧାଇଁଲେ ଦୁର୍ଦ୍ଦାନ୍ତ ଅସୁରେ
ଅଙ୍ଗୁଳି ଦେଖାନ୍ତେ ଯେହ୍ନେ ଶିକାରୀ କୁକୁରେ
ଧାଇଁ ଯାଇ କାମୁଡ଼ନ୍ତି ତେସନେ ସେ ଯାଇ ।
ଗୋଟି ଗୋଟି ବାନ୍ଧିଲେ ସେ ଡାକହାକ ହୋଇ 155
ମଡ଼ା ଦେଖି ଯେହ୍ନେ କୁଆ ଶାଗୁଣା ହୁଅନ୍ତି
ଶୃଗାଳ କୁକ୍କୁର ତହିଁ କଳହ କରନ୍ତି ।
ତେମନ ଆନନ୍ଦ ହୋଇ ଗୋଟି ଗୋଟି ଧରି
ବାନ୍ଧି ନେଇ ଯାଉଛନ୍ତି ଦୈତ୍ୟରଧର ପର ।
ଡରେ ଦେବତାଙ୍କ ମୁଖୁ ନ ଆସଇ କଥା
ନିଦାରୁଣ ଅସୁର ଯେ ମାରନ୍ତି ଗଳଥା ।
ଦୁର୍ଗମ ଦାନବ ବିହିଁ ବୋଲଇ ଯେ ହସି
କରେ ଦେବତା କମ୍ପାଇ ଦୁଃଖେ ଅଛ ବସି ।
ମୋହର ମରିବା ପାଇଁ ବିଚାର ତୁମ୍ଭର
ଏବେତ ମଲରେ ଇଷ୍ଟ ଦେବତା ସୁମର ।
ଯେଉଁ ଯୋଗମାୟା ସ୍ତୁତି ପଢ଼ୁଥିଲ ବସି
ତାହାକୁ ଡାକ ତୁମ୍ଭଙ୍କୁ ରଖୁ ସେହି ଆସି । 160

ଧିକରେ ତୁମ୍ଭ ଜୀବନ ଧିକ ତୁମ୍ଭ ବଳ
ପୁରୁଷ ପଥ ଗୁଡ଼ରେ ହେଉଛୁ ବିକଳ । 162
ଘୋର ସ୍ତ୍ରୀ ଗୋଷ୍ଠୀକୁ ରେ କରୁଅଛ ସ୍ତୁତି
କାହିଁ ଦେଖିଛ ଶୁଣିଛ କରେ ଏହି ରୀତି ।
ପୁରୁଷ ହୋଇ ସ୍ତ୍ରୀଙ୍କ ଜୀବନରେ ଭୟେ
ସ୍ତୁତି କରଇ ସେ ତାଙ୍କୁ ରଖଇ ଉପାୟେ ।
ପୁରୁଷ ସଙ୍ଗେ ସମର କରି ସେହି ନାରୀ
କାଳସମ ମୁଖରୁ କି ଯିବରେ ଉବୁରି । 165
ଯେବେ ବୋଲିବ ଗୋଷ୍ଠୀଏ ସ୍ତ୍ରୀ ଆସି ପୂର୍ବେ
ମହିଷାସୁରକୁ ମାରିଥିଲା କରେ ଦେବେ ।
ସେ କଥା ଗୋଷ୍ଠୀକୁ ଦୃଢ଼ କରିଛରେ ମୂଢ଼
ଅସୁର ନୋହେ ସେ ପଶୁ ତାର କଥା ଗୂଢ଼ ।
ରକ୍ତବୀର୍ଯ୍ୟ ନାମେ ପୂର୍ବେ ଦାନବେନ୍ଦ୍ର ଥିଲା
ସ୍ତ୍ରୀ ଘୋର ହୋଇ ତାଙ୍କୁ ମାରି ପକାଇଲା । 168
ଦୁର୍ବଳ ଅସୁର ତାର ବଳ ନାହିଁ କାୟେ
ଉତ୍ପତ୍ତି ତାର ଡେଙ୍ଗୁଣି ପୋକ ମଧ୍ୟା ପ୍ରାୟେ ।
ରକତ ଟୋପାରୁ ଜାତ ହୁଏ ସେ ଅସୁର
ତାହାଙ୍କୁ କେମନ୍ତେ ଆମ୍ଭେ ବୋଲିବାନା ବୀର
ରକତହିଁ ତାର ବୀର୍ଯ୍ୟ ତହୁଁ ସେହି ଜାତ
ରକତ ସୃଷ୍ଟି ଦିଅନ୍ତେ ହେଲା ସେ ନିପାତ ।
ମୂଳ ମାଇଲେ ଯେସନେ ଡାଳଯାଏ ମରି
ବୀଜ ବହୁନେ ଅଙ୍କୁର ନ ହୁଏ ଯେପରି 171
ତେସନେ ରକତ ବିନ୍ଦୁ ତାର ସିନା ପ୍ରାଣ
ତାକୁ ସୃଷ୍ଟି ଦ୍ୟନ୍ତେ ତାର ଭାଜିଲାକ ଜ୍ଞାନ ।
ପଶୁ ପ୍ରାୟେ ତାର ବଂଶ ଦେଲେ ବିଷାବଳୀ
ଏଥିପାଇଁ ବୀରତୁଲ୍ୟ ହେବେ କରେ ସ୍ତ୍ରୀ ।
ଆବର ବୋଲିବ ଶୁମ୍ଭ ନିଶୁମ୍ଭ ମାଇଲେ
ଆପଣା ଦୋଷରେ ସେହି ଆପେ ୨ ମଲେ ।
ପୁରାଣେ ଅଛି ସେ ଜନ ହୁଏ କାମାତୁର
ତାହାର ଜୀବନ ଯମ ଦ୍ୱାରେ ନିରନ୍ତର । 175
ଆବର ପୁରାଣ ବାଣୀ ଶୁଣରେ ପାମରେ
ନିରତେ ଭୟ ଥାଏଟି ଯାହାର ଅନ୍ତରେ ।
ତାହାର ଦୁଃଖ କେବଳ କ୍ଷଣେ ନାହିଁ ସୁଖ
କାମୀ ଯେ ହୁଏ ତାହାର ଶତ୍ରୁଦଳ ଦକ ।
ସାହସ ଧୈର୍ଯ୍ୟ ବଳ ବୁଦ୍ଧି ଯାଏ ହଜି
ସ୍ତ୍ରୀଙ୍କ ଠାରେ ନିରତେ ଚିତ୍ତ ଥାଏ ମଜି । 178

ଅଶନ ବସନ ତାଙ୍କୁ ହୁଏ ବିଷ ପରି
ବାଉଁଶ ଘୁଣ ଲାଗିଲା ପ୍ରାୟେ ତାର ଚିନ୍ତା ।
କେମନ୍ତେ ସେହି ସ୍ତ୍ରୀଙ୍କ ପାଇବ ଏମନ୍ତେ
ଚିନ୍ତାକରୁଥାଇ ବସି ଜାଣ ଦିବା ରାତ୍ରେ । 180
ଭିତରେ ଭିତରେ ପଶି ପୋକ ଯେଉଁପରି
ବାଉଁଶକୁ କାଟି ଖୋଲ କରି ଦିଏ ସାରି ।
ତେସନେ ସେ ଚିନ୍ତା ଯାର ଦେହ କରେ କ୍ଷୀଣ
ଆପଣା ଇଚ୍ଛାରେ ଆପେ ଦିଏ ନେଇ ପ୍ରାଣ ।
ତେଣୁ ସେ ମଲା ତାହାର ଦୋଷ ମୂଢ଼ପଣେ
ଗଣା ହୋଇବେ କି ସେହିବୀର ମଧ୍ୟେ ଜଣେ
ଯେବେ ତୁମ୍ଭେ ସେ ସ୍ତ୍ରୀଙ୍କ ବୀର ବୋଲି ଜାଣ
ଆସି ତୁମ୍ଭଙ୍କୁ ଉଦ୍ଧାରୁ ଆରେ ଦେବଗଣ ।
ଏମନ୍ତ କହି ହସଇ ଟହ ଟହ ହୋଇ
ବୋଲଇ ବ୍ରହ୍ମା ତୋଠାରୁ ଦୁଷ୍ଟ କେହିନାହିଁ ।
ତୋହର ଏସବୁ ବୁଦ୍ଧି ଜାଣିଲି ଏଥର
ଥିବାରୁ ସିନା ପାମର ଗୁରୁଗୋଷ୍ଠୀ ଶିର । 186
ମିଛେ ବେଦକାଣ୍ଡି କେତେ ପଢ଼ିଣ ବୁଝାଉ
କୁମନ୍ତ୍ରଣା ଦେଇ ତାଙ୍କୁ କୁମାର୍ଗ ଦେଖାଉ ।
ଯେବେ ତୁ ଏହାଙ୍କୁ ଏହି ବୁଦ୍ଧି ନ ଦିଅନ୍ତୁ
କମ୍ପାଇ ତୁହି ଏହାଙ୍କ ସଙ୍ଗତରେ ଥାନ୍ତୁ ।
ସେହି ଗୁରୁଗୋଷ୍ଠି ଶିର କାଟିଦେଲେ ତୋର
ସୁସ୍ଥେ ରହିବ ଆଜହୁଁ ଜାଣ ଏ ସଂସାର ।
ଆରେ ବଷ୍ଟୁ ତୁହି ପରା କୂଟ କପଟିଆ
କାହିଁ ଗଲା ତୋର କୂଟ ହୋଇଅଛୁ ଠିଆ ।
ଦେବଙ୍କପାଇଁ ପରା ତୁ ଧରି ଥାଉ ଛନ୍ଦ
ଦୈତ୍ୟଙ୍କୁ ଦେଖିଲେ ମୁଖ କରିଦେଉ ବନ୍ଦ
ବୋଲୁଥାଉ ଦୁଷ୍ଟଙ୍କୁ ମୁଁ କରଇ ସଂହାର
କରୁ ନାହାନ୍ତିକ ଦୁଷ୍ଟପଣ ଏ ଅମର । 192
ଏହାଙ୍କୁ କମ୍ପାଇଁ ତୁହି ନ ମାରୁରେ କହ
ବଡ଼ର ତୋହର ଶ୍ରେଷ୍ଠ ବଗିଡ଼ ପରାୟେ ।
ସେ ଯେହ୍ନେ ଦୁର୍ବଳ ଦେଖି ଅସର୍ପାକୁ ମାରେ
ତେସନ ତୁ ସିଂହ ସିନା ଦୁର୍ବଳ ଉପରେ ।
ବଳବନ୍ତ ଦେଖିଲେ ସେ ଡରେ ଥାଉ ଲୁଚି
ସମୁଦ୍ର ମଧ୍ୟରେ ରହିଥାଉ କୂର୍ମପାଞ୍ଚି ।
ଦେବଙ୍କ ପକ୍ଷ ହୋଇ ତୁ କରୁଅଛୁ ମେଳ
ଏହିକ୍ଷଣି ତୋତେ ଧରି ଦେବ ବିଷାବଳ । 196

ଆରେ ରୁଦ୍ର ମିଛ ତୁମ୍ଭ ଯୋଗୀ ଯେ ବୋଲାଉ
ହାତେ ଗୋଟା ଥାଳ ଧରି ଭିକ୍ଷ ମାଗୁଥାଉ ।
ଘର ଦ୍ୱାର ନାହିଁ ତୋର ମଶାଣିରେ ରହି
ହାଡ଼ ମାଳ କରି ଗଳେ ଥାଉ ପୁଣି ବହି ।
ଡମ୍ବରୁ ଗୋଟାଏ ଧରି ନାଚୁଥାଉ ପୁଣି
ନର୍ଲଜ ପ୍ରାୟ କାଖେଇ ଥାଉ ତୁ ରମଣୀ ।
ବଳଦ ଗୋଟାଏ ଚଢୁ ପାପକୁ ନ ଡରୁ
ଜଟା କାଟି ପକାଇବ ନେବଇଁ ଡମ୍ବରୁ ।
ଏମନ୍ତ ଗୋଟି ଗୋଟିଙ୍କି ଦିଅଇ ସେ ଗାଳି
ଖଡ଼ଗ ଧରି ହଲାଇ ଦିଏ ମହାବଳୀ ।
ଦାନ୍ତ କଟମଟ କରି ଗୃହେଁ ମହାରାଗେ
ଭୟରେ ଦେବତାମାନେ ନ ରହନ୍ତି ଆଗେ ।
ଦେବଙ୍କ ଏହି ଦୁର୍ଦ୍ଦଶା ଜାଣି ମହାମାଈ
ହୁଁ କାର ନାଦ କରେ ସେ ଗଗନରେ ଥାଇ ।
ଅସୁର ଆଗେମିଳିଲେ କରେଧରି ଖଣ୍ଡା
ଜଗତ ଜନ ମୋହିନୀ ରୂପେ ଗଲେ ଧଣ୍ଡା
ଷୋଳଗୋଟି ଭୁଜରେ ଯେ ବିରାଜଇ ଅସ୍ତ୍ର
କେବଣ ହସ୍ତେ ବିରାଜୁ ଅଛି ଅସିପତ୍ର ।
କେବଣ କରେ ମୁଦ୍‌ଗର ବିକଟ ଦିଶଇ
କେବଣ କରେ ଶକତି ଗୋଟା ବିରାଜଇ ।
କେବଣ କରେ ଉଜ୍ଜ୍ୱଳ ମୂଷଳ ଅଛଇ
କେବଣ କରେ ଶକତି ଗୋଟା ବିରାଜଇ ।
କେଉଁ ହସ୍ତେ ଧନୁ କେଉଁ ହସ୍ତେ ଶୋହେ ଶର
କେଉଁହସ୍ତରେ ପଟ୍ଟିଶ କେଉଁ ହସ୍ତେ ବର ।
କେଉଁ ହସ୍ତେ କୁନ୍ତ କେଉଁହସ୍ତେ ଅଛି ପାଶ
କେବଣ ହସ୍ତେ ଖପର କେଉଁ ହସ୍ତେ ପ୍ରାସ ।
କେଉଁ ହସ୍ତେ ଶୂଳ କେଉଁହସ୍ତେ ଅଛି ଯଷ୍ଟି
କେଉଁ ହସ୍ତେ କାତି କେଉଁ ହସ୍ତେ ଛୁରିଗୋଟି ।
ସିଂହ ପିଠିରେ ବିଜୟ ଦେବୀ ମହାମାଈ
ଦୁର୍ଦ୍ଦାନ୍ତ ଦାନବ ଦେବୀ ରୂପକୁ ସେ ଚାହିଁ ।
ଅସୁରଙ୍କୁ ଚାହିଁ କୋପେ ବୋଲେ ମାରମାର
ଧାଇଁଲେ ଦୁର୍ମୁଖ ଆଦି ଯେତେକ ଅସୁର ।
ଅସ୍ତ୍ର ଶସ୍ତ୍ର ଧରି ସ୍ୱର ପାଖେ ଗଲେ ଘେରି
ଦାନବ ବଳ ଧ୍ୱଂସିଲେ ଦେବୀ ଶର ମାରି ।
ଅସଂଖ୍ୟ ଅସୁର ଥାଟ ଆସୁଛନ୍ତି ମାଡ଼ି
ଯେସନେ ସମୁଦ୍ର ମଧ୍ୟେ ଆସଇ ଲହଡ଼ୀ ।

ଗିରିପ୍ରାୟ ବିରାଜଇ ଅସୁରଙ୍କ କାୟ
ସମର କରନ୍ତି ଚଣ୍ଡେ ତିଳେ ନାହିଁ ଭୟ ।
ବାଇଦ ଯେ ବଜ୍ରଘୋଷ ଦାଉଣ୍ଡି ନିସାଣ
ସୁରାପାନେ ମତ୍ତ ହୋଇ ନିଶାଚରଗଣ ।
ଖଣ୍ଡା ଶାବେଳ ଲଙ୍କିଆ ପରିଘ ମାରନ୍ତି
ଦେଖି ଦୁର୍ଗାଦେବୀ ହେଲେ ତହିଁ କୋପମୂର୍ତ୍ତି ।
ଚଣ୍ଡୀ ଚାମୁଣ୍ଡା ଯୋଗିନୀ ଭୈରବୀ ଡାକିନୀ
ତାଳୀ ବେତାଳୀ କଙ୍କାଳୀ ରଙ୍କୁଣୀ ଶାକିନୀ ।
କାଳୀ କରାଳୀ ପ୍ରଚଣ୍ଡ ଉଗ୍ରଚଣ୍ଡାଗଣ
ବାହାରିଲେ ଦେବୀଙ୍କର ଦେହୁ ପଣ ପଣ ।
ଲହ ଲହ ଜିଭ କରି ଗହ ଗହ ନାଦେ
ଟହ ଟହ ହସ ହସ ପଶିଲେ ବିବାଦେ ।
କରତାଳ ମାରି କେହି ନାଚେ ଥେଇ ଥେଇ
କେହି ଖେମଟା ନାଚଇ କେଶ ମୁକୁଳାଇଁ ।
କେହି ଦାନ୍ତ କଟମଟ କରି ଧୀରେ ଧୀରେ
ନାଚି ନାଚି ଯାଉଅଛି ସମର ଭୂମିରେ ।
କାହାର ମୁଖ ବିକଟ ନାସା ଅତି ଶ୍ରେଷ୍ଠ
କାହାର ଶିରେ ବିରାଜୁ ଅଛଇଁ ମୁକୁଟ ।
କାହାର ନାଭି ଗଭୀର ଅନ୍ଧକୂପ ପରି
କାହାର ବାଳ ଝାମ୍ପୁଡ଼ା ଧାଏଁ ଆଁ ଆଁ କରି
କାହାର ବହୁତ ଆଖି ମୁଣ୍ଡ ଖପୁରିରେ
କାହାର ଦାନ୍ତ ବହୁତ ଅଟଇ ପାଟିରେ ।
ଧାଇଁଲେ ସେ ଦେବୀଗଣ କୋଟି ୨ ହୋଇ
ଅସୁରମାନଙ୍କୁ ଧରି ଦାନ୍ତରେ ଚୋବାଇ ।
ପକାଇ ଦିଅନ୍ତି ତଳେ ଗଣ୍ଡି ହାଡ଼ମାନ
କାହାର ବୁକୁ ବିଦାରି କରି ରକ୍ତପାନ ।
ନିର୍ଜ୍ଜୀବ କରି ଚକାଇ ଦିଅନ୍ତି ଭୂମିରେ
ଏମନ୍ତେ ମହା ମାରଣୀ କଲେ ସଂଗ୍ରାମରେ ।
ଅସୁର ଗୋଟିକେ ଦେବୀ ପାଞ୍ଚଶତେ ଘୋଟି
ଜିଭ ଲହ ଲହ କରି ପକାନ୍ତି ସେ ଚୁଟି ।
ଏମନ୍ତେ ଘୋର ସମର କଲେ ଦୁଇଘଡ଼ି
ମଡ଼ାପରେ ଅନେକ ଯେ ମଡ଼ାଗଲେ ପଡ଼ି ।
ଗଜ ଅଶ୍ୱ ବ୍ୟାଘ୍ର ଆଦି ଥିଲେ ଯେ ବହନ
ତାହାଙ୍କୁ ମାଇଲା ସିଂହ କରି ଗରଜନ ;
ଦେଖି ବଡ଼ ବଡ଼ ବୀରେ ହେଲେ ଆଗୁଁସାର
ଦେବୀଙ୍କ ଉପରେ କଲେ ନାରାଚ ପ୍ରହାର ।

ପାଚି ବିସ୍ତାରି ସମରେ ଉଠି ଦେବୀଗଣ
ଅସୁର ନାରାଚ ମାନେ ଗର୍ଭକୁ କ୍ଷେପିଣ ।
ମାଇଲେ ଖଣ୍ଡା ଖଡ଼ଗ ଧରି କୋପଭରେ
କାହାକୁ ମାରି ପକାନ୍ତି ପାତଣ ଖପରେ ।
ନଖେ ଛିଣ୍ଡାଇ ପକାନ୍ତି କାହାର ବା ଅନ୍ତ
କାହା ମାଂସ ରକତନ୍ତ ଲଗାଇଣ ଦାନ୍ତ ।
କାହାକୁ ଗଳେ ପକାଇ ତା ଗ୍ରୀବ ଉପରେ
ଛିଡ଼ାହୋଇ କେଉଁଦେବୀ ହସି ନୃତ୍ୟ କରେ ।
କାହାର କେଶ ଧରି କେ ନଅଇ ଘୋଷାଡ଼ି
କେଉଁଦେବୀ ଘୋଷାହୋଇ ଢଅଇ ଫୋପାଡ଼ି
ଧାଆଁଲେ ଧାଆଁଲେ କହି କେହି ହୁଏ ଆଗ
ଆସଲେ ଆସଲେ କହି ମାଏ ବେଗ ବେଗ ।
ଏମନ୍ତେ ଅସୁର ବଳ ନପାଡିଲେ ଯହୁଁ
ଦୁର୍ଗମ ଅମୃତ ଦେଖି ମାୟା କଲା ତହୁଁ ।
ଗଡ଼ ଉଡ଼ାଇଲା ଶୂନ୍ୟେ ଆଗେ ଯେ ଅଦୃଶ୍ୟ
ଅସୁରବଳକୁ ଦୁର୍ଗା କରିଣ ନିଃଶେଷ ।
ଦେବୀଗଣଙ୍କୁ ଆପଣା ଉଦରେ ପୂରାଇ
ଧାଇଁଲେ ଗଗନମାର୍ଗେ ଦୁର୍ଗା ମହାମାଈ ।
ଅସୁର ଗଡ଼କୁ ଧରି ନ ପାରନ୍ତି କେଭେ
ବଡ଼ ପ୍ରତାପୀ ଦାନବ ଯାଉଅଛି ନଭେ ।
ଗଡ଼ର ଭିତରେ ଲୁଚି ମାରୁଅଛି ଶର
କୋଟି କୋଟି ଲକ୍ଷ ଲକ୍ଷ ଅସଂଖ୍ୟ ଅପାର ।
ଉଲ୍କାପାତ ପରାୟେ ଦିଶେ ଅନ୍ତରୀକ୍ଷେ
ଦୁର୍ଗା ତାହାକୁ ଛେଦିଲେ ଶରମାରି ଲକ୍ଷେ ।
ଦେଖି ମାୟା ବିସ୍ତାରିଲା ପ୍ରତାପୀ ଅସୁର
ଦୁର୍ଗମ ଦୁର୍ଗ ଅଦୃଶ୍ୟ କ୍ଷଣକ ଭିତର ।
ଅସୁରକୁ ନ ପାଇଣ ଦେବୀ ଭଗବତୀ
ଚାମୁଣ୍ଡା ଗଣଙ୍କୁ ଗର୍ଭୁ କଲେ ଉତପତ୍ତି ।
ବୋଇଲେ ଆକାଶପଥ ରୋଧ ଲେ ତୁରିତେ
ଚଣ୍ଡୀଗଣଙ୍କୁ ବୋଇଲେ ରହି ଶକ୍ତହସ୍ତେ
ମହୀକି ବାଟ ନ ଛାଡ଼ ଦିଅ ଅସୁରକୁ
କାଳୀଙ୍କି ବୋଇଲେ ଜଗ ଯାଇଁ ପାତାଳକୁ ।
ଚଉଦଭୁବନ ଯାକ ଘୋଟି ଯାଇ ବେଗେ
ସମସ୍ତେ ଖପରପାତି ଥିବ ଆଗେ ଆଗେ ।
କରାଳୀକି ବୋଇଲେ ତୁ ଦାଢ଼ଥିବୁ ପାତି
କଙ୍କାଳୀକି ବୋଇଲେ ତୁ ପାତିଥିବୁ କାତି ।
ବଇଷ୍ଣବୀକି ବୋଇଲେ ଚକ୍ର କରେ ଧରି
ଶୂନ୍ୟେ ଭ୍ରମୁଥିବୁ କୁମ୍ଭକାର ଚକ୍ରପରି ।
କୁମାରୀକି ବୋଇଲେ ତୁ ପାତ ନେଇ ପାଶ
ଏମନ୍ତେ ଦୁର୍ଗାଙ୍କଠାରୁ ପାଇଣ ଆଦେଶ ।
ଘୋଟିଲେ ଆକାଶ ଯାକ ଦେବୀଗଣ ଯାଇଁ
ଯେସନେ ପ୍ରଳୟ ମେଘ ଆକାଶ ଘୋଟଇ ।
ଜଳ ସ୍ଥଳ ପାତାଳରେ ଜଗିଲେ ଯୋଗିନୀ
ବନ ପର୍ବତେ ରହିଲେ ଖପରକୁ ଘେନି ।
ଗ୍ରାମେ ଗ୍ରାମେ ଦେଶେ ଦେଶେରହି ମହାମାଈ
ଅସୁର ଯିବାକୁ ବାଟ କାହିଁ ଛଡ଼ିଲେ ନାହିଁ ।
ଦୁର୍ଗମ ଅସୁର ଦେଖି ହୋଇଣ ତାଟକା
ଗଡ଼ ମଧ୍ୟରେ ଦାନବ ରହିଅଛି ଏକା ।
କେତେବେଳେ ଦୃଶ୍ୟହୋଇ ନାରାଚ ମାରଇ
କେତେବେଳେ ମାୟାଗଡ଼େ ଅଦୃଶ୍ୟ ହୁଅଇ
ଦେବେ ସେହି ଗଡ଼ମଧ୍ୟେ ହୋଇଛନ୍ତି ବନ୍ଧ
ଆସି ନ ପାରନ୍ତି ମାୟାଗଡ଼ ଗୋଟା ଭେଦ ।
ଅସୁର ତହିଁ କରଇ ନାରାଚ ପ୍ରହାର
କେତେବେଳେ ଶୂଳ ଶକ୍ତି ମୂଷଳ ମୁଦ୍‌ଗର ।
ଦୁର୍ଗା, ଦାନବ ଆୟୁଧମାନ ବାଣେ ଛେଦି
ମାୟାଦୁର୍ଗାଙ୍କୁ କଦାପି ନ ପାରନ୍ତି ଭେଦି ।
ଏମନ୍ତେ ହେଲା ସମର ସହସ୍ରେ ବରଷ
ସିଂହକୁ ବୋଇଲେ ତୁହି ଗଡ଼ ଡେଇଁ ପଶ ।
ମହାବଳ ସିଂହ ତାର ନ ପାଇଲା ଅନ୍ତ
ଦେଖି ମହାକୋପେଦେବୀ କରେ ଧରି କୁନ୍ତ ।
ଫୋପାଡ଼ିଲେ ଦୁର୍ଗ ଭାଙ୍ଗି ହେଲା ଖଣ୍ଡ ଖଣ୍ଡ
ଦେଖିଣ ଦାନବ ଭୟେ ହେଲା ଲଣ୍ଡଭଣ୍ଡ ।
ପଳାଇ ଯିବାକୁ ମନକଲା ସେ ଅସୁର
ଦେଖେ ଚଉଦ ବ୍ରହ୍ମାଣ୍ଡଯାକ ଭୟଙ୍କର ।
ଯିବାପାଇଁ ବାଟ ଯହୁଁ ନ ପାଇଲା ସେହି
ଧନୁ ଧରିଣ ନାରାଚ ବିନ୍ଧିଲାକ ରହି ।
ରୁଧିରରେ, ଜର ଜର ହେଲେ ଦେବୀଗଣେ
ଦୁର୍ଗାଦେବୀ ଦାନବର ଗଡ଼ ଭାଙ୍ଗି ବାଣେ ।
ଦେବତାମାନଙ୍କୁ ତହୁଁ ଦେଲେ ମୁକୁଳାଇ
ଅସୁର ଆଗେ ଧଜଟେ ସିଂହପୃଷ୍ଠେ ଥାଇ ।
ବୋଇଲେ ଦାନବ ଆରେ ଯିବୁ ଆଜକାହିଁ
ମୃତ୍ୟୁଦେବତା ପାଖକୁ ଅଇଲଣି ଧାଇଁ ।

ଏହିକ୍ଷଣି ତୋତେଧରି କରିବ ସେ ଗ୍ରାସ
ବନ୍ଦ କରି ରଖିଥିଲୁ ତୁପରା ନିଦଶ ।
ମାୟା ତୋହର କେଣିକ ଗଲାରେ ପାମର
ତୁହି ପରା ବଳବନ୍ତ ଅଟୁ ମହାବୀର ।
କେତେ ତୁ ଆୟୁଧ ଧର ନ କରଣ ଖିତି
କେବୀର ମୁଖୁ ଏମନ୍ତ ଶୁଣି ସେ ଦୁର୍ମତି ।
ବୋଇଲା ଗର୍ବ ନ କର ମୋ ଆଗରେ ତୁହି
ଆନ ଅସୁର ପରାୟ ନୁହଇ ଯେ ମୁହିଁ ।
ମୁହିଁ ସିଂହ ତୁହି ସିନା ଅଟୁ ଲୋ ଶୃଗାଳୀ
ଏହିକ୍ଷଣି ରଣେ ଦେବି ତୋତେ ବଷାବଳି ।
ଯେବେ ଜୀବନକୁ ଆଶା ଅଛଇ ତୋହର
ମୋହର ଭାରିଯା ହୋଇ କର ତୁ ଲୋ ଘର ।
ନୋହିଲେ ସମର କର ନାହିଁ ମୋର ଖିତି
ଏମନ୍ତ କହି ନାରାଚ ବନ୍ଧିଲା ଦୁର୍ମତି ।
ଦୁର୍ଗା ଅସୁର ନାରାଚ ପକାଇଲେ ଛେଦି
ଦେଖି ଦାନବ କୋପରେ ଆନବାଣ ସନ୍ଧି ।
ନ ଆସୁଣୁ ଦେବୀ ତାହା ଛେଦି ପକାଇଲେ
ଆବର ଅସୁର ହସ୍ତୁ ଧନୁକୁ ଛେଦିଲେ ।
ଦେଖି ପ୍ରତାପୀ ଦନୁଜ ଧଇଲା ଶକତି
ସିଂହଶିରେ ପ୍ରହାରିଲା କରି ବେଗଗତି ।
ମୂର୍ଚ୍ଛାଯାଇ ମହାସିଂହ ପଡ଼ିଲା ଭୂମିରେ
ଶକତି ଗୋଟାକୁ ଦେବୀ କାଟିଲେ ହଣ୍ଡିରେ ।
ଦେଖି କୋପେ ଶୂଳଧରି ଧାଇଁଲା ଦାନବ
ମହାଭୟଙ୍କର ବପୁ ଦାରୁଣ ସ୍ୱଭାବ ।
ଯମର ଉପରେ କିବା ଅଟଇ ସେ ଯମ
ଆସୁଅଛି ଦୁର୍ବାନ୍ତକ ହୋଇ ଡମ ଡମ ।
ମହାମାୟା ଶୂଳଗୋଟା ପକାଇଲେ କାଟି
ନିଶସ୍ତ୍ର ହୋଇ ଦାନବ ପ୍ରହାରିଲେ ମୁଷ୍ଟି ।
ଦେବୀଙ୍କ ଗ୍ରୀବରେ କୋପେ ପ୍ରହାରିଲେ ଦୈତ୍ୟ
ମହାକୋପେ ମହାମାୟା ହେଲେ ପ୍ରଜ୍ୱଳିତ ।
ମହା ଭଇରବମୂର୍ତ୍ତି ପ୍ରକାଶିଲେ ତହିଁ
ଘୋଟିଲେ ପାତାଳ ସ୍ୱର୍ଗ ଅନ୍ତରୀକ୍ଷ ମହୀ ।
ମହାଭୟଙ୍କର ରୂପ ବ୍ୟାପିଲା ଗଗନ
ବିକଟାଳ ଦୀର୍ଘଦନ୍ତ କରାଳ ବଦନ ।
ତାର ପ୍ରାୟ ହିରାବନ୍ତ ନେତ୍ର କୋଟି କୋଟି
କୋଟି କୋଟି ରୂପ ଅଛି ବ୍ରହ୍ମାଣ୍ଡକୁ ଘୋଟି । ୨୮୫

କୋଟି କୋଟି ଭୁଜେ ଅଛି କୋଟି କୋଟି ବଣ
କୋଟି କୋଟି ବ୍ରହ୍ମାଣ୍ଡକୁ ଘୋଟିଛି ଚରଣ । ୨୮୬
ଦେଖି ମହାଭୟ ପାଇ ଦୁର୍ଗମ ଅସୁର
ମାୟାରେ ହେଲା ସେ ପୁଣି ଦୁର୍ଗର ଆକାର ।
ମାଡ଼ି ବସିଲେ ତାହାକୁ ଦେବୀ ବିଶ୍ୱରୂପେ
ଶୂଳ ପ୍ରହାରିଲେ ତାର ଉରେ ମହାକୋପେ ।
ଗର୍ଜିଲା ଦଇତ ସିନ୍ଧୁ ଗରଜିଲା ପରି
କମ୍ପିଲେ ସପତ ଦ୍ୱୀପ ମହୀ ଅଷ୍ଟଗିରି ।
ଆକାଶ କି ଭଙ୍ଗି ତଳେ ପଡ଼ିଲା କି ଆସି
କି ଅବା ପୃଥିବୀ ଯିବ ରସାତଳେ ଲସି । ୨୯୦
ଏମନ୍ତ ଦେଖିଣ ଦୁର୍ଗାଦେବୀ କୋପଭରେ
ପୁଣି ଶୂଳ ପ୍ରହାରିଲେ ଅସୁର ଉଦରେ ।
ପ୍ରାଣ ଛାଡ଼ି ମହାସୁର ଗଲା ଯମଘର
ଦେଖି ଆନନ୍ଦ ହୋଇଲେ ବ୍ରହ୍ମା ବିଷ୍ଣୁ ହର
ଜୟ ଜୟ ଶବଦରେ ପୂରିଲା ଆକାଶ
କରଯୋଡ଼ି ସ୍ତୁତିକଲେ ସକଳ ନିଦଶ ।
ଜୟ ତୁ ଜୟ ତୁ ମାଗୋ ଅନନ୍ତ ରୂପିଣୀ
ଜୟ ତୁ ଜୟ ତୁ ମାଗୋ ଦନୁଜ ଦଳନୀ । ୨୯୫
ଜୟ ତୁ ଜୟ ତୁ ମାଗୋ ଅନାଦି ଅଚିନ୍ତ୍ୟା
ଜୟ ତୁ ଜୟ ତୁ ମାଗୋ ଆଦିମାତା ପୂର୍ଣ୍ଣା ।
ବାରେ ବାରେ ଆମ୍ଭଠାରେ କୃପାକରି ମାତ
ଦୁର୍ଦ୍ଦାନ୍ତ ଦନୁଜ ବଳ କରୁ ଗୋ ନିପାତ ।
ମହିଷାସୁର ଯେ ଥିଲା ସତ୍ୟଯୁଗେ ପୂଣି
ଏଡ଼େ ପ୍ରତାପ ନ ଥିଲା ତାର ଗୋ ସାମଣି ।
ଶୁମ୍ଭ ନିଶୁମ୍ଭ ଆବର ଚମର ବେତାଳ
ରକ୍ତବୀର୍ଯ୍ୟ ଚଣ୍ଡ ମୁଣ୍ଡ ବୀର କାନ୍ତିମାଳ । ୨୯୮
ମହାହନୁ ମହାକାୟ ବିକ୍ଷର ଅସୁର
ଉଗ୍ରାୟୁଧ ତାରକ ଯେ ରକ୍ତକ ଆବର ।
ବିଦ୍ରୁଚିତ୍ତ ହିରଣାକ୍ଷ ହିରଣ୍ୟକଶିପୁ
ଏମନ୍ତ ବହୁତ ଦୈତ୍ୟ ଥିଲେ ଦେବରିପୁ । ୩୦୦
କେହି ଏମନ୍ତ ପ୍ରତାପୀ ନ ଥିଲେ ଗୋ ମାତ
ଏହାର ମାୟା ବିସ୍ତୃତି ହୋଇଲା ଅନନ୍ତ ।
ଦାରୁଣ ଦୁର୍ଗାମାସୁର ମାଇଲୁ ତୁ ହେଲେ
ଏହି ଦୁର୍ଗାନାମ ତୋର ରହୁ କାଳେ କାଳେ ।
ଏହି ବର ମାଗୁଅଛୁ ତୋତେ ଆଦିମାତା
ଦୁର୍ଗାନାମ ସୁମରିଲେ ଛାଡ଼ିଯିବ ଚିନ୍ତା । ୩୦୩

ପ୍ରଭାତରେ ଦୁର୍ଗା ଦୁର୍ଗା କହିବ ଯେ ଜନ
ତାହାର ଦୁଃଖ ଦୁରନ୍ତ ହୋଇବ ମୋଚନ ।
ଦୁର୍ଗାପୂଜା କରିବ ଯେ ଧୂପ ଦୀପ ଦେଇ
ଅଚଳାଚଳ ସମ୍ପତ୍ତି ଦେବୁ ମହାମାଈ ।
ଦୁର୍ଗାନାମ ଗୋଟି ତୋର ଦୁର୍ଗତି ନାଶିବ
ଦୁର୍ଗାନାମ ଗୋଟି ତୋର ସର୍ବ କାର୍ଯ୍ୟ ଶୁଭ ।

ଦୁର୍ଗାନାମ ଗୋଟି ହେଉ ବିପଦେ କଲୁଷୀ
ଦୁର୍ଗା ନାମ ଗୋଟି ହେଉ ନାମ ମଧ୍ୟେ ଶିରୀ ।
ଦୁର୍ଗାନାମ ଗୋଟି ହେଉ ନାମ ମଧ୍ୟେ ସାର
ସୁଦୟା କରି ଗୋ ମାତ ଦିଅ ଏହି ବର ।
ହେଉ କହି ଅନ୍ତର୍ଦ୍ଧାନେ ଗଲେ ମହାମାଈ
ଚକ୍ରଧର ବୋଲେ ଦୁର୍ଗା ଦୁର୍ଗା ବୋଲ ଭାଇ ।





## ବହୁଶିର୍ ଜନ୍ମ ଓ ବହୁଶିର୍ ବଧ
## ଏବଂ ବହୁଶିର୍ ଦ୍ୱୀପ ନିର୍ମାଣ

ଶଙ୍କର କହନ୍ତି ଦେବୀ ପାର୍ବତୀ ଗୋ ଶୁଣ
ପରମ ପବିତ୍ର ଏ ବିଲଙ୍କା ରାମାୟଣ ।
ଉତ୍ତର କାଣ୍ଡ ଚରିତ ଯେ ଜନ ଶୁଣିବ
ଗ୍ରାମେ ଗ୍ରାମେ ଘରେ ଘରେ ଅବା ଶୁଣାଇବ ।
ତରିବ ତାରିବ ଭବ ପାରିବାରୁ ଜାଣ
ରାମ ନାମାମୃତ ରସ କରି ଭୁ ଗୋପନ ।
ଦୁର୍ଗମ ଅସୁର ଯହୁଁ ଯମପୁର ଗଲା
ତାର ମୃତ ଶବ ଯାଇ ସମୁଦ୍ରେ ପଡ଼ିଲା ।
ଲବଣସାଗରେ ଜଳ ପଡ଼ିଲା ଉଚ୍ଛୁଳି
କେତେ ଜଳଜନ୍ତୁ ମଲେ କେ ପାରିବ କଳି ।
ଦେବତାମାନେ ଆନନ୍ଦେ କଲେକ ଉତ୍ସବ
ଅମରାବତୀ ପୁରକୁ ସାଜିଲେ ବାସବ ।
ସଭା କରି ଗୀତନୃତ୍ୟ ଆରମ୍ଭିଲେ ତହିଁ
ମହା ଆନନ୍ଦ ହୋଇଲା ଚରାଚର ମହୀ ।
ଏଥୁଅନନ୍ତରେ କଥା ଶୁଣ ଶାକମ୍ଭରୀ
ଅସୁରର ଥିଲା ଏକ ନବଯୁବା ନାରୀ ।
ରୂପେ କି ସେ ରତିଦେବୀ ରମ୍ଭା ଅପସରୀ
ଯୁବ ଜନମାନଙ୍କର ନୟନପସରୀ ।
ଶିରୀଲଜଙ୍ଘ ଦୁହିତା ଅତି ସୁକୁମାରୀ
ନବମାସ ଗର୍ଭ ହୋଇଥିଲା ଯେ ତାହାର ।
ଦୁର୍ଗମ ଅସୁର ମନ୍ତ୍ରୀ କଳପା ଅସୁର
ତାହାକୁ ସେ ନେଇ ଗଲା ପାତାଳ ନଗର ।

ଆପଣାପୁରରେ ତାକୁ ରଖିଲା ଯତନେ
ପୁତ୍ର ଜାତ କଲା ଦଶମାସ ଦଶଦିନେ ।
ସେ ଦିନ ରଜନୀ କାଳେ ହେଲା ପୁତ୍ରଜାତ
ବିଷ୍କିନାମେ କରଣ ଯେ ଯୋଗ ବ୍ୟତିପାତ ।
ଉତ୍ତମ ବାର ବିଶେଷେ ଚତୁର୍ଥୀ ଯେ ତିଥି
ଶ୍ରାବଣ ମାସ କକଡ଼ା ଘରେ ସଂକ୍ରାନ୍ତି ।
ଜନମବେଳେ କୁମର ଦେଲା ଘୋରରଡ଼ି
କି ଅବା ପ୍ରଳୟକାଳ ମେଘ ଘଡ଼ଘଡ଼ି ।
ବହୁତ ମୁଣ୍ଡ ତାହାର ଦେଖି ମାଡ଼େ ଡର
ବହୁତ କର ଚରଣ ହୋଇଛି ଆବର ।
ଦେଖି ମନ୍ତ୍ରୀବର ତାକୁ ବିଚାରିଲା ମନେ
ଏମନ୍ତେ ଅଦ୍ଭୁତ ପୁତ୍ର ଜନ୍ମିଲା କେସନେ ।
ବିଧାତାର ଗତି କେହୁ ଜାଣିବ କେମନ୍ତେ
ଏମନ୍ତ ଭାଳି କଳପା ଆପଣାର ଚିତ୍ତେ ।
ପାଳିଲା ସେ ପୁତ୍ର ଗୋଟି ଅତି ଯତ୍ନକରି
ବହୁଶିରା ବୋଲି ନାମ ରଖିଲା ତାହାର ।
ଏମନ୍ତ ଶୁଣି ବୋଇଲେ ଦେବୀ ଯେ ପାର୍ବତୀ
ବଡ଼ ସନ୍ଦେହ ମୋ ମନେ ଜାତ ପଶୁପତି ।
ଏମନ୍ତ କୁମାର କିମ୍ପା ହୋଇଲା ତାହାର
କେମନ୍ତେ ଫାଟି ନ ଗଲା ତାହାର ଉଦର ।
ଏମନ୍ତ ଅଦ୍ଭୁତ ରୂପ ସେ ବାଳକ ଧରି
କେମନ୍ତ ଜନମ ହେଲା କହ ଶୂଳଧାରୀ ।

ଶୁଣି ଦେବ ସଦାଶିବ ବୋଇଲେ ଗଉରୀ
ବଡ଼ ସନ୍ଧ କଥାମାନ ପାରୁ ତୁ ପଚାରି ।
ଶିଙ୍ଖଳଜଙ୍ଘ ନାମରେ ଏକଇ ଅସୁର
ବଡ଼ ପ୍ରତାପୀ ଦଇତ ବୁଲେ ଏକେଶ୍ୱର ।
କାହାକୁ ତାହାର ଖାତି ନାହିଁ ତିନ ପୁରେ
ବନେ ସେହି ଯାଉଥିଲା ଶ୍ୱେତଗଙ୍ଗା ତୀରେ ।
ମଦନକଳା ବେଶ୍ୟାକୁ ଦେଖିଲା ସେ ତହିଁ
ସ୍ନାନ କରି ସାରି ବାଳୀ କୂଳେ ଅଛି ରହି ।
ଏକେତ ସେ ବାରନାରୀ ସର୍ବାଙ୍ଗ ସୁନ୍ଦରୀ
ଶୁଦ୍ଧ ସ୍ନାନ ସାରି କୂଳେ ଉଭା ସୁକୁମାରୀ ।
ବଳେ ତାକୁ ଧରି କୋଳ କଲାକ ଅସୁର
ଏକେତ ଯୁବା ପୁରୁଷ ବଳିଷ୍ଠ ଆବର ।
ସେହି ବେଶ୍ୟା ଗର୍ଭୁ ଜାତ ହେଲା ଏକ ବାଳୀ
ତାହାକୁ ତେଜି ସେ ବେଶ୍ୟା ସ୍ୱର୍ଗେଗଲା ଚଳି ।
ଅସୁର ତାହାକୁ ଯତ୍ନେ ପାଳିଲା ତା ଘରେ
ଯୁବତୀ ହୁଅନ୍ତେ ତାକୁ ଘେନି ସଙ୍ଗତରେ
ପାତାଳପୁରୁ ବାହାର ହୋଇଲା ଅସୁର
ଦୁହିତା ପାଇଁ ମନରେ ଖୋଜୁଥାଇ ବର ।
ରୂପବନ୍ତ ଗୁଣବନ୍ତ ପାଇଲେ ସେ ଦେବ
ଏମନ୍ତ ଭଳି ପୃଥ୍ୱୀରେ ଭ୍ରମଇ ଦାନବ ।
ବାଲଖିଲ୍ୟା ତପୋବନେ ମିଳିଲା ସେ ଯାଇ
ଦୁହିତା ସେହି ଆଶ୍ରମ ଗୋଟିକୁ ଦେଖଇ ।
ଏକେତ ଯୁବତୀ ପୁଣି ଦାନବ ନନ୍ଦନୀ
ଅତି ଗେହ୍ଲାରେ ବଢ଼ିଛି ବାପଘରେ ପୁଣି ।
ମାତୃହୀନା ଦେଖି ଗେହ୍ଲା କରଇ ଅସୁର
ଏକେତ ସେ କନ୍ୟା ଗୋଟି ପରମ ସୁନ୍ଦର ।
ମୁନିର ଆଶ୍ରମ ଦେଖି ହରଷ ତା ମତି
ବାଲଖିଲ୍ୟା ଋଷିଗଣ ଆଶ୍ରମେ ନାହାନ୍ତି ।
ସମିଧ ନିମନ୍ତେ ଯାଇଛନ୍ତି ଘୋରବନେ
କନ୍ୟାରତନ ଆଶ୍ରମ ଦେଖିଣ ନୟନେ ।
ଯାଉଅଛି ବନେ ବନେ ଗେଲ ଗେଲ ହୋଇ
କେଉଁ ଗଛରୁ କୁସୁମ ଆଣଇ ଛିଣ୍ଡାଇ ।
ମୃଗଛୁଆଲ ଦେଖି ତାଙ୍କ ପଛେ ପଛେ ଯାଇ
ଧରିବା ନିମନ୍ତେ ବାଳୀ କରକୁ ବଢ଼ାଇ ।
ଖଣ୍ଡେ ଦୂରୁ ପୁଣି ଫେରି ଆସଇ ସେ ବାଳୀ
ଶରଧାରେ କେଉଁ ବୃକ୍ଷୁ ଫଳ ଆଣେ ତୋଳି

ତାହାକୁ କାମୁଡ଼ି ଦାନ୍ତେ ଦଅଇ ପକାଇ
ଏମନ୍ତେ ଯାଉଅଛି ସେ ଗେହ୍ଲାଇ ଗେହ୍ଲାଇ ।
ବାଲଖିଲ୍ୟା ଋଷିଗଣ ସମିଧ ମୁଣ୍ଡାଇ
ବନ ମଧ୍ୟରୁ ଆସନ୍ତି ଲଣ୍ଡଭଣ୍ଡ ହୋଇ ।
ଷାଠିଏ ସହସ୍ର ଜାଣ ବାଲଖିଲ୍ୟା ଋଷି
ଅଙ୍ଗୁଷ୍ଠ ମାତ୍ର ପୁରୁଷ ଆଗୋ ଶୁଭ୍ରକେଶୀ ।
କାଠ ମୁଣ୍ଡେ ଘେନି ବାଟେ ଆସନ୍ତି ତୁରିତେ
ବେଳ ଉଚ୍ଛୁର ହେବାରୁ ଅଗମ୍ୟ ବନସ୍ତେ ।
ଦେଖି ତାଙ୍କୁ ସେ ସୁନ୍ଦରୀ ନାକେ ହାତଦେଇ
ଉପହାସ କଲା ଅତି ଆଚମ୍ବିତ ହୋଇ ।
ଯଉବନ ଗର୍ବେ ତାଙ୍କୁ କହଇ ଇଙ୍ଗିତେ
ବାଟ ଓଗାଳିଲା ବାଳୀ ଗେହ୍ଲା ହୋଇ ପଥେ ।
କୋପେ ଋଷିଗଣ ତାକୁ ଦେଲେ ଅଭିଶାପ
ଉପହାସ କଲା ବାଳୀ ଦେଖି ଅଳ୍ପ ରୂପ ।
ବିଧାତା ଯାହାକୁ ଗଢ଼ିଅଛି ଯେଉଁରୂପେ
କାହାକୁ ସାନ କାହାକୁ ବଡ଼ କରି ଥାପେ ।
କାହାକୁ ସୁନ୍ଦର କରେ କାହାକୁ କୁତ୍ସିତ
କାହାର ବା ଦୁଇ ହସ୍ତ କାର ବହୁ ହସ୍ତ ।
କାହାର ଗୋଟାଏ ଶିର କାହାର ଦ୍ୱିଶିର
ରୂପ ଯଉବନ ବାଳୀ ଥିବାର ତୋହର ।
ଉପହାସ କରି ବାଟ ଓଗାଳୁ ଅମ୍ଭଙ୍କୁ
ଏମନ୍ତେ ହସିବେ ଲୋକ ଦେଖି ତୋ ପୁତ୍ରକୁ
ତୋ ବଂଶରେ ପୁତ୍ର ହେବ ଯେତେ ଜାଣ ବାଳ
ବହୁତ ଶିର ହୋଇବ ଉପହାସ ଭଳି ।
ଏମନ୍ତେ ତାହାକୁ ଶାପ ଦେଇ ଋଷିଗଣ
ଆଗକୁ ଆଗକୁ ପୁଣି ବଢ଼ାନ୍ତି ଚରଣ ।
ମହାଭୟ ପାଇ ସେହି ଦାନବ ନନ୍ଦନୀ
ମୁନିଙ୍କ ପାଦେ ପଡ଼ିଣ କଲାକ ବିନୟୀ ।
ନ ଜାଣିବା ପଣେ ମୁହିଁ କରିଅଛି ଦୋଷ
କ୍ଷମାକର ଅପରାଧ ମନୁ ତେଜ ରୋଷ ।
ମୁହିଁ ତ ଅବଳା ପୁଣି ଅଳପ ବୟସୀ
ମୋଠାରେ କରୁଣା କର ମୁହିଁ ମହାଦୋଷୀ ।
ଏମନ୍ତେ ବହୁତ ରୂପେ କହିଲା ଅସୁରୀ
ବୋଇଲେ ଯେ କୋପ ଶାନ୍ତ କରି ତପସ୍ୱୀ ।
ଆମ୍ଭେ ଯାହା କହିଲୁ ତା ନୋହିବ ଯେ ଆନ
ଅବଶ୍ୟ ତୋ ଗର୍ଭୁ ଜାତ ହୋଇବ ନନ୍ଦନ ।

ଜାତ ହେଲ ମାତ୍ରେ ତାର ହେବ ବହୁ ଶିର
ଦୁଇ ଗୋଟି ପାଦ ଦୁଇ ଗୁଣ ହେବ କର ।
ତାଠାରୁ ଯେ ଜାତ ହେବ ସେ ହେବ ସେପରି
ଏମନ୍ତେ ତୋ ବଂଶ ହେବ ଜାଣ ସୁକୁମାରୀ ।
ଅବଶ୍ୟ ତୁ ଲୋକହସା ହୋଇବୁ ତା ପାଇଁ
ପ୍ରସନ୍ନ କଲୁ ଆମ୍ଭଙ୍କୁ ଯେଣୁ ତୁହି କହି ।
ବଳବନ୍ତ ହୋଇବେ ଯେ ତୋହର ନନ୍ଦନେ
ତିନି ପୁରକୁ ଜିଣିବେ ବଳବନ୍ତ ପଣେ ।
କାମାରୂପୀ ହୋଇବେ ସେ ବୋଲାଇବେ ବୀର
ବଜ୍ରହୁଁ ଅଙ୍ଗ କଠିନ ହୋଇବ ତାଙ୍କର ।
ଜଳ ସ୍ଥଳ ଅନଳରେ ନୋହିବେ ବିନାଶ
ବଡ଼ ପ୍ରତାପୀ ହୋଇବେ ସ୍ୱଭାବ ରାକ୍ଷସ ।
ଗିରିପ୍ରାୟ ମୋଟା ହେବ ଅତି ମହାକାୟ
ତାହାଙ୍କୁ ଦେଖି ସକଳେ କରିବେ ଯେ ଭୟ ।
ଅତି ଦାରୁଣ ପ୍ରକୃତି ହୋଇବ ତାଙ୍କର
ସକଳ ଜୀବ ଜନ୍ତୁଙ୍କୁ କରିବେ ଆହାର ।
ଦେବତାମାନଙ୍କୁ ପାଦତଳେ ଖଟାଇବେ
ବାହୁବଳେ ସେ ଚଉଦ ଭୁବନ ସାଧିବେ ।
ବିନାରଥେ ଶୂନ୍ୟମାର୍ଗେ କରିବେ ସେ ଗତି
ନ କରିବେ ତିନିପୁରେ ସେ କାହାକୁ ଖାତି ।
ଏମନ୍ତ କହି ସେଠାରୁ ଗଲେ ଋଷିଗଣେ
ଶିରାଳଜଙ୍ଘ ଦୁହିତା ଛାଡ଼ି ପଶି ବଣେ ।
ମୃଗ ମାରିବାକୁ ଗଲା ଆହାର ନିମନ୍ତେ
ଦୁହିତା ଗୋଟିଏ ଦଶା ହୋଇଲା ଏମନ୍ତେ ।
କାହୁଁ ସେ ଜାଣଇ ଏହି ସମାଚାରଯାକ
ମୃଗମାରି ଘରକରି ଆସଇ ନିଃଶଙ୍କ ।
ଦୁହିତାକୁ ବାଟେ ଭେଟି ଆନନ୍ଦ ହୋଇଲା
ମୃଗଭାରକୁ ତାହାର ଆଗେ ଥୋଇଦେଲା ।
ବାପଝିଅ ଦୁହେଁ ବସି ସନ୍ତୋଷେ ଭକ୍ଷିଲେ
ସେଠାବରୁ ଶୁଣ ବଣେ ବଣେ ବୁଲିଗଲେ ।
ସଉନନ୍ଦ ନାମେ ଅଛି ଏକଇ ମୂଷଳ
ତାହାକୁ ଘେନି ଯାଉଛି ସେହି ମହାବଳ ।
ଦୁହିତା ଗୋଟି ତାହାର ସଙ୍ଗେ ଅଛି ଏକା
ଅରଣ୍ୟ ମଧ୍ୟେ ଯାଉଛି ଅସୁର ନିଃଶଙ୍କା ।
ବାଟେ ଦେଖିଲା ଆସଇ ଦୁର୍ଗମ ଅସୁର
ବଡ଼ ପ୍ରତାପୀ ଅଟଇ ଦିଶଇ ସୁନ୍ଦର ।

ଏକାକେ ସେ ଦଗବଗେ କରି ଯାଉଅଛି
ବାଟେ ଭେଟିଲା ତାହାକୁ ଘୋରଦୈତ୍ୟ ବସି
ବୋଇଲା କେଣିକି ତୁହି ଯାଉଛୁ ନିର୍ଭୟେ
ଜାଣିଲି ତୋ ପାଞ୍ଜି ପୋଛିଲାଣି ଯମରାୟେ ।
ନ ଜାଣୁ କି ମୋର ନାମ ଦୁର୍ଗମ ଅସୁର
ଏହିକ୍ଷଣି ପଠାଇବି ତୋତେ ଯମପୁର ।
ତିନିପୁର ଜୟ କଲି ମୁହିଁ ଏକେଶ୍ୱରେ
ତୁହି ଅସ୍ତ୍ରଧାରୀ ହୋଇ ଯାଉ ନିର୍ଭୟରେ ।
ଏମନ୍ତ ଶୁଣି ଶିରାଳଜଙ୍ଘ କଲା କୋପ
ଦାନ୍ତେ ଦାନ୍ତ ଘଷି ଛିଡ଼ା ହେଲା କଉଣପ ।
ତରାଟି ଚାହିଁଲା ତାକୁ ଆଖି କରି ରଙ୍ଗ
ସଉନନ୍ଦ ମୂଷଳକୁ ବୁଲାଇଣ ଆଗ ।
ପିଟିଲା ଦୁର୍ଗମ ଦୈତ୍ୟ ଉପରେ ନିଠାଇ
ମୂଷଳ ନ ବାଜୁ ତାହା ନେଲା ସେ ଛଡ଼ାଇ ।
ଓଲଟି ପିଟିଲା ନେଇ ଦାନବରି ଶିରେ
ପଡ଼ିଲା ଶିରାଳଜଙ୍ଘ ଭୂମିର ଉପରେ ।
ଗରଜନ କରି ତହିଁ ମଲା ବୀର ବୀରମଣି
ଦୁହିତା ଗୋଟି ତାହାର ଲୁଚିଥିଲା ପୁଣି ।
ପିତାର ମରିବା ଦେଖି ଅଇଲା ସେ ଧାଇଁ
ବହୁତ ଶୋକ କଲା ତା ଗୁଣମାନ କହି ।
ସୁନ୍ଦରୀର ରୂପ ଦେଖି ଦୁର୍ଗମ ଅସୁର
ବୋଇଲା ଏ ବୀରଗୋଟି ହୁଏ କି ତୋହର ।
କାହାର ଦୁହିତା ତୁହି କାହାର ରମଣୀ
ବିଭା ନୋହିଥିବା ପ୍ରାୟ ଦିଶୁଅଛୁ ପୁଣି ।
ଏମନ୍ତ ଶୁଣି ସୁନ୍ଦରୀ ବୋଇଲା ହେ ବୀର
ଏହି ଦାନବ ଅଟଇ ମୋହର ପିଅର ।
ଶିରାଳଜଙ୍ଘ ଏହାର ନାମ ଯେ ଅଟଇ
ମଦନକଳା ବେଶ୍ୟାର ଗର୍ଭୁ ଜାତ ମୁହିଁ
ମୋର ନାମ ରତ୍ନଗର୍ଭା ଜାଣ ବୀରମଣି
ମୋତେ ଛାଡ଼ି ସ୍ୱର୍ଗେ ଗଲା ମୋହର ଜନନୀ ।
ଜନମକାଳୁ ଏ ମୋତେ ପାଳିଛି ଯତନେ
ଏହି ପିତା ମୋତେ ଘେନି ବୁଲୁଥାଇ ବନେ ।
ଯୋଗ୍ୟବର ପାଇଲେ ଯେ ବିଭାଦେବ ମୋତେ
ଏବେତ ଏଠାରେ ଆସି ମଲା ତୁମ୍ଭ ହସ୍ତେ ।
ଏମନ୍ତ ଶୁଣି ଦୁର୍ଗମ ଅସୁର ବୋଇଲା
ଜାଣିଲି ବିଧାତା ତୋତେ ମୋତେ ଭେଟାଇଲା

ମୁହିଁ ବନ୍ଧ ହୋଇନାହିଁ ଭୁବ୍ବ ଅଭିଆଡ଼
ଏବେ ତୁ ସୁନ୍ଦରୀ ମୋତେ ଭଜ ଶୋକଗୁଡ଼ ।
ଏମନ୍ତ ଶୁଣି ସେ ବାଳୀ ବଚନ ସୁଚତୁରେ
ମାୟା କରନ୍ତେ ତକ୍ଷଣେ ଆସିଲାକ ରଥେ ।
ତହିଁରେ ବସାଇ ତାକୁ ଘେନ ଗଲା ସେହି
ଅସୁର ବନ୍ଧବନ୍ଧୀରେ ବେଗେ ବନ୍ଧ ହୋଇ ।
ଏହି ରତ୍ନଗର୍ଭ ଗର୍ଭୁ ଜନ୍ମିଲ କୁମର
ଜନମିବା ମାତ୍ରେ ହେଲା ତାର ବହୁଶିର ।
ତେଣୁ ଯେ ତାହାର ନାମ ହେଲା ବହୁଶିରା
ଦିନକୁ ଦିନ ବଢ଼ିଲା ଚନ୍ଦ୍ରକଳା ପରା ।
ମହାବଳବନ୍ତ ହେଲା ଋଷିଙ୍କର ବରେ
ତିନପୁର ଜିଣିଲା ସେ ନିଜ ପ୍ରତାପରେ । 100
ସମସ୍ତେ ତାହାର ପାଦେ ପଶିଲେ ଶରଣ
ଭୟରେ କେହି ନ କଲେ ତାର ସଙ୍ଗେ ରଣ ।
ସ୍ୱର୍ଗ ମର୍ତ୍ତ୍ୟ ତିନପୁର ବୁଲିଲା ସେ ବୀର
ସମସ୍ତେ ଶରଣ ଗଲେ ତାହାର ପଯୁର ।
ମନେ ବିଚାରିଲା ମୁହିଁ ରହିବଇଁ କାହିଁ
ତିନପୁରେ ଶତ୍ରୁ ହୋଇ ଜଣେ କେହି ନାହିଁ ।
କେମନ୍ତେ କାହାକୁ ଦେବ ମୁଁ ବାହାରକରି
ଉପ୍ରୋଧ ତାହାଙ୍କଠାରେ ଭୁଟିବ କପରି । ୧୦୪
ସମୁଦ୍ରମଧ୍ୟେ ବାନ୍ଧିବି ମୁହିଁ ଏକଦ୍ୱୀପ
ତହିଁରେ ରହି ହୋଇବି ନିଶ୍ଚେ ମହାନୃପ ।
ଏମନ୍ତ ଭାଳି ଅସୁର ବହିଲା ପଥର
ପକାଇ ଦିଅଇ ନେଇ ସାଗର ଗର୍ଭର ।
ଏମନ୍ତ ସହସ୍ରବର୍ଷେ ପ୍ରତାପୀ ଦଇତ
ସମୁଦ୍ର ପୋତିଣ ଦେଲା ପକାଇପର୍ବତ ।
ତାର ନାମ ବହୁଶିରା ଦ୍ୱୀପ ହେଲା ଜାଣ
ଏଥୁଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ ।
କଲ୍ପା ଅସୁର ଦୁହିତା ନାମ ଚନ୍ଦ୍ରକଳା
ବହୁଶିରାକୁ ବରଣମାଳା ଦେଲା ବାଳା ।
ତାହାକୁ ବନ୍ଧ ହୋଇ ସେ ରହିଲା ତା ଘରେ
ପତିପତ୍ନୀ ଦୁହେଁ ତହିଁ ରହିଲେ ସୁଖରେ ୧୦୮
ଦୁହିଁଙ୍କର ପ୍ରୀତି କ୍ଷୀର ନୀରଠାରୁ ବଳି
କ୍ଷଣେ ତା ପଶୁ ଅନ୍ତର ନୁହେଁ ମହାବଳୀ ।
ରାଜାହେବା କଥାଯାକ ସବୁ ପାସୋରିଲା
ଘର କରିବା ନିମନ୍ତେ ସିନ୍ଧୁ ପୋତିଥିଲା । 112

ସବୁ ପାସୋରି ତା ସଙ୍ଗେ ବଢ଼ାଇଲା ପ୍ରୀତି
ଏମନ୍ତ କେତେକ ବର୍ଷ ଗଲା ଏହିମତି ।
ଯାହାର ଆୟୁଷ ଯେତେଦିନେ ଥାଏ ପୂରି
ତତକ୍ଷଣେ ଯମ ତାକୁ ନିଏ ବାନ୍ଧିକରି । 114
କେହି ରଖି ନ ପାରିବେ ତାକୁ ଆଉକ୍ଷଣେ
ବିଧାତା ଧାଉଡ଼ି ଯେଉଣେ ନିଏ ତାକୁ ତେଣେ ।
ଦିନେ ସେ ପାତାଳୁ ଯାଇ ମରତେ ମିଳିଲା
ବିନ୍ଧ୍ୟ ପର୍ବତେ ଯାଇଁ ପ୍ରବେଶ ହୋଇଲା ।
ହଇହୟ ବଂଶୀ ଏକ ନରପତି ତହିଁ
ମୃଗୟା ନିମନ୍ତେ ଗିରି ମଧ୍ୟେ ଥିଲା ରହି ।
ତାର ନାମ ମହାସେନା ଅଟେ ମହାବୀର
ଭେଟିଲା ତାହାକୁ ତହିଁ ପ୍ରତାପୀ ଅସୁର । 118
ଆମିଷ ଗନ୍ଧ ପାଇଣ ହୋଇ ଉନମତ୍ତ
ଧାଇଁ ଆସନ୍ତେ ପାଖକୁ ଦେଖି ନରନାଥ ।
ଭୟେ ପଳାଇଲା ତାକୁ ବୁଦ୍ଧି ନ ଦିଶିଲା
ମନମଧ୍ୟେ ମହାସେନ ଏମନ୍ତ ଭାବିଲା ।
ଏମନ୍ତ ଅଦ୍ଭୁତ ରୂପ ଦେଖିନାହିଁ କାହିଁ
ଭୂତ ପ୍ରେତ ପିଶାଚ କି ନିଶାଚର ଏହି ।
କି କରିବ କେଉଣେ ଯିବି ଆସୁଅଛି ଧାଇଁ
ଧଇଲେ ନିଶ୍ଚୟ ମୋତେ ଯିବ ଏହି ଖାଇ । 122
ଏମନ୍ତ ଭାଳି ନୃପତି ପଳାଇଲେ ଡରେ
କେଶ ବାସ ଅସମ୍ଭାଳ ହୋଇ ତରତରେ ।
ପଛକୁ ଗୁହିଁ ଦିଅଇ ଆସଇ ଅସୁର
ଅଛି ତହିଁ କଉଶିକି ଦେବୀର ମନ୍ଦିର ।
ଇନ୍ଦ୍ର ସେ ଦେବୀଙ୍କି ପୂର୍ବେ ଥାପିଥିଲେ ତହିଁ
ପ୍ରତିଦିନ ପୂଜନ୍ତି ସେ ଧୂପ ଦୀପ ଦେଇ ।
ଭୟେ ସେ ନୃପତି ଦେବୀ ମନ୍ଦିରେ ପଶିଲା
ରଖ ମା ବୋଲି ଚରଣେ ଶରଣ ମାଗିଲା ।
ଦେବୀଙ୍କ ଚରଣ ଦୁଇ ଧରି ନରପତି
ପଡ଼ିଅଛି ଜ୍ଞାନ ନାହିଁ ପାଇ ମହାଭ୍ରାନ୍ତି ।
ତିନ୍ତ ଯାଇଛି ସର୍ବାଙ୍ଗ ଯାକ ତାର ଝାଳେ
ମନ ଚଇତନ ଅଛି ଦେବୀ ପାଦତଳେ ।
ଏମନ୍ତ ବେଳେ ମିଳିଲା ବହୁଶିରା ତହିଁ
ମନ୍ଦିର ଭାଙ୍ଗି ଦାନବ ପଶନ୍ତେ ଝସାଇ ।
ଶରଣରକ୍ଷଣୀ ସେହି ଜଗତ ଜନନୀ
ନୃପତି ନିମନ୍ତେ ହସ୍ତେ ଖଡ଼ଗକୁ ଘେନି । ୧୨୬

ଅସୁର ପଛରେ ଆସି ମିଳିଲେ ତୁରିତେ
ଝମକାଇ ପ୍ରହାରିଲେ ଦେବୀ କୋପଚିତ୍ତେ ।
ଏକ ଘାତକେ ଅସୁର ଶିରଯାକ ଛିଡ଼ି
ପଡ଼ିଲା ଯେସନେ ଗିରିଶୃଙ୍ଗ ପଡ଼େ ଝଡ଼ି ।
ଦାନବଙ୍କୁ ନିପାତିଣ ପଶିଲେ ମନ୍ଦିରେ
ଅଜ୍ଞାନ ହୋଇ ପଡ଼ିଛି ନୃପତି ତହିଁରେ ।
ଆଉଁସି ଦେଲ ତାହାକୁ ପାଇଲା ସେ ଜ୍ଞାନ
ଉଠି ଗୃହିଁଲା ପଛକୁ ଭୟରେ ରାଜନ । 134
ଦେଖିଲା ଅସୁର ମରି ପଡ଼ିଅଛି ତହିଁ
କନ୍ଧରୁ ରୁଧିର ତାର ଯାଉଅଛି ବହି । 135
ପର୍ବତ ପରେ ପର୍ବତ ଥିଲା ପ୍ରାୟ ଦିଶେ
ହରଷେ ନୃପତି ତାର ନିକଟକୁ ଆସେ ।
ଦେଖି ସେ ଅଦ୍ଭୁତ ରୂପ ହୋଇ ଆଚମ୍ବିତ
ଦେବୀଙ୍କି ବହୁତ ସ୍ତୁତି କରି ନୃପନାଥ ।
ଆପଣା ପୁରକୁ ଗଲା ଆନନ୍ଦେ ରାଜନ
ଦେବୀ ପଦେ ଚନ୍ଦ୍ରଧର ମାଗଇ ଶରଣ ।
୧୩୮

—o—



## ଲକ୍ଷଶିର ଜନ୍ମ ଓ ବଲଙ୍କା ଦ୍ୱୀପନିର୍ମାଣ

ଏଥୁଅନନ୍ତରେ ଶୁଣ ହେମବନ୍ତ ଜେମା
ଗର୍ଭବତୀ ହୋଇଥିଲା ଅସୁରର ବାମା ।
କଣ୍ଠ ଦେଇ ଯାଇଥିଲା ଦାନବ ତାହାକୁ
ଫେରି ଆସିବି ମୁଁ କାଲି ତୋହର ପାଶକୁ ।
ନ ଆସିଲା ଯହୁଁ କଣ୍ଠ ଗଡ଼ିଗଲା ତାର
ଚନ୍ଦ୍ରକଳା କହେ ତାର ପିତାର ଆଗର ।
କଳପା ଅସୁର ଗଲା ଜୁଆଇଁକି ଖୋଜି
ଏକଇ ଦୁହିତା ସ୍ନେହେ ଥିବାରୁ ସେ ମଜ୍ଜି ।
ଆୟୁଧ ଧରି ପାତାଳ ଭବରେ ସେ ଗଲା
ନଦୀ ବନ ଗିରି ଗୁହା ବହୁତ ଖୋଜିଲା ।
କାହିଁ ନ ପାଇ ସେଠାରୁ ଗଲା ସେ ଅସୁର
ବିନ୍ଧ୍ୟବନ ଖୋଜି ଉଠେ ପର୍ବତ ଶିଖର ।
ଗୃଧ୍ରପକ୍ଷୀ ଉଡ଼ୁଛନ୍ତି ଦେଖେ ଖଣ୍ଡେଦୂରେ
ଉଦବେଗେ ଯାଉଛନ୍ତି ଶୃଗାଳ କୁକୁରେ ।
ଏମନ୍ତ ଦେଖି ଅସୁର ଗଲା ସେ ଠାବକୁ
ଦେଖିଲା ତହିଁ ପଡ଼ିଛି ଜୁଆଇଁ ଶବକୁ । ୮
ବହୁତ ରୋଦନ କରି ଅଇଲା ସେ ଫେରି
ଦୁହିତା ଆଗେ କହିଲା ସକଳ ବିସ୍ତାରି ।
ଶୁଣି ଚନ୍ଦ୍ରକଳା ଶୋକେ ହେଲା ହତଜ୍ଞାନ
ପ୍ରାଣ ହରାଇବା ପାଇଁ ବଳାଇଲା ମନ । 10
ପିତା ତାହାକୁ କହିଲା ବହୁତ ବୁଝାଇ
ଗର୍ଭକୁ ନଷ୍ଟ କେମନ୍ତେ କରିବୁ ଲୋ ତୁହି ।
ଆତ୍ମଘାତିନୀ ହୋଇ ତୁ ପଡ଼ିବୁ ନରକେ
ଆମ୍ଭେ ମରିବୁ କେବଳ ସିନା ତୋର ଶୋକେ
ମୋର ବୋଲ ମାନି ତୁ ଲୋ ରହ ଦିନାକେତେ
ପିତା ବଚନେ ସେ ବାଳୀ ରହିଲା ନିଶ୍ଚିନ୍ତେ ।
ଦଶମାସ ଅନ୍ତେ ଜାତ କଲା ଏକପୁତ୍ର
ତଳେ ପଡ଼ିବା ମାତ୍ରକେ ହୋଇଲା ବିଚିତ୍ର । 14
ଅକସ୍ମାତେ ଲକ୍ଷଗୋଟା ଶିର ହେଲା ତାର
ଦୁଇଲକ୍ଷ ଗୋଟା ହେଲା ପୁଣି ତାର କର ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଅସୁର ଅସୁଷ
ବୋଲିଲେ ବାପ ପରାପୁ ସ୍ୱରୂପ ଏହାର ।
ନାଡ଼ି ଛେଦନ କରି ସେ ପୁତ୍ରକୁ ପାଳିଲେ
ଲକ୍ଷଶିର ବୋଲି ନାମ ତାର କର୍ଣ୍ଣେ ଦେଲେ
ଏକ ମୁଖରେ ବାଳୁତ କରେ କ୍ଷୀରପାନ
ଦିନକୁ ଦିନ ବଢ଼ଇ ଯେସନେ ଶୁକ୍ଳ ଜହ୍ନ । 13
ତେସନ ବଢ଼ିଲା ସେହି ଚନ୍ଦ୍ରକଳା ପୁଅ
ବାଳଖିଲ୍ୟା ବଟେ ସେହି ହେଲା ମହାକାୟ ।
ବେଳୁ ବେଳ ବଳବନ୍ତ ହୋଇଲା ଦଇତ
ଗୋରୁ ମଇଁଷି ଛାଗଳ ଖାଇଲା ବହୁତ । ୨୦

କାହାକୁ ନ ଡରିଲା ସେ ବଳବନ୍ତ ପଣେ
ମାତାର ମୁଖକୁ ଚାହିଁ ବୋଇଲା ସେ ବଚନେ ।
ଆମ୍ଭର କି ଘରଦ୍ୱାର ନାହିଁ ଗୋ ଜନନୀ
ପୁତ୍ରର ବଚନ ଶୁଣି ଅସୁର ନନ୍ଦିନୀ ।
ବୋଲଇ ତାତ ତୋହର ଥିଲା ବଳବନ୍ତ
ହିନ୍ଦୁ ପୋତିଲା ମୁଣ୍ଡରେ ବିନ୍ଧ୍ୟ ପର୍ବତ ।
ଘର କରି ଆସିଥିବା ଦେଲେ ତାକୁ ବାପ
ଅକାଳ ମୃତ୍ୟୁ ଘଟିଲା ନ ଦେଖିଲି ରୂପ ।
କି କହିବି ବାବୁରେ ମୋ କପାଳର କଥା
ବିନ୍ଧ୍ୟ ପର୍ବତରେ ମଲା ତୋହର ସେ ପିତା ।
କେମନ୍ତେ ମଲା ତା ଆମ୍ଭେ ନ ପାରିଲୁ ଜାଣି
ପିତା ଘରେ ଥିଲି ମୁହିଁ ଅନାଥ ତରୁଣୀ ।
ତୋତେ ଆଶା କରି ବାବୁ ରଖିଲି ଏ ପ୍ରାଣ
ତୁହି ସିନା କରିବୁ ଏ ପିଣ୍ଡକୁ କାରଣ ।୨୮॥
ଏମନ୍ତ ଶୁଣି ମାତାର ମୁଖୁ ଲକ୍ଷଶିରା
କୋପେ ବୋଇଲା ଜନନୀ ନୁହ ତୁ ଅଧିରା ।
ପିତୃ ବଇରୀ ମୋହର ବିନ୍ଧ୍ୟ ପରବତ
ତାହାକୁ ଆଗ ଚୂରିବି ମାରି ବିଧାଘାତ ।
ଏମନ୍ତ କହି ସେଠାରୁ ଚଳି ସେ ଅସୁର
ପାତାଳ ବିବର ଦେଇ ହୋଇଲା ବାହାର ।
ପାଦଭରେ ଦଳ ଦଳ କରୁଅଛି ମହୀ
ପ୍ରତାପାନଳେ କି ପୃଥ୍ୱୀ ପକାଇବ ଦହି ।
ହସ୍ତରେ ଆୟୁଧ ନାହିଁ ଯାଏ ଶୂନ୍ୟ ହସ୍ତେ
ମିଳିଲା ସେ ବୀରମଣି ବିନ୍ଧ୍ୟ ପରବତେ ।
ବିନ୍ଧ୍ୟକୁ ବୋଇଲା ଆରେ ଏଡ଼େ ତୋରଦର୍ପ
କେମନ୍ତେ ମଲା ତୋଶିରେ କହ ମୋରବାପ ।
ଏକ୍ଷଣି ତୋ ଗରବ କରିଦେବି ଚୂନା
ବିନ୍ଧ୍ୟଗିରି ଶୁଣି ମନେ କରଇ ଭାବନା ।
କି କରିବି ଏ ଦାନବ ମୂରୁଖ ଅଟଇ
ଏକ୍ଷଣି ଦେବ ମୋତେ ସମୁଦ୍ରେ ପକାଇ ।
କି ବୁଦ୍ଧି କରିବି ଏତେ ଭାଳି ଗିରିବର
କରଦୁଇ ଯୋଡ଼ିବୋଲେ ତୁ ହୋ ମହାବୀର ।
ଅକାରଣେ ମୋତେ କୋପ କରୁଛୁ କିମ୍ପାଇଁ
ତୋହର ବାପକୁ ମାରି ପାରଇ କି ମୁହିଁ ।
ମହାବଳ ଦାନବ ସେ ଦେବଙ୍କ ବଇରୀ
କେବଣେ ଦେବତା ଆସି ସ୍ତ୍ରୀରୂପ ଧରି ୨୮
ଖଡ଼ଗରେ କାଟି ପକାଇଲା ତାର ଶିର
ଅକାରଣେ କୋପ ମୋତେ କରୁ ବୀରବର । 37
ବିନ୍ଧ୍ୟଗିରିର ବିନୟ ବାଣୀ ଶୁଣି ଦୈତ୍ୟ
ବୋଇଲା ତୁ ଖଟୁଥିବୁ ମୋର ପାଦେ ନିତ୍ୟ ।
ଯେତେକ ପର୍ବତ ଅଛି ପୃଥିବୀ ଭିତରେ
ସମସ୍ତେ ଯେମନ ଖଟିବୁ ମୋହର ପୟରେ ।
ଉତରେ ବିନ୍ଧ୍ୟଗିରି କହେ ଖଟୁଥିବୁ ଯାଇଁ
ମଣି ରତ୍ନ ମୁକ୍ତା ଆଦି ପାଣିଦ୍ରବ୍ୟ ଦେଇ ।
ଏମନ୍ତ କହି ଦାନବ ବୋଇଲା ହେ ଗିରି
ଦେବତାଏ ସିନା ମୋର ପିତାର ବଇରୀ ।
ଆଜ ସ୍ୱର୍ଗପୁରି ନେଇ ରଖିବି ପାତାଳେ
ଏମନ୍ତ କହି ଦାନବ ଶୂନ୍ୟପୁରେ ଚଳେ । 44
ଦୂତ ଜଣାଇଲା ଯାଇଁ ଇନ୍ଦ୍ରର ଛାମୁରେ
କହୁଁ ଅସୁର ଆସଇ ଆମ୍ଭ ସ୍ୱର୍ଗପୁରେ ।
ପର୍ବତ ପରାୟେ ତାର କାୟେଗୋଟି ଦିଶେ
ହସ୍ତରେ ଆୟୁଧ ନାହିଁ ଏକା କେହ୍ନେ ଆସେ
ପ୍ରଳୟ ଅନଳ ଜିଣି ତେଜ ବିରାଜଇ
ବିଚାରିଣ କାର୍ଯ୍ୟ କର ଆହେ ସୁରସାଇଁ । ୪୮
ଦୂତ ମୁଖରୁ ଏମନ୍ତ ଶୁଣି ସୁନାସୀର
ସୂର୍ଯ୍ୟଙ୍କୁ ଚାହିଁ ବୋଇଲେ ଅସୁରକୁ ଘେର ।
ସହସ୍ର କିରଣ ଦେଇ ପୋଡ଼ିପକା ବାଟେ
ସଇନ୍ଦ୍ର ବଚନେ ତପନ ଦେବତା ମୁରାଟେ ।
ସହସ୍ର କିରଣଧାରୀ ହୋଇଲେ ତକ୍ଷଣେ
ପାଞ୍ଚିଲେ ଦୈତ୍ୟକୁ ପୋଡ଼ି ଦେବଇଁ କିରଣେ ।
ଏମନ୍ତ ଭାଳି କିରଣଯାକ ଦେଲେ ଢାଳି
କିଛି ନୋହିଲା ଦାନବ ତାପ ତହୁଁ ବଳି ।
ସୂର୍ଯ୍ୟ କିରଣେ ତାହାର ନ ହେବାରୁ କିଛି
ମେଘକୁ ଚାଇ ବୋଲଇ କଶ୍ୟପର ବଚ୍ଛି ।
ଚାରିମେଘ ଏକ ହୋଇ ଢାଳିଦିଅ ଜଳ
ସ୍ୱର୍ଗେ ଆସି ନ ପାରିବ ଯେମନ୍ତେ ଚଣ୍ଡାଳ ।
ଇନ୍ଦ୍ର ଆଜ୍ଞାରେ ସେ ଚାରି ମେଘ ହେଲେ ଏକ
ଦ୍ରୋଣ ପୁଷ୍କର ଆବର୍ତ୍ତ ମେଘ ସମ୍ବର୍ତ୍ତକ ।
ଘୋର ଅନ୍ଧକାର କରି ଘୋଟିଲେ ଗଗନ
ବିଜୁଳି ସେ ଘଡ଼ଘଡ଼ି ମାରି ଘନ ଘନ ।
ମୁଷଳ ଧାରା ପ୍ରମାଣେ ବରଷିଲେ ବାରି
ପଡ଼ଇ ସେ ଲକ୍ଷଶିରା ଅସୁର ଉପରି । ୫୫.

ନ ମାନି ଅସୁରବୀର ହୁଏ ଆଗଭର
ଯେସନେ ପର୍ବତେ ଗଡ଼ଗଡ଼ ପଡ଼େ ମାର ।
ଏମନ୍ତ ଦେଖି ଅଗ୍ନିକି ବୋଇଲେ ବାସବ
ପୋଡ଼ପକା ତୁ ଶୂନ୍ୟରେ ମରୁ ସେ ଦାନବ ।
ଏମନ୍ତ ଶୁଣି ଅନଳ ଦେବତା ତକ୍ଷଣେ
ପ୍ରଚଣ୍ଡ ମୂରତି ଧରି ଉଠିଲେ ଗଗନେ ।
ଲହ ଲହ ଜିଭ କରି ବୁଲାଇଲେ କୋପେ
ଲୋହିତ ବରନ ଶିଖା ଗଗନକୁ ବ୍ୟାପେ ।
ଅସୁର ତା ମଧ୍ୟେ ପଶି ଯାଉଅଛି ଉଠି
ଅନଳ ଶିଖା ତା ଦେହଯାକ ଅଛି ଘୋଟି ।
ଅଗ୍ନିରେ ଯହୁଁ ସେ ପୋଡ଼ି ନ ମଲା ଅସୁର
ଯମଙ୍କୁ ଗୁହାରି ବୋଲଇ ଦେବ ପୁରନ୍ଦର ।
କାଳ ବିକାଳ ଆବର ମୃତ୍ୟୁକୁ ଯେ ପେଶ
ଅସୁର ପ୍ରାଣ ଘେନନ୍ତୁ ପାତି କାଳପାଶ ।
ଯମଦେବତା ତକ୍ଷଣେ ସେ ତିନଙ୍କୁ ରାଇ
ବୋଇଲା ଅସୁର ପ୍ରାଣ ବାନ୍ଧିଆଣ ଯାଇଁ ।
କାଳ ବିକାଳ ଯେ ମୃତ୍ୟୁ ଦେବତା ଏ ତିନି
ଧାଇଁଣ ଗଲେ ହସ୍ତରେ କାଳପାଶ ଘେନି ।
ବସାଇଲେ ଯତ୍ନକରି ଆକାଶ ମାର୍ଗରେ
ପାଶ ଛିଣ୍ଡି ଖଣ୍ଡ ଖଣ୍ଡ ହେଲା ତାର ପରେ ।
ଦେଖି ପୁରନ୍ଦର ବଜ୍ର ପିଟିଲା ତା ମୁଣ୍ଡେ
ଗିରିବର ଚୂନାହୁଏ ଯେଉଁ ବଜ୍ର ଦଣ୍ଡେ ।
ଦାନବ ରାଜା ତାହାକୁ ଫୁଲ ପ୍ରାୟେ ମଣେ
ଭାଳଇ କୁସୁମ ବୃଷ୍ଟି କଲେ ଦେବଗଣେ ।
ଏମନ୍ତ ଭାଳି ଦାନବ ଉଠଇ ଗଗନେ
ଦେଖି ଭୟେ ପଳାଇଲେ ସହସ୍ର ଲୋଚନେ ।
କଇଳାସ ପରବତେ ଥିଲୁ ଆମ୍ଭେ ବସି
ଆମ୍ଭଙ୍କୁ କହିଲା ବେଗେ ଦେବରାଜ ଆସି ।
ଆମ୍ଭେ ମହାକୋପ କରି ଗଲୁ ଅତି ବେଗେ
ତ୍ରିଶୂଳ ମାଇଲୁ ଦୈତ୍ୟ ଅଙ୍ଗେ ମହାରାଗେ ।
ସୂଚିମୁନେ ଠେଲଇ କି ମେରୁ ଯେ ମନ୍ଦର
ତ୍ରିଶୂଳ ବିଅର୍ଥ ଦେଖି ଆମ୍ଭେ ପାଇ ଡର ।
ପଳାଇ ଅଇଲୁ ଲାଜେ ନ ରହିଲୁ ତହିଁ
ଦେଖି ସୁନାସୀର ପୁଣ ତହୁଁ ଗଲା ଧାଇଁ ।
କ୍ଷୀର ସମୁଦ୍ରେ ବିଷ୍ଣୁଙ୍କ ସମ୍ମୁଖରେ କହିଲା
ତୋର ସ୍ୱର୍ଗପୁର ରଖ ଅସୁର ନାଶିଲା ।

ଏମନ୍ତ ଶୁଣି ଶ୍ରୀହରି ଅଇଲେକ ଧାଇଁ
କୌମୋଦକୀ ନାମେ ଗଦା ହସ୍ତରେ ଅଛଇ ।
ଶୂନ୍ୟ ମାର୍ଗରେ ଭେଟିଲେ ଯାଉଛି ଅସୁର
ଗଦା ବୁଲାଇଲେ କୋପେ ଚକ୍ର ପରକାର ।
ବିଶ୍ୱମୂର୍ତ୍ତି ଧରି ହରି ପ୍ରହାରିଲେ ଶିରେ
ଦାନବ ଭାଳଇ ଠେଲା ଅଛି ସ୍ୱର୍ଗପୁରେ ।
ଗେଲ ହୋଇ ଖସାଇ କେ ଦିଅଇ ତାହାକୁ
ଦେଖିବା ତା ଯାଇଁ ଆଜ ସ୍ୱର୍ଗ ଭୁବନକୁ ।
ମଦମାଂସ ଖାଇ ଭୋଳ ହୋଇଛି ଅସୁର
ଦେଖି କ୍ରୋଧେ ଚକ୍ର ଧରି ଦେବ ଚକ୍ରଧର ।
ପ୍ରହାରନ୍ତେ ଦାଢ଼ ବଙ୍କ ହୋଇଯିବା ଦେଖି
ଡରି ପଳାଇଲେ ଦୈତ୍ୟବରକୁ ଉପେକ୍ଷି ।
ବାସବ ତା ଦେଖି ଭୟେ ଗଲା ବ୍ରହ୍ମପୁରେ
କହିଲା ସମସ୍ତ କଥା ବ୍ରହ୍ମାଙ୍କ ସମ୍ମୁଖରେ ।
ବ୍ରହ୍ମା ବୋଇଲେ ସେ ବହୁଶିରର ତନୟ
ତାରନାମ ଲକ୍ଷଶିର ଅଟଇ ନିର୍ଭୟ ।
ମହାପ୍ରତାପୀ ଦାନବ ବାଲଖିଲ୍ୟା ବରେ
ଏକେ ଶରଣ ପଶିବା ଗୁଲ ତା ପଯ୍ୟରେ ।
ଏମନ୍ତ କହି ଦେବଙ୍କୁ ସଙ୍ଗତରେ ଘେନି
ଅସୁର ଆଗେ ମିଳିଲେ ଆସି ପଦ୍ମଯୋନି ।
ବୋଇଲେ ଆମ୍ଭେ ତୋହର ଅଟୁ ପରଘର
ଆମ୍ଭଙ୍କୁ କମ୍ପାଇ ଏଡ଼େ କୋପ ହୋ ତୁମ୍ଭର ।
ଆମ୍ଭେ ତ କିଛିହିଁ ଦୋଷ କରିନାହୁଁ ବାବୁ
ତୁହିସିନା ଆମ୍ଭମାନଙ୍କର ରାଜାହେବୁ ।
ବ୍ରହ୍ମାବଚନେ ଦାନବ କୋପ କରି ଶାନ୍ତ
ବୋଇଲା ପିତା ବଇରୀ କଏ ପ୍ରଜାପତ୍ତି ।
କହିଲେ ତାହାର ମୁହିଁ ଘେନିବି ଜୀବନ
ଏମନ୍ତ ଶୁଣି ବୋଇଲେ କମଳ ଆସନ ।
ଆମ୍ଭେମାନେ ତୋ ପିତାକୁ ମାରିନାହୁଁ କେହି
ଖଡ଼ଗେ ଛେଦିଲେ ଯୋଗମାୟା ଆସି ତହିଁ ।
ଅସୁର ରୁଧିରେ ଲୋଭ ଥାଇ ବାବୁ ତାର
କେହି ନ ଜାଣଇ ତାକୁ ନାହିଁ ତାର ଘର ।
ରୂପ ରେଖ ନାହିଁ ତାର କାହୁଁ ସେ ଆସଇ
କେତେବେଳେ କେଉଁରୂପ ପୁଣି ସେ ଧରଇ ।
ରୁଧିର ପିଅଇ ସୁରା ପିଅଇ ବହୁତ
ସେହି ତୋ ପିତା ବଇରୀ ଜାଣ ହୋ ଦଇତ ।

ଏମନ୍ତ ଶୁଣି ଅସୁର ଅଇଲ୍ଲକ ଫେର
ମାତାକୁ କହିଲ କଏ ମୋ ପିତା ବଇରୀ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଖୋଜ ନ ପାଇଲି
ଚଉଦଭୁବନଯାକ ସକଳ ବୁଲିଲି ।
ବ୍ରହ୍ମା ବୋଲଇ ଗୋ ମୋତେ ବହୁତ ତଆଗ
ଯୋଗମାୟା ନାମେ ଦେବୀ ତୋ ପିତା ବଇରୀ
ତାର ପୁଣି ଘରଦ୍ୱାର ରୂପରେଖ ନାହିଁ
ଅସୁର ରୁଧିର ଖାଏ ନାନାରୂପ ହୋଇ । ୯୬
ଯେବେ ମୋହର ଛାମୁରେ ପଡ଼ିବ ସେ ଆସି
ତତକ୍ଷଣେ ତାକୁ ଦେବ ଯମପୁରେ ପେଶି ।
ସତ୍ୟ ସତ୍ୟ କହୁଅଛୁ ତୋ ଆଗେ ଜନନୀ
ନିଶ୍ଚେ ମାରିବ ତାହାକୁ ନ ଥୋଇ ମେଦିନୀ ।
ଚଉଦ ବ୍ରହ୍ମାଣ୍ଡେ ତାକୁ ନ ପାରିବେ ରଖି
ଦିଗପାଳମାନେ ତୁମ୍ଭେ ହୋଇଥାଅ ସାକ୍ଷୀ ।
ପୁତ୍ର ହୋଇ ପିତା ଶତ୍ରୁ ନ ପାରିଲେ ମାରି
ସେହି ପୁତ୍ର ଜୀଇ ଥାଉଁ ଥାଉଁ ଜାଣ ମରି । ୧୦୦
ପୁତ୍ର ମଧ୍ୟରେ ସେ ପୁତ୍ର ହୁଅଇ କି ଲେଖା
ଏଣୁ କହୁଛୁ ପଡ଼ିବ ଯେବେ ମୋର ଦେଖା ।
ବର୍ତ୍ତିକି ସେ ଯିବ ପୁଣି ମୋ ଆଗରୁ କେବେ
ସିଂହ ମୁଖରୁ ଉବୁରି ଯିବ ଅବା ଜୀବେ ।
ମାର୍ଜାର ମୁଖରୁ ଅବା ଯାଇ ପାରେ ମୂଷା
ଶ୍ୱାନ ମୁଖରୁ ଉବୁରି ପାରେ ଅବା ଶଶା ।
ନକୁଳ ମୁଖରୁ ଯାଇ ପାରେ ଅବା ଅହି
ବ୍ୟାଘ୍ର ମୁଖରୁ ଛାଗଳ ପାରେ ଅବା ରହି । ୧୦୪
ମୋର ମୁଖୁଁ ପିତାଶତ୍ରୁ ନ ଯିବ ଉବୁରି
ହାଡ଼ମାଂସ କାଟିବି ମୁଁ ଟିକି ଟିକି କରି ।
ଏମନ୍ତ ପ୍ରତିଜ୍ଞା କଲା ବହୁତ ଅସୁର
ମାତାକୁ ବୋଇଲ କାହିଁ କରିବା ଗୋ ଘର ।
ଚନ୍ଦ୍ରକଳା ବୋଲଇ ଯେ ପୁତ୍ର ମୁଖ ଚାହିଁ
ଆରେ ବାବୁ ତୋ ପିଅର ବାନ୍ଧିଅଛୁ ଭୂଇଁ ।
ସମୁଦ୍ର ଭିତରେ ସେହି ସ୍ଥାନ ଗୋଟି ଦେଖ
ତହିଁ ଘରଦ୍ୱାର କରି ଲଭ ବାବୁ ସୁଖ । ୧୦୮
ଏମନ୍ତେ ଜନନୀ ମୁଖୁଁ ଶୁଣି ଲକ୍ଷଶିରା
ଆନନ୍ଦ ହୋଇ ସେଠାରୁ ମାରେ ଏକତିରା ।
ସମୁଦ୍ର ଭିତରେ ପଶି ଖୋଜିଲା ସେ ସ୍ଥାନ
ସଙ୍କେତ ଦେଇ କହିଛି ଜନନୀ ଯେସନ ।
୧୧୦

ଖୋଜି ଖୋଜି ଯାଇ ସେହି ସ୍ଥାନେ ପ୍ରବେଶିଲା
ବାଲୁକାମୟ ସେ ସ୍ଥାନଗୋଟିକ ଦେଖିଲା ।
ଖୋଳିଲା ପଥର ଅଛି ବହୁତ ଦୂରରେ
ଦେଖି ଲକ୍ଷଶିରା ତହିଁ ବ୍ରହ୍ମାଙ୍କୁ ସୁମରେ ।
ସୁମରିବା ମାତ୍ରେ ବ୍ରହ୍ମା ଆସିଲେକ ତହିଁ
ଲକ୍ଷଶିରା ଦୈତ୍ୟ ଅଛି ଯେଉଁ ଦ୍ୱୀପେ ରହି ।
ମିଳିଲେକ ବେଦବର ପାଶରେ ତାହାର
ଦେଖି ଲକ୍ଷଶିରା ତାଙ୍କୁ କରଣ ଆଦର ।
ବୋଇଲେ ହୋ ଚତୁର୍ମୁଖ ବ୍ରହ୍ମା ଶୁଣ ବାଣୀ
ନଗର ତୋଳିବ ମୁହିଁ ଏଠାବରେ ପୁଣି ।
ଗଢ଼ାଇ ଦିଅ ତୁ ବେଗେ ବିଳମ୍ବ ନ କର
ସ୍ୱର୍ଗପୁରଠାରୁ ହେବ ଅଧିକ ସୁନ୍ଦର । ୧୧୬
ଗଡ଼ର ଚୌପାଖରେ ରହିବ ପାଚେରି
ଯୋଜନେ ଉତ୍ସର୍ଗ ପୁଣି ହୋଇବ ତାହାରି ।
ପ୍ରସ୍ଥ ତାହାର ହୋଇବ ଏକଶତ ହାତ
ଦୀର୍ଘ ପ୍ରସ୍ଥରେ ହୋଇବ ଗଡ଼ ଯୂଣ ସାତ ।
ସମୁଦ୍ର ଗୋଟି ଯେମନ୍ତେ ହେବ ତାର ଖାଇ
ପାଚେରି ଗୋଟିକ ହେବ ରତନରେ ଛାଇ ।
ହୀରାରେ ଗଢ଼ିବ ଯେହ୍ନେ ହେବ ବଡ଼ଠାଣ
ଯେମନ୍ତେ ତାହାକୁ ଭେଦି ନ ପାରିବ ବାଣ । ୧୨୦
ଦୂରକୁ ସେ ଜକ ଜକ ଦିଶୁଥିବ ପୁଣି
ରାଣୀହଂସପୁର ହେବ ରତନେ ମଣ୍ଡଣି ।
ପଥର ଘର କରିବ ଲକ୍ଷେକ ବଖରା
ସବୁ ବଖରାରେ ଥିବ ବ୍ରହ୍ମକାନ୍ତ ହୀରା ।
ସ୍ଫଟିକର ଛାତ ସବୁ ରହିଥିବ ତହିଁ
ଜଳାକବାଟି ସବୁରି ଘରେ ଥିବ ରହି ।
କାନ୍ଥକୁଡ଼ମାନ ତହିଁ ଦିଶୁଥିବ ତୋରା
ଏମନ୍ତେ ରାଣୀଙ୍କ ପୁର ଲକ୍ଷେକ ବଖରା । ୧୨୪
ବଖରା ଚୌପାଖରେ ଥିବ ସେ ପାଚେରୀ
ଦ୍ୱାରବନ୍ଧରେ ମୁକୁତା ଥିବ କେରି କେରି ।
ଗଜଦନ୍ତ ପଲଙ୍କ ଯେ ଥିବ ସବୁ ଘରେ
ଆମ୍ଭ ଉଆସ ତୋଳିବ ଅତି ଯତନରେ ।
ଜଗତି ଗୋଟି ଆମ୍ଭର ହେବ ଅତି ଉଚ
ତହିଁକି ଥିବ ଣଏଟି ସ୍ଫଟିକ ପାବଚ୍ଛ ।
ଶଙ୍ଖପଥରେ ମେହର ସିଂହାସନ ହେବ
ତହିଁରେ ମଣି ମୁକୁତା ଖଞ୍ଜି ହୋଇଥିବ ।। ୧୨୮ ।।

ସଭା ଗୃହରେ ଜଗଣ୍ଠି ପାଡ଼ିଥିବ ଶୋଭା
ଦାଉ ଦାଉ ଦିଶୁଥିବ ଜଣି ସୂର୍ଯ୍ୟପ୍ରଭା ।
କନକମୟ ହୋଇବ ମୋ ଭଣ୍ଡାର ଘର
ମନ୍ତ୍ରୀଙ୍କ ଉଆସ ହେବ ସବୁହୁଁ ସୁନ୍ଦର ।
କୋଠିଏ ଭଣ୍ଡାର ଘର ହୋଇବ ଯେପରି
ତହିଁରେ ଯେ ଧନଧାନ୍ୟ ରତ୍ନ ଥିବ ପୂରି ।
ଅଷ୍ଟଧାତୁ ଖଣି ରହିଥିବ ମୋର ପୁରେ
ଅସ୍ତ୍ରଗୃହ ହେବ ବେନି ଯୋଜନ ବିସ୍ତାରେ ।
ଦେବ ଅସ୍ତ୍ରମାନ ତହିଁ ରହିଥିବ ପୂରି
ଅସରନ୍ତି ହେବ ଧନ ଭଣ୍ଡାର ମୋହରି ।
ଘୋଡ଼ାଶାଳ ହାତିଶାଳ ହୋଇବ ବହୁତ
ଆଖଡ଼ାଶାଳ ହୋଇବ ସହସ୍ରେକ ହାତ ।
ଦୀର୍ଘରେ ହେବ ଯେତେକ ପ୍ରସ୍ତରେ ତେତେକ
କୋଠିଏ ରଥ ଗଢ଼ାଇ ଦେବୁ ଅଷ୍ଟଆଖି ।
ରଥ ଗୋଟିକେ କୋଠରୀ ମାନ ଥିବ ରହି
ରାଉତ ମାହୁନ୍ତ ଘର ଗଢ଼ି ଦେବୁ ବହି ।
ପାଇକମାନଙ୍କ ପାଇଁ ହୋଇବ ଅଲଗା
ରାଜଦଣ୍ଡମାନଙ୍କରେ ଟେପ ତାଥିବ ତଗା ।
ଆକାଶରେ ଉଡ଼ୁଥିବ ତହିଁ ଥିବା ଧ୍ୱଜା
ଗୃହମାନଙ୍କେ ରତନମାନ ଥିବ ଖଞ୍ଜା ।
ମଣି ମାଣିକ୍ୟ ତହିଁରେ ଥିବ ପୁଞ୍ଜି ପୁଞ୍ଜି
ଦେଖି ତାରାମାନେ ଲାଜେ ହେଉଥିବେ ଗଞ୍ଜି
ନାଟ ମନ୍ଦିର ମୋହର ହୋଇବ ସୁନ୍ଦର
ତହିଁରେ ତୁ କରିଥିବୁ ନାନାଦି ଚିତ୍ର ।
ଆହେ ବିହି ଜାଣୁ ତୁହି ଯେତେ କାରିଗରି
ନାଟ ମନ୍ଦିରେ ତହିଁରେ ଥିବ ଜାଇ ପୂରି ।
ଅତି ସୁନ୍ଦର ହୋଇବ ଉଦ୍ୟାନ ମୋହର
ତହିଁର ମଧ୍ୟରେ ଥିବ ଦିବ୍ୟ ସରୋବର ।
ତାର ଚୂରିପାଖେ ଥିବ ଗୁଆ ଧାଡ଼ି ଧାଡ଼ି
ପୋଖରୀଘାଟ କରିବୁ ପାବଚ୍ଛ ସଜାଡ଼ି ।
ସ୍ୱାଦୁ ନିର୍ମଳ ପାତଳ ହୋଇଥିବ ଜଳ
କଳା ଭ୍ରମର ପରିଟୟ ଦିଶୁଥିବ ନୀଳ ।
ବହୁତ ଯେ ଉପବନ ଥିବ ମୋର ପୁରେ
ଔଷଧ ବୃକ୍ଷ ଯେ ଥିବେ ତୋଠାମାନଙ୍କରେ
ଫୁଲଗଛମାନ ସବୁ ଥିବ ମୋ ଉଦ୍ୟାନେ
ଏମନ୍ତ ପୁର ନିର୍ମାଣି ଦେବୁ ସାତଦିନେ ।

ଅସୁର ଆଜ୍ଞାକୁ ବ୍ରହ୍ମା ନ ପାରିଲେ ଭାଙ୍ଗି
ଗଢ଼ିଦେବି ବୋଲି କହିଗଲେ ତହୁଁ ବେଗି ।
ବିଶ୍ୱକର୍ମାକୁ ଡକାଇ କହିଲେ ବୁଝାଇ
ସାତଦିନେ ଗଢ଼ାଇଲା ଆପେ ତହିଁ ଥାଇ ।
ଅସୁର ଆଗରେ ଯାଇ ଜଣାଇଲା ବେଗେ
ଦେଖିବା ପାଇଁ ଦଇତ ଆସେ ସାଙ୍ଗେ ସାଙ୍ଗେ
ପୁର ଦେଖିଲା ଧବଳମୟ ଦିଶେ ଦୂରୁ
ଅତି ସୁନ୍ଦର ହୋଇଛି ସ୍ୱର୍ଗପୁରଠାରୁ ।
ଭିତରେ ପଶି ଦେଖିଲା ଗୋଟି ଗୋଟିକରି
ଅଳକାପୁର ତାହାକୁ ନୋହିବ ଯେ ସରି ।
ଅମରାବତୀ ନଗରୀ ନୋହେ ପଟାନ୍ତର
ଯେମନ୍ତେ ସେ କହିଗଲା ତହିଁରୁ ସୁନ୍ଦର ।
ଦେଖି ଆନନ୍ଦ ହୋଇଣ ବହୁଶିରା ପୁଅ
ବହୁତ ପ୍ରଶଂସା କରି ବୋଲେ ନାମ ଦିଅ ।
ଏ ପୁର ନାମ କି ହେବ କହ ବିଶ୍ୱକର୍ମା
ଜାଣିଲି ସ୍ୱର୍ଗରେ ତୁହି ଅଟୁ ମହାତମା ।
ଧନ୍ୟ ତୋର କାରିଗରୀ ଧନ୍ୟ ତୋର ବୁଦ୍ଧି
ତୋତେ ଯେ ପଠାଇ ଦେଲା ଧନ୍ୟ ଧନ୍ୟବିଧି
ମୋ ମନେ ଯେମନ୍ତ ଥିଲା ଆହେ ବିଶ୍ୱକର୍ମା
ତହୁଁ ଦ୍ୱିଗୁଣ ସୁନ୍ଦର କଲୁ ମହାତମା ।
କି ଦେଇ ତୋତେ ସନ୍ତୋଷ କରିବି ତୁ କହ
ଏମନ୍ତ ବୋଲି ଫୁଲାଇ ଆପଣାର ଦେହ ।
ରତନ ହାର ଗୋଟିଏ ଆଣିଲାକ ବାଛି
ତହିଁରେ ମଣି ମାଣିକ୍ୟ ପୁଞ୍ଜା ପୁଞ୍ଜା ଅଛି ।
ଝଟ ଝଟ ଦିଶୁଛି ସେ ବିଜୁଳି ପରାୟେ
ସେ ହାରଗୋଟିକ ଆଗେ ଆଣି ଦୈତ୍ୟରାୟେ
ବିଶ୍ୱକର୍ମାର ଗଳାରେ ହାର କରି ଦେଲା
ପୁରୁଷାର୍ଥ କରି ତାକୁ ବହୁତ କହିଲା ।
ସଙ୍ଗରେ ଥିଲେ ତାହାର ବିଶ୍ୱକର୍ମା ଯେତେ
ସମସ୍ତଙ୍କୁ ଧନରତ୍ନ ଦେଇ ତୋଷିଚିତ୍ତେ ।
ତାହାଙ୍କୁ ସନ୍ତୋଷକରି ଅସୁର ରାଜନ
ବୋଇଲା କି ଦେବା କହ ଏ ପୁରର ନାମ ।
ଏମନ୍ତ ଶୁଣି ବୋଇଲା ବିଶ୍ୱକର୍ମା ତହିଁ
ଅଟଇ ବାଲୁକାମୟ ଜାଣ ଏହି ଭୂଇଁ ।
ଏଣୁ ତ ନଗରୀ ନାମ ହୋଇଲା ବିଲଙ୍କା
ଲକ୍ଷ୍ୟ ନୋହିଲା ଏହାକୁ ପୁର ଯେ ଅଳକା ।

ଲକ୍ଷଶିରା ଅଂଇ ଯେ ଭୁମ୍ବନାମ ଗୋଟି
ଭୁମ୍ବଯୋଗୁଁ ଏହି ଦ୍ୱୀପ ହେଲା ପରିପାଟି ।
ଭୁମ୍ବପିତା ଶିରେ ଆଣି ବହୁତ ପଥର
ଦ୍ୱୀପେକ କଲା ବନ୍ଧାଇ ଅଗାଧ ସାଗର ।
ବହୁଶିରା ଦ୍ୱୀପ ବୋଲି ନାମଥିଲା ରଖି
ଦଇବ ବଳେ ସେ ଧ୍ୱଂସି ହୋଇଲା ନିର୍ମାକ୍ଷୀ ।
ପୁର ନ କରି ଅକାଳ ମରଣ ଲଭିଲା
ବିନ୍ଧ୍ୟ ପରବତେ ଯାଇ ପ୍ରାଣ ବିସର୍ଜିଲା ।
ତେତେବେଳେ ଦୀର୍ଘପ୍ରସ୍ତ ଥିଲା ଶଏଯୂଣ
ଏମନ୍ତେ ବହୁତ କାଳ ବହିଗଲା ଜାଣ ।
ସମୁଦ୍ର ବଢ଼ି ଏଥିରେ ପୋତିଦେଲା ବାଲି
ତା ଉପରେ ଘାସ ହୋଇ ବାନ୍ଧିଦେଲା ଜାଲି ।
ଦୁଇଗୁଣ କରିଦେଲା ତାହାକୁ ସାଗର
ପଥରଯାକ ହୋଇଲେ ପର୍ବତ ଆକାର ।
ବନ ପର୍ବତ ବହୁତ ହେଲା ଦୈତ୍ୟନାଥ
ଦୀର୍ଘପ୍ରସ୍ତରେ ଏ ହେଲା ଯୁଣ ଦୁଇଶତ ।
ଅପୂର୍ବ ପୁର ନିର୍ମାଣ ହେଲା ତୋହଯୋଗେ
ଅତି ସୁନ୍ଦର ହୋଇଲା ସିନା ତୋରଭାଗ୍ୟେ ।
ଏବେ ଆମ୍ଭଙ୍କୁ ମେଲାଣି ଦିଅ ଦୈତ୍ୟସାଇଁ
ଏମନ୍ତ ଶୁଣି ଆନନ୍ଦେ ଅସୁର ବୋଲଇ ।
ଯାଅ ଭୁହେ ବିଶ୍ୱକର୍ମା ଡାକିଲେ ଆସିବୁ
ଆମ୍ଭର ସମସ୍ତ କାର୍ଯ୍ୟମାନ କରିଯିବୁ ।

ଏମନ୍ତ କହି ମେଲାଣି ଦେଇ ସେହୁ ଗଲା
ସ୍ୱର୍ଗଭୁବନେ ପ୍ରବେଶି ବ୍ରହ୍ମାଙ୍କୁ କହିଲା ।
କହୁଛନ୍ତି ସଦାଶିବ ଶୁଣୁଛନ୍ତି ଉମା
ଜଗତ ଜନ ଜନନୀ ଶଙ୍କରଙ୍କ ବାମା ।
ଗ୍ରାମେ ଗ୍ରାମେ ରହି ଗ୍ରାମଦେବତୀ ବୋଲାନ୍ତି
ଘରେ ଘରେ ଗୃହଲକ୍ଷ୍ମୀ ରୂପେ ପୂଜାପାନ୍ତି ।
ବନରେ ବନଦେବତା ବୋଲାନ୍ତି ସେ ଦେବୀ
ସଂହାର କାଳେ ହୁଅନ୍ତି ସେହି ଭଇରବୀ ।
ରାଜାଙ୍କ ଗୃହରେ ରାଜ ଲକ୍ଷ୍ମୀ ସେ ବୋଲାନ୍ତି
ଚଣ୍ଡୀ ଚାମୁଣ୍ଡା ରୂପରେ ରଣେ ବୁଲୁଥାନ୍ତି ।
ସେହି ଆଦ୍ୟମାତା ତାଙ୍କଠାରୁ ସବୁ ସୃଷ୍ଟି
ପରମ ମାହେଶ୍ୱରୀ ସେ ଜଗତର ଶିରୀ ।
ହିଙ୍ଗୁଳା ରୂପ ବହନ୍ତି ନିଦାଘ କାଳରେ
ବନ ପର୍ବତ ପୋଡ଼ନ୍ତି ଅନଳ ରୂପରେ ।
ତାହାଙ୍କ ମହିମା ଏକା ଜାଣନ୍ତି ସେ ସିନା
ମୋର ଆନଗତି ନାହିଁ ତବ ପାଦ ବିନା ।
ଶରଣ ଜନ ରକ୍ଷିଣୀ ଚରଣ କମଳେ
ଶରଣ ପଶିଲି ମାତ ବୁଡ଼ି ଭବଜଳେ ।
କାରଣ କରିବୁ ସିନା ତାରିଣୀ ମା ତାରି
ହରିବୁ ଦୁରିତମାନ ଛେଦି ପାପଭାରି ।
ଦିବାରାତି ରହିଥିବ ତୋ ପାଦେ ଭକତି
ଏତିକ ମାଗଇ ଚକ୍ରଧର ଭଗବତୀ ।

—*—*—




ଶଙ୍କର କହନ୍ତି ଶୁଣ ହିମବନ୍ତ ଜେମା
ଏହି ରାମାୟଣର ଯେ ଅପାର ମହିମା ।
ସାମବେଦରୁ ଉଦ୍ଧୃତ ଅପାର ଏ ଗ୍ରନ୍ଥ
ଶ୍ରୋତା ବକତା ଏ ଦୁଇ ହୁଅନ୍ତି ମୁକତ ।
ପାପ ନିବିଡ଼ ତମକୁ ଏ ଚନ୍ଦ୍ର ତିମିର ତମାରି
କଳି କଳୁଷକୁ ଏ ସୁନିର୍ମଳ ବାରି ।

ଦୁରିତ ଗିରିକି ଜାଣ ବଜ୍ର ସ୍ୱଚମୁନା
ବିପଦ ମତ୍ତବାରଣ କେଶରୀ ଏ ସିନା ।
ତୋ ଆଗେ କହୁଛି ମୁହିଁ ଆଦ୍ୟ ପ୍ରାନ୍ତ କରି
ଅତି ଗୁପତ ଏ ଗ୍ରନ୍ଥ ମହାମନ୍ତ୍ର ସରି ।
ତୁ ମୋହର ଏକଆତ୍ମା ତେଣୁ କହେ ତୋତେ
ତୋ ଯୋଗୁ ପ୍ରକାଶ ସିନା ହୋଇବ ଜଗତେ ।

କଳି କଲ୍ମଷ ନାଶିବେ କଳିଯୁଗ ନରେ
ଏ ଗ୍ରନ୍ଥର ପଦେ ଅର୍ଦ୍ଧ ବାଜିଲେ କର୍ଣ୍ଣରେ ।
ପାପ ଗୁଡ଼ି ପଳାଇବ ଭସ୍ମାନ୍ତ ପର୍ଯ୍ୟନ୍ତେ
ମନ ଦେଇ ଶୁଣ ତୁ ଗୋ-ଶଇଲ ତନୟେ ।
ପୁର ଦେଖିଣ ହରଷେ ବହ୍ନିଶିଖ ପୁଅ
ଆନନ୍ଦ ଯୋଗୁଁ ତାହାର ଫୁଲିଗଲା କାୟ ।
ପାତାଳ ପୁରେ ମିଳିଲା ଯାଇଁ ମାମୁଁଘରେ
କହିଲା ଅଜା କଳପା ଅସୁର ଆଗରେ ।
ସାନନ୍ଦ ହେଲା କଳପା ନାତି କଥା ଶୁଣି
ବୋଇଲା ବାବୁରେ ହୁଅ ନୃପ ଶିରୋମଣି ।
ଜଉତିଷ ଡାକ ଯେବେ ଶୁଭ ଅନୁକୂଳ
ଜାଣିଲେ ସିନା ଆଣିବା ଯାଇଁ ତୀର୍ଥଜଳ ।
ଲକ୍ଷଶିଖ ବୋଲଇ ଯେ ଶୁଣ ତୁହେ ଅଜା
ଭଲ ଜଉତିଷ ଜଣେ ଡାକ ଆଣ ତୁ ଯା ।
କଳପା ବୋଲଇ ଶୁକ୍ର ଆମ୍ଭର ଯେ ଗୁରୁ
ତାହାଙ୍କୁ ପଚାରି ସିନା କାର୍ଯ୍ୟ ଆମ୍ଭେ କରୁ ।
ଦେବତାମାନଙ୍କ ଗୁରୁ ଅଟେ ବୃହସ୍ପତି
କାଟିଲା କାଳେ ସେ ଆମ୍ଭର ଶତ୍ରୁ ଯେ ଅଟନ୍ତି
ତାହାଙ୍କୁ ପୁଛିଲେ ସେହି କରିବ କପଟ
ଦିନବାର ଦେଲେ ତେଣେ ହେବା ରାଷ୍ଟ୍ରଭ୍ରଷ୍ଟ ।
ଏମନ୍ତ ଶୁଣି ଅସୁର ବୋଇଲା ହେ କହ
କେ ଯାଇଁ ଡାକି ଆଣିବ ଭୃଗୁମୁନି ପୁଅ ।
କଳପା ବୋଇଲା ଯିବ ତୋହର ମାତୁଳ
ଜପା ଅଜପା ଏ ଦୁଇଭାଇ ମହାବଳ ।
ଏହିକ୍ଷଣି ଯିବେ ତୁହି କହିଲା ମାତ୍ରକେ
ଶୁଣି ଲକ୍ଷଶିଖ ତାଙ୍କୁ ମାମୁଁ ମାମୁଁ ଡାକେ ।
ଶୁଣିଲା ମାତ୍ରେ ତା ଡାକ ଆଇଲେ ସେ ଧାଇଁ
ଭୃତ୍ୟ ଯେସନେ ନୃପତି ଡାକ ଶୁଣିଥାଇ ।
ବୋଇଲେ ଭଣଜା ତୁ ଯେ କୁଳର ନନ୍ଦନ
କେଉଁ କାର୍ଯ୍ୟରେ କାହିଁକି କରିବୁଁ ଗମନ ।
ଚଉଦବ୍ରହ୍ମାଣ୍ଡ ମଧ୍ୟେ ଯହିଁକି ପେଷିବୁ
ତାହାକୁ ଏକ୍ଷଣି ଆଣି ତୋ ଛାମୁରେ ଦେବୁ ।
ଏହାଶୁଣି ଲକ୍ଷଶିଖ ବୋଲେ ହସି ହସି
ଆଣି ଦେବୁ ଭୃଗୁମୁନିପୁଅ ଶୁକ୍ରଋଷି ।
ଅଜା ବୋଇଲେ ଆମ୍ଭର ଅଟେ କୁଳଗୁରୁ
ଜଉତିଷ ପାଠରେ ସେ ବଡ଼ ବ୍ରହ୍ମାଠାରୁ । ୨୫

ଯେମନ୍ତେ କି ଜଉତିଷ ପଢ଼ା ବୃହସ୍ପତି
ତେସନ ବଡ଼ ପାଠୁଆ ଅଟେ ଶୁକ୍ରଯତି ।
ଶୁଣିଣ ଜପା ଅଜପା ଗଲେ ତହୁଁ ଧାଇଁ
ପାଦୁକା ମନ୍ତ୍ର ସୁମରି ଶୂନ୍ୟେ ଚଳିଯାଇ ।
ଶୁକ୍ରମୁନିଙ୍କ ମଠରେ ହୋଇଲେ ପ୍ରବେଶ
ଦେଖିଲେ ସିଦ୍ଧ ଅଚ୍ଛନ୍ତି ଖଣ୍ଡେ କଷାବାସ ।
ଆଶାବାଡ଼ି ଉପରେ ଯେ ବାମଭୁଜ ଥୋଇ
ଦକ୍ଷିଣ ହସ୍ତରେ ବସି ମାଳାକୁ ଗଡ଼ାଇ ।
ଆଖି ଦୁଇଗୋଟି ବୁଜି କୃଷ୍ଣମୃଗ ଛାଲେ
ଅଳପ ଅଳପ ଦାଢ଼ି ନିଶ୍ୱାସରେ ହଲେ ।
ପାକିଲା ଦାଢ଼ିକି ଜଟା ହିଶଇ ସୁନ୍ଦର
ଜଳନ୍ତା ଅନଳ ପ୍ରାୟେ ତେଜ ପରଖର ।
ଦିଗମ୍ବରେ ବେଦବର କି ଅଟନ୍ତି ସେ ମୁନି
ଦେଖି ମହାଭୟ କଲେ ସେ ଅସୁର ବେନି ।
ଭାବିଥିଲେ ସିନା ବଳେ ଧରି ଘେନିଯିବା
ଦେଖି ମନରେ ପାଞ୍ଚିଲେ କେମନ୍ତେ କରିବା ।
ଅଗ୍ନିଠାରୁ ଏ ମୁନିର ତେଜହିଁ ଅଧିକ
ଦେଖିଲୁ ତ ପୃଥିବୀରେ ଏହି ଜଣେ ଲୋକ ।
ଧରିବା ଥାଉ ପାଖକୁ ନ ପାରୁଛୁ ଯାଇ
ଏମନ୍ତ ଭାଳ ଅନ୍ତରେ ଖଣ୍ଡେ ଦୂରେ ଥାଇ ।
ଦଣ୍ଡବତ କରି ଦୁହେଁ ଭୂମିରେ ଶୋଇଲେ
ଚକ୍ଷୁ ଦୁଇ ମେଲି ମୁନି ତାଙ୍କୁ ଅନାଇଲେ ।
ବୋଇଲେ କିଏ ରେ ତୁମ୍ଭେ ଆସିଛ କମ୍ପାଇ
ଏହାଶୁଣି ଦୁହେଁ ଉଠି ଶିରେ କରଦେଇ ।
ବୋଲନ୍ତି ଗୋସାଇଁ ଆମ୍ଭେ କଳ୍ପାସୁର ପୁଅ
ଆମ୍ଭଙ୍କୁ ପଠାଇଅଛି ଲକ୍ଷଶିଖ ରାୟ ।
ଜପା ଅଜପା ଆମ୍ଭର ନାମ ଅଟେ ଜାଣ
ଆମ୍ଭ ଦୁହିଁଙ୍କ ଭଣଜା ଲକ୍ଷଶିଖ ରାଣ ।
ବହ୍ନିଶିଖ ଦନୁଜର ତନୁଜ ସେ ବୀର
ତୁମ୍ଭେ ଆମ୍ଭ କୁଳଗୁରୁ ବୋଇଲେ ପିଅର ।
ତେଣୁ ତୁମ୍ଭଙ୍କୁ ନେବାକୁ ଦେଲେ ସେ ପଠାଇ
ତୁମ୍ଭ ପାଖକୁ ଅଇଲୁ ଆମ୍ଭେ ଦୁଇଭାଇ ।
ବିଳମ୍ବ ନ କର ଚାଲ ଯିବା ଆହେ ଗୁରୁ
ଦିନ ବାର ବୁଝିବ ସେ ରାଜା ତୁମ୍ଭଠାରୁ ।
ଏମନ୍ତ ଶୁଣି ବୋଇଲେ ଶୁକ୍ର ମୁନିବର
ତୁମ୍ଭେ ଦୁଇଭାଇ ବାବୁ ହୁଅ ଆଗଭର ।

ଆମ୍ଭର ଆବର କିଛି କର୍ମ ଅଛି ବ.କୀ
କ୍ଷଣକରେ ଆମ୍ଭେ ସାରି ଦେବୁଁ ନା ଚେତିକି
ତୁମ୍ଭ ପଛେ ପଛେ ଯାଇଁ ହୋଇବୁ ପ୍ରବେଶ
ମୁନିଙ୍କଠାରୁ ପାଇଣ ଏମନ୍ତ ଆଦେଶ ।
ଜପା ଅଜପା ସେଠାରୁ ଗଲେ ତରବରେ
କହିଲେ ଯାଇ ସକଳ ଅସୁର ଗୁମ୍ଫରେ ।
ଶୁଣି ଲକ୍ଷଶିରା ଅତି ଆନନ୍ଦ ହୋଇଲା
ଧନ୍ୟ ଧନ୍ୟ ମାମୁଁ ତୁମ୍ଭେ ବୋଲିଣ ବୋଇଲା
ଶୁକ୍ରମୁନି ନିତ୍ୟକର୍ମ ସାରି ତରବରେ
ପ୍ରବେଶ ହୋଇଲେ ଯାଇଁ ଅସୁର ଗୁମ୍ଫରେ ।
ମୁନିଙ୍କି ଦେଖି ଦାନବ ବେଗେ ହୋଇ ଉଠି
ଦଣ୍ଡବତ କରି ମୁନି ପାଦତଳେ ଲୋଟି ।
ବୋଲଇ ଗୋସାଇଁ ଆସ ବସ ଏ ଆସନେ
ଏମନ୍ତ କହି ପାଦକୁ ଧୋଇଲା ଯତନେ ।
ଗନ୍ଧପୁଷ୍ପ ଧୂପ ଦୀପ ନଇବେଦ୍ୟ ଦେଇ
ପୂଜା କଲା ମୁନିପାଦେ ସେ ଅସୁରସାଇଁ ।
ବୋଇଲା ହେ ମୁନି ତୁମ୍ଭେ ଆମ୍ଭ କୁଳଗୁରୁ
ରାଜନୀତି ଶିଖିବଇ ମୁହିଁ ତୁମ୍ଭଠାରୁ ।
ଭଲରୂପେ ପଢ଼ିଅଛ ଜଉତିଷ ପାଠ
କୃପା କରି ଅନୁକୂଳ ହୁଅ ତପୋନିଷ୍ଠ ।
ପଣ୍ଡିତପଣେ ଅଧିକ ବୃହସ୍ପତିଠାରୁ
ସାର ଗୂଢ଼ଖଣ୍ଡି ଜାଣ ଗୂଢ଼ ଯେ ବେଦରୁ ।
କଉଶଳେ ବ୍ରହ୍ମା ସରି ନୋହିବେ ତୁମ୍ଭଙ୍କୁ
ତେଣୁ ତୁମ୍ଭେ ଯାଇଁ ଗୁରୁ କଲ ଯେ ଶିବଙ୍କୁ ।
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ଶିବ ଦେଲେ ତୋତେ
ତୋହର ସମାନ ଦ୍ୱିଜ ନାହିଁ ଏ ଜଗତେ ।
ଏମନ୍ତେ ପ୍ରଶଂସା କରି କହିଲା ବହୁତ
କର ପ୍ରସାରି କଲ୍ୟାଣ ବାଞ୍ଛି ଭୃଗୁସୁତ ।
ବୋଇଲେ ତୁ ଅଭିଷେକ ହେବୁ କେଉଁରୂପେ
ଭାରିଯା ନାହିଁ କି ରାଜା ହେବୁ ଆପେ ଆପେ ।
ଭାରିଯା ସିନା ଅଟଇ ପୁରୁଷ ଅର୍ଦ୍ଧାଙ୍ଗ
ଭାରିଯା ଯାହାର ନାହିଁ ସେ ଲୋକ ହୀନାଙ୍ଗ ।
ଭାରିଯା ଅଟଇ ସିନା ପଥର ସଙ୍ଖାଳି
ଭାରିଯା ଯାହାର ନାହିଁ ସେହିଟି କାଙ୍ଗାଳି ।
ଶାଖା ନ ଥିଲେ ଅଶୋଭା ଦିଶେ ଯେହ୍ନେ ତରୁ
ଲତା ବିହୁନେ ଯେସନେ ଅଶୋଭା ସୁମେରୁ ।

ବିଜୁଳି ନ ଥିଲେ ଯେହ୍ନେ ମେଘ ଅସୁନ୍ଦର
ତାରା ବିହୁନେ ଯେସନେ ଅଶୋଭା ଅମ୍ବର ।
ପୃଥିବୀ ଅଶୋଭା ଯେହ୍ନେ ନଥିଲେ ନୃପତି
ନିଶା ବିହୁନେ ଚନ୍ଦ୍ରମା ଯେହ୍ନେ ହରଜ୍ୟୋତି ।
ପଦ୍ମ ବିହୁନେ ଯେସନେ ଜଳ ଅସୁନ୍ଦର
ମଦ ବିହୁନେ ଅଶୋଭା ଯେହ୍ନେ କରୀବର ।
ବେଗ ବିହୁନେ ଅଶୋଭା ପାଇ ଯେହ୍ନେ ହୟ
ଉତ୍ସବ ବିହୁନେ ଯେହ୍ନେ ଅଶୋଭା ଆଲୟ ।
ପଣ୍ଡିତ ବିହୁନେ ସଭା ଅଶୋଭା ଯେସନ
ବସ୍ତ୍ର ବିହୁନେ ଅଶୋଭା ଯେହ୍ନେ ତ୍ରିଭୁବନ ।
ହଂସ ହଂସୀ ବିନେ ଯେହ୍ନେ ନଦୀ ନ ଶୋଭଇ
ତେସନ ଯେ ପୁରୁଷର ଭାରିଯା ନ ଥାଇ ।
ଭାରିଯା ନଥିଲେ ଧର୍ମ କର୍ମ ହେବ ହାନି
ଭାରିଯାକୁ ଧର୍ମପତ୍ନୀ ବୋଲନ୍ତି ସୁଜ୍ଞାନୀ ।
ଭାରିଯା ଅଟଇ ସିନା ଧର୍ମବୃକ୍ଷ ମୂଳ
ଭାରିଯା ନ ଥିଲେ କାହୁଁ ରହିବ ତୋ କୁଳ ।
କୁଳ ମୂଳ ନ ରହିଲେ ହେବ ମୁଣ୍ଡାବୃକ୍ଷ
ରାଜା ହୋଇଲେ କି ହେବ ହୋଇବୁ ଅମୋକ୍ଷ
ଅମୋକ୍ଷ ହେଲେ ଶରୀର ଯିବ ଘୋର ଘଟ
ଶରୀର ପଡ଼ିଲେ ତହିଁ ଜନମିବେ ମାଛି ।
ମାଛି ଜନମିଲେ ତହୁଁ ଉପୁଜିବ କୀଟ
ଏମନ୍ତେ ନୀଚ ଯୋନିରେ ହୋଇବୁ ପ୍ରକଟ ।
ଏବେ ମୋର ବୋଲ ବାବୁ କରିବୁ ତୁ ଯେବେ
ନୃପତି ହୋଇ ସୁଖରେ ରହିବୁ ତୁ ତେବେ ।
ଆଗ ବିଭା ହେଲେ ସିନା କରିବୁ ତୁ ଘର
ଘରଣୀ ନ ଥିଲେ ଘର ଦିଶେ ଅସୁନ୍ଦର ।
ଏମନ୍ତ ଶୁଣି ଦନୁଜମଣି ମନେ ଭାଳି
ଗୁରୁଙ୍କର ପାଦତଳେ ଲଗାଇ ମଉଳି ।
ବୋଇଲା ହେ ଗୁରୁ ଯାହା କହିଲ ତା ସତ
ନ ଜାଣିକି ତୁମ୍ଭ ନାମ ଜଗତେ ବିଦିତ ।
କହିଲ ପରମତତ୍ତ୍ୱ ବୁଝିଲି ଗୋସାଇଁ
ଏହିକ୍ଷଣି କନ୍ୟାଏକ ଆଣିବି ଖୋଜାଇ ।
ଚଉଦ ବ୍ରହ୍ମାଣ୍ଡେ ଯାହା ଘରେ ଥିବ ଝିଅ
ତାହାକୁ କହିବ ମୋତେ ବିଭା କରିଦିଅ ।
ନ ଦେଲେ ବଳେ ତା କରୁ ଆଣିବି ଛଡ଼ାଇ
ତିନି ଭୁବନରେ ଏକା ମୁହିଁ ନରସାଇଁ ।

ମୋହର ଆଜ୍ଞା ଅବଜ୍ଞା କରିବ କେ ପୁଣି
ଯେ କରିବ ସେ ତକ୍ଷଣେ ଯିବ ସଞ୍ଜୀବନୀ । 79
ଆହେ ଗୁରୁ କି କହିବ ମୁଁ ତୁମ୍ଭ ସମ୍ମୁଖରେ
ବିଷ୍ଣୁ ଚକ୍ର ବନ୍ଧ ହେଲା ପଡ଼ି ମୋ ଗଳାରେ ।
ଇନ୍ଦ୍ର ବଜ୍ର ଭାଙ୍ଗି ଗଲା ମୋର ଶିରେ ପଡ଼ି
ହର ଶୂଳ ଉରେ ବାଜି ପଡ଼ିଲା ଉପୁଡ଼ି ।
ଦେବ ଦାନବେ ମାନବେ ମୁହିଁଟି ଅବଧ
ଚଉଦବ୍ରହ୍ମାଣ୍ଡ ନାହିଁ ମୋହର ଅସାଧ ।
ସମସ୍ତେ ମୋ ଆଜ୍ଞାକାରୀ କି କହିବ ତୋତେ
ରହିଥାଅ ଗୁରୁ ବିଭାହେବା ପରଯନ୍ତେ ।
ତୁମ୍ଭେ ଥାଇ ସିନା ବିଭା କରିବ ହେ ଗୁରୁ
ବାକ୍ୟ ଉଚାରିବ କିଏ ଗଲେ ମୋର ଘରୁ ।
ଏମନ୍ତ ଶୁଣି ବୋଇଲେ ଶୁକ୍ର ମହାମୁନି
କନ୍ୟା ଗୋଟିଏ ତୁ ବାବୁ ଆସ ଯାଇଁ ଘେନି ।
ତୋର ପୁରେ ଥିବା ଆମ୍ଭେ ମଠକୁ ନ ଯିବା
ବେଗ ବେଗ ହୋଇ ବାବୁ ହୁଅ ତୁହି ବିଭା ।
ଗୁରୁ ଆଜ୍ଞା ପାଇ ଦୈତ୍ୟ ରାଇଲା ଅଜାକୁ
କନ୍ୟା ଏକ ଆଣି ଅଜା ଦେବୁ ତୁ ଆମ୍ଭଙ୍କୁ ।
ଗୁରୁ କହିଲେଣି ଆଗ ବିଭା ହେବା ପାଇଁ
କନ୍ୟା ଖୋଜିଆଣ ବେଗେ ଆମ୍ଭପାଇଁ ଯାଇଁ ।
ଏମନ୍ତ ଶୁଣି କଳପା ବୋଲେ ହସି ହସି
ଆଣିଦେବା ଏହିକ୍ଷଣି ଷୋଡ଼ଶ ବୟସୀ ।
ଦେଖିବା ନାତୁଣୀ ବୋହୂ ଆନନ୍ଦ ହୋଇବା
ବୁଢ଼ା ହେଲୁଣିତ ଆମ୍ଭେ କାଳେ ମରିଯିବା ।
ନାତି ବିଭା ଦେଖି ନେତ୍ର କରିବା ପବିତ୍ର
ଭାଗ୍ୟେଥିଲେ ଦେଖିବା ନା ନାତିର ଯେ ପୁତ୍ର
ଏମନ୍ତେ ଯେ କଉତୁକ ହୋଇ ଚହୁଁ ଗଲା
ପାତାଳେ ପାତାଳକେତୁ ପୁରେ ପ୍ରବେଶିଲା ।
ତାହାର ଦୁହିତା ନାମ ଅଟେ ଖୁରଣସୀ
ସୁନ୍ଦରୀ ସେ ସୁକୁମାରୀ ଅଳପ ବୟସୀ ।
ତାହାର ରୂପକୁ ଦେଖି କଳପା ଅସୁର
ମନେ ବିଚାରିଲା ଏହା ଲକ୍ଷ୍ୟ ସେହି ବର ।
ଏମନ୍ତ ଭାଳି ବୋଇଲା ପାତାଳକେତୁକୁ
ଲକ୍ଷଶିରକୁ ଦେବୁ କି ତୋର ଦୁହିତାକୁ ।
ଏସନ ଶୁଣି ପାତାଳକେତୁ ବୋଲେ ହସି
ଜାଣିଲଇଁ ସଉଭାଗୀ ମୋର ଖୁରଣସୀ । ୨୬

ଲକ୍ଷଶିର ପ୍ରାପ୍ତ ବର ପାଇଲା ସେ ଯହୁଁ
ବହୁଶିର ପୁଅ ଯାର ଦୁଇଲକ୍ଷ ବାହୁ ।
ଚଉଦ ଭୁବନେ ଯେହୁ ଏକମାତ୍ର ବୀର
ଯାହାଙ୍କୁ ସମରେ ହାରି ଗଲେ ହରିହର । ୨୪
ଏମନ୍ତ କହି କନ୍ୟାକୁ ସଙ୍ଗତରେ ଘେନି
ଅଇଲା କଳପ ସଙ୍ଗେ ଯହିଁ ଶୁକ୍ରମୁନି ।
କନ୍ୟା ରୂପ ଦେଖି ଦୈତ୍ୟ ଆନନ୍ଦ ହୋଇଲା
ଗୁରୁଙ୍କ ମୁଖକୁ ଚାହିଁ ଏମନ୍ତ ବୋଇଲା ।
ଧନ୍ୟ ଧନ୍ୟ ଅଜାମୋର କେଡ଼େ ତୀରବୁଦ୍ଧି
ସାକ୍ଷାତେ ତାହାକୁ ଆମ୍ଭେ ବୋଲିବା ନା ବିଧି
କେମନ୍ତେ ସୁନ୍ଦରୀ କନ୍ୟା ଆଣିଲାକ ବାଛି
ବରର ରୂପକୁ କନ୍ୟାରୂପ ଅଛି ବାଛି ।
ଏମନ୍ତ କହି ଅଜାକୁ ବୋଇଲାକ ପୁଣି 3-11-65
ବିଭାର ଲୋଡ଼ା ସାମଗ୍ରୀମାନ ଦିଅ ଆଣି । 103
ବିଳମ୍ବ ନ କର ବିଭା ହେବା ନା ଏକ୍ଷଣେ
କଳପାସୁର ବୋଇଲା ନାହାନ୍ତି ବ୍ରାହ୍ମଣେ ।
ଲଗ୍ନ ଧରା ହୋଇନାହିଁ କେମନ୍ତେ ହେବୁ ବିଭା
ଶୁକ୍ରମନ୍ତ୍ରୀକି ପଚାରି ଲଗ୍ନ ଯେ ଧରିବା ।
ଅଶୁଭ ଯୋଗରେ ବିଭା ହେଲେ ହୁଏ ପୀଡ଼ା
ମନ ଦେଇ ଶୁଣ ବାବୁ କହୁଅଛି ତାହା ।
ବାରତିଥି ଯୋଗ ଲଗ୍ନ ନକ୍ଷତ୍ର କରଣ
ଏମାନେ ଶୁଭ ହୋଇବେ ଯେଉଁଦିନ ଜାଣ ।
ବରକନ୍ୟା ରାଶିର ଯେ ଚନ୍ଦ୍ର ବୁଝାଯିବ
ତେବେ ଯାଇଁ ସିନା ବାବୁ ବିଭାଘର ହେବ ।
ଅନୁକୂଳ କରିବା ନା ଲଗ୍ନ ପତ୍ର ଧରି
ଏମନ୍ତ ନ କଲେ ତୁଟିଯିବ ସିନା ଶିରୀ ।
ହେଉ ହେଉ କହି ଦୈତ୍ୟ କୋଇଲା ଶୁକ୍ରକୁ
ଦିନବାର ବୁଝି ଗୁରୁ ଦିଅ ହେ ଆମ୍ଭଙ୍କୁ । ୱ୦
ଶୁକ୍ରମନ୍ତ୍ରୀ ଦିନ ବୁଝି ବୋଇଲେ ରାଜନ
ମାର୍ଗଶିର ମାସ ଶୁକ୍ଳ ସପ୍ତମୀ ଦଶୀ ଦିନ ।
ରୋହିଣୀ ନକ୍ଷତ୍ରେ ବିଭା ଯୋଗାଇଲା ତୋତେ
ଆୟୁଷ୍ମାନ ଯୋଗ ଅଛି ସେହି ଦିନ ରାତେ ।
ସ୍ତମ୍ଭନାମେ କରଣ ଯେ କନ୍ୟାଲଗ୍ନେ ବିଭା
ଏମନ୍ତ ଯୋଗରେ ହାତଗଣ୍ଠି ପକାଇବା ।
ଶୁଣି ସାନନ୍ଦ ହୋଇଲା ଗୁରୁଙ୍କ ବଚନେ
ବିଭା ବେଦୀରେ ବସିଲା ଯାଇଁ ସେହି ଦିନେ ।

ପାତାଳକେତୁ ଝିଅକୁ ବସାଇଲା କୋଳେ
ଅସୁରମାନେ ବସିଲେ ଆସି ବେଢ଼ିତଳେ ।
ଦେବଙ୍କୁ ଦୂତ ବରଗି ଆଣିଲା ଡକାଇ
ବୋଇଲା ମୋ ବିଭାଘର କର ତୁମ୍ଭେଥାଇଁ ।
ଚତୁର୍ମୁଖେ ବେଦ ତୁ ହୋ ପଢ଼ ବେଦବର
ଇନ୍ଦ୍ର ଦେବତା ହସ୍ତରେ ଧରିଣ ଚାମର ।
ଧୀରେଧୀରେ ମୋ ଉପରେ ଢାଲ ଛୁଡ଼ା ହୋଇ
ପବନ ଦେବତା ତାର ପାରୁଶରେ ଥାଇ ।
ବ୍ୟଜନ ଧରିଣ ଧୀରେ ଧୀରେ ଦେଉ ବିଞ୍ଚି
ଚନ୍ଦ୍ର ଦେବତା ଅମୃତ ଦେଉଥାଉ ସିଞ୍ଚି ।
ଅପସରାମାନେ ନୃତ୍ୟ କରନ୍ତୁ ମୋ ଆଗେ
ଗନ୍ଧର୍ବେ ବିପଞ୍ଚି ବୀଣା ଧରି ତାଙ୍କ ସଙ୍ଗେ ।
ତାନ ମାନ ସ୍ୱର ଧରି ଗାଉଥାନ୍ତୁ ଗୀତ
ବେଦ ଦୁନ୍ଦୁଭି ଶବଦେ ପୂରୁ ଏ ଜଗତ ।
ବରୁଣ ଦେବତା ସବୁ ତୀର୍ଥଜଳ ଆଣୁ
ବୃହସ୍ପତି ସପତାଙ୍ଗ ପାଞ୍ଜି କି ବଖାଣୁ ।
ମେଘେ ପୁଷ୍ପ ବରଷନ୍ତୁ ମୋହର ଉପରେ
ଏମନ୍ତେ ନିଯୋଗେ ରୁହ ମୋର ବିଭାଘରେ ।
ଦେବ ଦାନବ ପନ୍ନଗ ଗନ୍ଧର୍ବ କିନ୍ନର
ସମସ୍ତେ ମିଳିଣ ତହିଁ କଲେ ବିଭାଘର ।
ହାତଗଣ୍ଠି ପକାଇଲେ ଶୁକ୍ର ପୁରୋହିତେ
ହୁଳହୁଳି ଦେଲେ ଥିଲେ ନିଶାଚରୀ ଯେତେ
ବିଭା ହୋଇଣ ବୋଇଲା ବହ୍ନିଶିରା ସୁତ
ଏ ଯୋଗେ କି ଅଭିଷେକ ହେବା ପୁରୋହିତ ।
ଶୁକ୍ର ବୋଇଲେ ଅଛଇ ଆଉ ଶୁଭଯୋଗ
ବୃଷ ସଙ୍କରାନ୍ତିର ଯେ ବାରଦିନ ଭୋଗ ।
କାଲି ପ୍ରଭାତେ ତୁ ଯାଇ ବସ ସିଂହାସନେ
ଏମନ୍ତ ସେ ଲକ୍ଷଣିରା ଗୁରୁଙ୍କ ବଚନେ ।
ପରଦିନ ଲଙ୍କାରେ ହୋଇଲା ପ୍ରବେଶ
ସିଂହାସନେ ବିଜେ କଲା ବହ୍ନିଶିରା ଶିଷ୍ୟ ।
ବାଦ୍ୟ ନାଦରେ କମ୍ପୁଛି ସେ ଲଙ୍କା ଭୂମି
ବରୁଣ ଦେବତା ଦେଲେ ତୀର୍ଥଜଳ ଆଣି ।
ଖୁରଶସୀ କୋଳେ ଯେନ ବସିଲେ ଦଇତ
ଉତରେ ଦେବେ ଆଣିଦେଲେ ମାଳା ପାରିଜାତ
ବାସୁକି ଭସ୍ମରେ ମଣି ଆଣିଦେଲା ଶିରେ
ସମୁଦ୍ର ରତନ ହାର ଲମ୍ବାଇଲା ଉରେ ।

ଏମନ୍ତେ ଭସ୍ମରେ ଦେବେ ଦେଲେ ଅଳଙ୍କାର
ଶିରେ ତୀର୍ଥଜଳ ଦେଲେ ଶୁକ୍ର ମନ୍ତ୍ରୀବର ।
ରୁଦ୍ର ଦେବତା ତା ଆଗେ ନୃତ୍ୟକଲେ ଆସି
ଅଭିଷେକ ଶେଷେ ଦୈତ୍ୟ ସିଂହାସନେ ବସି
ସମସ୍ତଙ୍କୁ ରାଇ ବୋଲେ କୋମଳ ବଚନେ
ଆହେ ଦେବଗଣ ତୁମ୍ଭେ ଲଙ୍କା ଭୁବନେ ।
ମୋତେ ରାଜାକଲ ଏବେ ଆନନ୍ଦ ହୋଇଣ
ଯେ ଯାହା ପୁରକୁ ସୁଖେ କର ହେ ଗମନ ।
ଯଶୋବନ୍ତୀପୁରେ ତୁହେ ଚଳ ବେଦବର
ଅମରାବତୀ ପୁରକୁ ଯାଉ ଦେବ ପୁରନ୍ଦର ।
କୁବେର ପୁରକୁ ଯାଉ କୁବେର ଦେବତା
ଏମନ୍ତେ ମେଲାଣି ଦେଇ ଦୈତ୍ୟ ବଳବନ୍ତା ।
ଲଙ୍କା ଦେଶେ ହୋଇଲା ଯହିଁ ଦଣ୍ଡଧର
ସମୁଦ୍ର ମଧ୍ୟରେ ଥିଲେ ଯେତେକ ଅସୁର ।
ପାତାଳକେତୁର ବଂଶ ଥିଲେ ଯେ ପାତାଳେ
ସମସ୍ତେ ଆସି ଖଟିଲେ ତାର ପାଦତଳେ ।
ଲଙ୍କା ଭୁବନ ହେଲା ଅସୁରଙ୍କଘର
ବସାଇଲେ ହାଟ ବାଟ ଘାଟରେ ବଜାର ।
ଦେଉଳ ମଣ୍ଡପ ତୋଳି ଶମ୍ଭୁ ଲିଙ୍ଗ ଥାପି
କନ୍ଦ ବିକନ୍ଦ ବହୁତ କଲେ କାମରୂପୀ ।
ବହୁତ ପୋଖରୀ କରି ବନ୍ଧାଇଲେ ଘାଟ
ପଥର ଚୂରି ସୁନ୍ଦର କଲେ ସବୁ ବାଟ ।
ନାନାବିଧ ଶସ୍ୟ କରିଣ ରହିଣ ଆନନ୍ଦେ
ତହିଁର ମଧ୍ୟରେ ବନ ପରବତ ଅଧେ ।
ଗୋରୁ ମଇଁଷି ଅପାର ରଖିଲେ ସେ ପୁରେ
ବ୍ୟାଘ୍ରଭାଲୁ ସିଂହ ଆସି ରହିଲେ ବନରେ ।
ମୃଗ ଗଣ୍ଡା ଆଦି ପଶୁ କଲେ ତହିଁ ବାସ
ଅତି ସୁନ୍ଦର ଦିଶିଲା ସେ ଲଙ୍କା ଦେଶ ।
ଶୁଣିଲେ ଗଉରୀ ଏହି ଲଙ୍କା ଚରିତ
ଏକଥା ଗୋଟି ଏଥିରେ ପରମ ପବିତ ।
ଜୟ ଜୟ ହିଙ୍ଗୁଳା ଗୋ ଜୟ ମାହେଶ୍ୱରୀ ।
ଝିଙ୍କଡ଼ ବାସିନୀ ତୁହି ସାକ୍ଷାତେ ଗଉରୀ ।
ସିଂହବାହିନୀ ଦେବୀ ତୁ ମହିଷା ମର୍ଦ୍ଦିନୀ
ଜୟ ଜୟ ଦୁର୍ଗା ମାଗୋ ଶିବଙ୍କ ଘରଣୀ ।
ଏହି ରାମାୟଣ ଗ୍ରନ୍ଥ ସାମବେଦୁଁ ଜାତ
ଶୁଣି ଶୁଣାଇଲେ ନରେ ହୁଅନ୍ତି ମୁକତ ।

ରାମାୟଣ ଶୁଣି ନରେ ଭବୁ ହୁଅ ପାର
ରାମାୟଣ ଶୁଣି ନରେ ଦୁସ୍ତରୁ ନସ୍ତର ।
ରାମାୟଣ ଶୁଣି ନରେ ପାପ ତାପ ନାଶ
ରାମାୟଣ ଶୁଣି ନରେ ସ୍ୱର୍ଗେ ଯାଇ ବସ ।
ରାମାୟଣ ଗ୍ରନ୍ଥ ସବୁ ଗ୍ରନ୍ଥ ମଧ୍ୟେ ସାର
ଶୁଣି ଉତ୍ତର ବଲଙ୍କା କାଣ୍ଡ ସମାଗ୍ରର ।
ଅପୂର୍ବ ଚରିତ ଏହ୍ୱ ପଢ଼ି ଶୁଣି ନରେ
ଆଶଙ୍କା ଖଣ୍ଡି ନିଶ୍ଚିନ୍ତେ ସୁଖେ ରୁହ ଘରେ
ବିଧବା ଯେବେ ଏହାକୁ ଶୁଣୁଥାଇ ନିତି
ପତିଙ୍କ ଘେନଣ ଆପେ ଲଭଇ ମୁକତି ।
ନାରୀଏ ଯେବେ ଏହାକୁ ପଢ଼ନ୍ତି ଶୁଣନ୍ତି
ସାତ ଜନମ ଯାଏ ସେ ବିଧବା ନୁହନ୍ତି ।
ଧନ ପୁତ୍ରବନ୍ତି ହୋଇ ସୁଖେ ଦିନ କାଟି
ଅନ୍ତେ ବଇକୁଣ୍ଠପୁରେ ହୁଏ ତାଙ୍କ ଗୋଷ୍ଠୀ ।
ନରତେ ଏ ରାମାୟଣ ଗ୍ରନ୍ଥକୁ ଅଭ୍ୟାସ
ଜନ୍ମେ ଜନ୍ମେ ଚନ୍ଦ୍ରଧର ପାଦତଳ ଦାସ ।

---*---

## ବଲଙ୍କା ବର୍ଣ୍ଣନ ଓ ସହସ୍ର ଶିର ଜନ୍ମ ଏବଂ ଲକ୍ଷଶିର ଓ ହରିଶିର ତପସ୍ୟା

ଏଥୁ ଅନନ୍ତରେ ପୁଣି ପୁଚ୍ଛନ୍ତି ପାର୍ବତି
ବୁଝାଇଣ କହ ମୋତେ ଦେବ ପଶୁପତି ।
ବଲଙ୍କାରେ ଘର କେତେ ହାଟ ଘାଟ କେତେ
କନ୍ଦ ବକନ୍ଦ ଆବର ବଜାରହିଁ ଯେତେ ।
ବୀର ମହାବୀର କେତେ ରାଉତ ମାହୁନ୍ତ
ଅଶ୍ୱ ଗଜ ଗୋ ମଇଁଷି କେତେ ରଥୀରଥ ।
ଦେଉଳ ମଣ୍ଡପ କେତେ କହିବା ବିସ୍ତାରି
ଉଚ୍ଚରେ କେତେ ହୋଇବେ ଅସୁର ଅସୁରୀ
ରାଜା ହୋଇ ଲକ୍ଷଶିର କଲା କେଉଁ କୃତ୍ୟ
ଏକ ରାଣୀ କିବା ତାର ରାଣୀ ଯେ ବହୁତ ।
ପୁଅଝିଅ କେତେ ନାତି ନାତୁଣୀ ବା କେତେ
ସଂକ୍ଷେପି କହ ହେ ନାଥ ମୋହର ଅଗ୍ରତେ ।
ବଲଙ୍କା ରାମାୟଣର ଏ ଉତ୍ତରକାଣ୍ଡ
ଶୁଣିଥିବା ଲୋକକୁ ନ ଲାଗେ ଯମଦଣ୍ଡ ।
ଈଶ୍ୱର ବୋଇଲେ ଭୃଗୋ ଶୁଣ ଶୁଭ୍ରକେଶୀ
ସାବଧାନେ ଶୁଣିଲେ ତା କହିବା ବିଶେଷି ।
ବଲଙ୍କା ଭୁବନ ଗୋଟା ଅପୂର୍ବ ସୁନ୍ଦର
ଚଉଦଭୁବନେ ନାହିଁ ଏମନ୍ତ ଯେ ପୁର ।
ତରେ ବିଶ୍ୱକର୍ମା ତାକୁ ଗଢ଼ିଛି ଯତନେ
ତେଣୁ ସେ ଅତି ସୁନ୍ଦର ଚଉଦଭୁବନେ ।
ଲକ୍ଷଶିର ଅସୁର ଯେ ବଳବନ୍ତ ପଣେ
ତିନଭୁବନ ଜିଣିଲା ସଙ୍ଗେ ନାହିଁ ଜଣେ ।
ରଥ ନାହିଁ ଅଶ୍ୱ ନାହିଁ ସଇନ୍ୟହିଁ ନାହିଁ
ହସ୍ତରେ କେବଳ ଗଦା ଏକ ଧରିଥାଇ ।
ଦଶଦିଗପାଳକୁ ଯେ ଜିଣିଲା ସମରେ
ମହାପ୍ରତାପୀ ଦଇତ ଭ୍ରମେ ଏକେଶ୍ୱରେ ।
ଡରେ ହରିହର ବ୍ରହ୍ମା ତାର ଆଜ୍ଞାକାରୀ
ସୂର୍ଯ୍ୟ ଦେବତା କରଣ ନ ଦିଅଇ ଡରି ।
ଯମରାଜା ରାଜାପଣ ବଲଙ୍କାରେ ନାହିଁ
ପବନ ଦେବତା ଧୀରେ ଧୀରେ ବହୁଥାଇ ।
ଅବସନ୍ତରେ ବସନ୍ତ ବହୁଥାଇ ନିତି
କାହାକୁତ ଦଇତର ଚଟେ ନାହିଁ ଖ୍ୟାତି ।
ତାହାର ପ୍ରତାପେ ଦୈତ୍ୟ ପ୍ରତାପୀ ହୋଇଣ
ଶ୍ରେଷ୍ଠରତ୍ନ ସବୁବେଳେ କରିଣ ହରଣ ।
ବଲଙ୍କା ପୁର ମଣ୍ଡନ କଲେକ ଅସୁରେ
ରତ୍ନଦୀପ ଜଳୁଥାଇ ସବୁରି ମନ୍ଦିରେ ।
ସୁନା କଳସ ସବୁରି ଘରେ ବସିଥାଇ
ରଜତ କଳସ ବସେ ଧାଡ଼ି ଧାଡ଼ି ହୋଇ
ସବୁରି ଘରେ ଧବଳମୟ ଦିଶେ ତୋରା
ସମସ୍ତଙ୍କ ଘରେ ଖଞ୍ଜା ହୋଇଅଛି ହୀରା ।

ମାଣିକ୍ୟର ଧାପମାନ ଅଛି ସବୁଘରେ
ମଣି ମୁକ୍ତା ଜଡ଼ିତ ସବୁରି କାନ୍ଥରେ ।
ସବୁରି ଘର ପବିତ୍ର ନିର୍ମଳ ସୁନ୍ଦର
କାନ୍ଥମାନଙ୍କରେ ରୂପ ଥିବାରୁ ଅପାର ।
ଅତି ସୁନ୍ଦର ହୋଇଛି ତେଣୁ ତାର ଜ୍ୟୋତି
ଦୁଇଶତ ଯୋଜନ ସେ ପୁର ଦୀର୍ଘ ପ୍ରସ୍ଥ ।
ଉପମା ଦେବାକୁ ନାହିଁ ସେ ପୁର ଶୋଭାକୁ
ନିନ୍ଦଇ ଶୋଭାରେ ସେହି ଇନ୍ଦ୍ର ଭୁବନକୁ ।
ରାଜା ପ୍ରଜାଙ୍କର ପୁର ସବୁ ସମତୁଲ
ରତ୍ନ ଥିବାରୁ ସବୁରି ଘର ଝଲମଲ ।
କେହି ବାରି ନ ପାରିବ କଏ କାହା ଘର
କଏ ନୃପତି ମନ୍ଦିର କଏ ମନ୍ତ୍ରୀପୁର ।
ରାଜିତ ମାହୁନ୍ତ ପୁର ରାଜାପୁର ସରି
ପହରଣମାନ ପୁଣି ସମାନ ସବୁରି ।
ପତାକାରୁ ବାରିହୁଏ ରାଜାର ନବର
ଆଉର ଛତ୍ର ଆଡ଼େଣି ତରାସ ଗୃମର ।
ସିଂହ ଚଉରୀ କଗଣ ରତ୍ନ ସିଂହାସନ
ଅପସରା ନୃତ୍ୟଗୀତ ଗନ୍ଧର୍ବଙ୍କ ଗାନ ।
ରାଜସଭା ଗୃହ ତହିଁ ଥିବାରୁ ଆବର
ଜାଣି ପାରିବ ଏଥିରୁ ଏ ରାଜା ନବର ।
ବିଲଙ୍କାର ଶୋଭା କିବା କହିବି ତୋ ଆଗେ
ତହିଁ ଯାହା ଅଛି ତାହା ନାହିଁ ଜାଣ ସ୍ୱର୍ଗେ ।
ଏବେ କହୁଅଛି ଶୁଣ ବୀରଙ୍କର ନାମ
ଜଙ୍ଘା କୁଜଙ୍ଘା ଆବର ବୀର ବହୁଲୋମ ।
ପାତାଳକେତୁ ଜୀମୂତକେତୁ ଦୁଇଭାଇ
ରାଜାର ଶ୍ୱଶୁର ସେହି ବଳବନ୍ତ ଦୁଇ ।
ଶାଳକଗଣ ତାହାର ଅଟନ୍ତି ଯେ ଶଏ
ତାହାଙ୍କ ନାମ କହୁଛି ଶୁଣ ମହାମାୟେ ।
ତାଳକେତୁ ଫାଳକେତୁ ଧୂମକେତୁ ଭିନ
ମଙ୍ଗଳକେତୁ ପିଙ୍ଗଳକେତୁ ଏହି ବେନ ।
ଶୋଣିତକେତୁ ପିଶିତକେତୁ କେତୁମାଳ
ରଶ୍ମିକେତୁ ହୟଗ୍ରୀବ ହେନ୍ତାଳ ବେତାଳ ।
କୁନଖା ସୁନଖା ଘୋରରୁଧା ମହାକାୟ
ଯୁଗାନ୍ତକ ରୋଗାନ୍ତକ ବୀର ଗିରିକାୟ ।
ହୟମୁଖ ଗଜମୁଖ ସୁମୁଖ ଦୁର୍ମୁଖ
ଦୀର୍ଘଦନ୍ତ ବକ୍ରଦନ୍ତ ବୀର ସିଂହମୁଖ ।

ମତ୍ତ ପ୍ରମତ୍ତ ଉନ୍ମତ୍ତ ମହାମତ୍ତ ଶୂର
ଏକେ ଏକେ ପାରନ୍ତି ଏ ଆଦିତ୍ୟକୁ ଧରି ।
ଏମନ୍ତେ ଶାଳକଗଣ ନାମ ତୋତେ ଥୋକେ
କହିଲି ବୀର ବୋଲନ୍ତି ଏହି ଏକେ ଏକେ ।
ଜପା ଅଜପା କୁଜପା ସୁଜପା ଏ ଶୂର
ରାଜାର ମାମୁଁ ଏମାନେ ସଂଗ୍ରାମେ କେଶରୀ ।
କଳପାସୁର ଯେ ଶୁକ୍ର ମନ୍ତ୍ରୀ ଏହି ଦୁଇ
ସେନାପତିଙ୍କର ନାମ ଶୁଣ ମନଦେଇ ।
ଜମ୍ଭ କୁଜମ୍ଭ ଏ ଦୁଇ ଥାଟେ ସେନାପତି
କଳୋଦ୍ଭବ ନାମେ ବୀର କାଳକେୟ ଗୋଷ୍ଠୀ ।
ମହା ପ୍ରତାପୀ ଦାନବ ଥିଲା ସିନ୍ଧୁ ମଧ୍ୟେ
ତାହାର ନାମ ଶୁଣିଲେ ଡରନ୍ତି ବିବୁଧେ ।
ପାଞ୍ଚଶତ ଗଜ ଅଶ୍ୱ ପାଞ୍ଚଶତ ଧେନ
ପାଞ୍ଚଶତ ରଥ ଲକ୍ଷେ ପଦାତି ସଇନ ।
ସଙ୍ଗତେ ଦେନ ମିଳିଲା ଲକ୍ଷଣିର ପାଶେ
ଗଉରବ କରି ତାକୁ ନୃପତି ବିଶେଷେ ।
ସେନାପତି ପଣେ ଶାଢ଼ୀ ବାନ୍ଧିଲା ତା ଶିରେ
ଜୃମ୍ଭଣ ନାମେ ଦଇତ୍ୟ ସୈନ୍ୟ ସଙ୍ଗତରେ ।
ବିଲଙ୍କାରେ ଘର କରି ରହିଲାକ ଆସି
ଏମନ୍ତେ ନାମ କହିବି କେତେ ଶୁଭ୍ରକେଶୀ ।
ବିଲଙ୍କା ନଗରେ ଜାଣ ଦଶକୋଟି ଘର
ଘର ଗୋଟିକ ମଧ୍ୟରେ ବଖରା ଯେ ବାର ।
ତା ମଧ୍ୟେ ଅଗଣା ଏକ ଦୁଆର ଗୋଟିଏ
ଏମନ୍ତେ ଜାଣ ଅଛଇ ତହିଁରେ କୋଟିଏ ।
ଅସୁର ଅସୁରୀ ତହିଁ ନାହିଁ ଯେ ସାଗର
ଉଚ୍ଚରେ ଯେ ଶତ ହାତ କେବଣ ଅସୁର ।
କେବଣ ଅସୁର ଗୋଟି ଅଟେ ବଂଶହାତ
କେବଣ ଅସୁର ଗୋଟା ମୋଟେ ସାତହାତ ।
କାହାର ଶିର ମେଘରେ ଲଗିଅଛି ଯାଇଁ
କେହି ପାଞ୍ଚଶତ ହାତ ଉଚ୍ଚରେ ହୁଅଇ ।
କେହି ବା ଷାଠିଏ ହାତ କେହି ବା ପଚାଶ
କେହି ବା ତିରିଶ ହାତ କେହି ବା ଗୁଳିଶ ।
କେହି କେହି ଉଚ୍ଚ ନୋହି ଦିଶନ୍ତି ବାଙ୍ଗରା
କେଉଁ ଦାନବ ଗୋଟା ଯେ ଅଟଇ ଠାଙ୍ଗରା ।
କାହାର କେଶ ଉଡ଼ଇ ହୋଇ ଫରହର
କାହାର କେଶ ଲଖୁରା ଅତ୍ୟନ୍ତ ପ୍ରଖର ।

କାହାର ମୁଖ ବିକଟ ଭୟଙ୍କର ଅତି
କାହା ଚକ୍ଷୁ ରଙ୍ଗବର୍ଣ୍ଣ ଓଷାରଆ ଗୁନ୍ଥି ।
କାହାର ନଖ ମୁନଆ ବଡ଼ ବଡ଼ ଗୋଡ଼
କାହାର ଆଖି ଦୁଇଟା ଦିଶଇ କୋରଡ଼ ।
କାର ବଡ଼ ବଡ଼ ଦାନ୍ତ ଦିଶଇ ପଞ୍ଜରା
କାହା ନାକ ଅତି ଦୀର୍ଘ ଗେଣ୍ଡା ପ୍ରାୟ ଚୂଡ଼ା ।
କାହାର ଜଙ୍ଘ ମାଂସଳ ରମ୍ଭା ପ୍ରାୟ ସ୍ଥୂଳ
ଶିରମୟ କାହା ଜଙ୍ଘ ଦିଶେ ବିକଟାଳ ।
ସେତେକ ଅସୁରୀ ସେହି ରାଜ୍ୟରେ ଅଛନ୍ତି
କି ବର୍ଣ୍ଣିବି ତାଙ୍କ ରୂପ ଆଗୋ ହେମବତୀ ।
କେହି କେହି ଘୋରରୂପା ବିକଟଦଶନା
କେହି ମହାଭୟଙ୍କରୀ କୋଟର ନୟନା ।
କେହି କାଳୀ କେହି ଗୋରୀ କେହି ବା ଦାନ୍ତୁରୀ
କାହାର ନାସିକା ବଡ଼ ଅତି ଅସୁନ୍ଦରୀ ।
ସମସ୍ତେ କାମରୂପିଣୀ ଅଟନ୍ତି ନିର୍ଭୟା
ଜାଣନ୍ତି ସେ ନିଶାଚରୀ ନାନାରୂପେ ମାୟା ।
କେତେବେଳେ ଅସୁନ୍ଦରୀ ସୁନ୍ଦରୀ ହୁଅନ୍ତି
ମନୁଷ୍ୟ ଆଦି ସକଳ ଜୀବ ସେ ଭକ୍ଷନ୍ତି ।
ଅତି ଦାରୁଣ ପ୍ରକୃତି ଅଟେ ତାହାଙ୍କର
କ୍ଷଣକେ ଭ୍ରମି ପାରନ୍ତି ଜାଣ ତିନପୁର ।
ଯେମନ୍ତେ ଅସୁର ଜାଣ ତେମନ୍ତେ ଅସୁରୀ
ପାଞ୍ଚକୋଟି ବିଲଙ୍କାରେ ଜାଣ ଅସ୍ତ୍ରଧାରୀ ।
ଦଶକୋଟି ଅଶୁଆର ଅର୍ବୁଦେ ରାଉତ
ସାଗରେ ମାହୁନ୍ତ ତହିଁ ବୀର କୋଟି ଶତ ।
ମହାବୀର ସେନାପତି ପଦ୍ମେ ପଦ୍ମେ ଜାଣ
ମଲ୍ଲ ମହାମଲ୍ଲ ତହିଁ ଅନେକଶତ ଜଣ ।
ଲକ୍ଷଶିର ରାଣୀ ନାମ ଅଟେ ଖୁରଣସୀ
ଲକ୍ଷେ ପରିବାରୀ ଖଟିଥାନ୍ତି ଦିବାନିଶି ।
ଲକ୍ଷେକ ଚାମର ତାର ଦେନି ଲକ୍ଷ ଦଣ୍ଡ
ଲକ୍ଷେ ପତାକା ଉଡ଼ଇ ଲକ୍ଷେ ପାରିଦଣ୍ଡ ।
ଲକ୍ଷେକ ଛତ୍ର ତାହାର ଶ୍ୱେତ ପୀତ ନୀଳ
ମେଘ ସ୍ପରଶ କରଇ ଜଗତର ଶୂଳ ।
ସୁଧର୍ମା ସଭାରୁ ତାର ସଭାଗୋଟି ବଡ଼
ଦୟାଧର୍ମ ନାହିଁ ତହିଁ ସମସ୍ତେ ଯେ ଗୁଢ଼ ।
ଏକ ରାଣୀରୁ ତାହାର ଆନ ରାଣୀ ନାହିଁ
ପତିବ୍ରତା ରମଣୀ ସେ ସାରୁ ଗୁରୁମୁହିଁ ।

ଦୁଇପୁତ୍ର ଖୁରଣସୀ ଗର୍ଭୁ ଉତପତି
ପ୍ରଥମ ପୁତ୍ର ଜନମି ପଡ଼ନ୍ତେଣ କ୍ଷିତି ।
ତାହାର ସହସ୍ର ମୁଣ୍ଡ ହୋଇଲା ତକ୍ଷଣେ
ରାବ ଦିଅନ୍ତେ କମ୍ପିଲେ ସ୍ୱର୍ଗେ ଦେବଗଣେ ।
ବାସୁକୀ ନାଗରାଜାର ଫଣା ଗଲା ଲଇଁ
ଦଲ ଦଲ ହୋଇ ଟଳେ ଲସିଗଲା ଭୂଇଁ ।
କଲ କଲ ନାଦେ ନଦୀ ବଢ଼ିଲେ ପ୍ରବଳେ
ଗିରି ପ୍ରମାଣେ ଲହରୀ ଉଠେ ସିନ୍ଧୁ ଜଳେ ।
କୂଳକୁ ଲଙ୍ଘି ଜୁଆର ଅଇଲାକ ମାଡ଼ି
କେତେ ଜଳଜନ୍ତୁ ମଲେ ଶୁଖିଲାରେ ପଡ଼ି ।
ପର୍ବତ ଶୂନ୍ୟକୁ ଉଠି ପଡ଼େ ଆସି ତହିଁ
ଅନ୍ତରୀକ୍ଷରେ ଉଲ୍କା କଲେକ ଲଢ଼ଇ ।
ଗୃହଁ ଗୃହଁ ଦଶଦିଗେ ଘୋଟିଲା କୁହୁଡ଼
ବେଳକୁ ବେଳ କୁମର ଘୁଡ଼େ ଘୋରରଡ଼ ।
ପ୍ରଳୟ ନିଘାତ ପ୍ରାୟ ଶୁଭଇ ତା ସ୍ୱର
ଦେବେ ଭାବିଲେ ପ୍ରଳୟ ହୋଇବ ଏଥର ।
ଏମନ୍ତ ବେଳେ ସଭାରେ ଥିଲେ ବୃହସ୍ପତି
ବାସବକୁ ବୋଇଲେ ହେ ଶୁଣ ଶଚୀପତି ।
ବଡ଼ ପ୍ରତାପୀ ହୋଇବ ଲକ୍ଷଶିର ପୁଅ
ଦୁଷ୍ଟପଣେ ତିନପୁର କରଇ ସେ ଜୟ ।
ମତ୍ତଗର୍ବେ କାହାରିକି ନ ମାନିବ ସେହି
ବାପଠାରୁ ଛଡ଼ାଇଣ ନେବ ସେହି ମହୀ ।
ରାବ ଦେବାରୁ ତା ନାମ ହୋଇବ ରାବଣ
ସବୁ ଦେବତା ଖଟିବେ ତାହାର ଚରଣ ।
ଏମନ୍ତ ଶୁଣି ବାସବ ମୁଖ ଗଲା ଶୁଖି
ଏଥୁ ଅନନ୍ତରେ ଭୃଗୋ ଶୁଣ ଚନ୍ଦ୍ରମୁଖୀ ।
ପୁତ୍ର ମୁଖ ଦେଖି ରାଜା ଆନନ୍ଦ ହୋଇଲା
ରିଷ୍ଟ ଖଣ୍ଡନ ନିମନ୍ତେ ସୁନାଦାନ ଦେଲା ।
ଧାଈ ପରିବାରୀଙ୍କି ସେ ଦେଲାକ ବଧାଇ
ମୃଦୁସୁଲୀଏ ବଜାଇ ଘୁମୁରେ ଜଣାଇ ।
ହେ ମହିମା ପୁଣି ରାଣୀ ଗର୍ଭ ଜାତ ପୁତ୍ର
ବଡ଼ ସୁନ୍ଦର ନିଶିରା ଷଡ଼ଗୋଟି ନେତ୍ର ।
ଶୁଣି ରାଜନ ସଭାରୁ ଗଲା ବେଗେ ଧାଇଁ
ପୁତ୍ରକୁ ଦେଖି ଆନନ୍ଦେ ଦେଲାକ ବଧାଇ ।
ଶୁକ୍ର ମନ୍ତ୍ରୀକି ଡକାଇ ଆଣିଲା ରାଜନ
ବୋଇଲା ହେ ଗୁରୁ ହେଲେ ଯୋଡ଼ିଏ ନନ୍ଦନ

ପ୍ରଥମ ପୁତ୍ରର ଗୁରୁ ସହସ୍ରକ ଶିର
ଜନମ ବେଳେ ରାବଣ ସେହି ବାର ବାର ।
ଦ୍ୱିତୀୟ ପୁତ୍ର ସୁନ୍ଦର ତିନଗୋଟି ଶିର
ତ୍ରିଶିରଣ ନାମ ଗୁରୁ ଦିଅ ଦୁହିଁଙ୍କର ।
ଗଣନା କରି କହିବା ହେଉ କର୍ମଫଳ
ଶୁଣିଣ ଶୁକ୍ର ବୋଇଲେ ଶୁଣ ମହୀପାଳ ।
ସହସ୍ର ଶିର ରାବଣ ଜ୍ୟେଷ୍ଠପୁତ୍ର ନାମ
ଯମର ଉପରେ ସେହି ହେବ କାଳସମ ।
ବଳବନ୍ତ ପଣେ ଜାଣ ସାଧିବ ଏ ମହୀ
ଦୁଷ୍ଟପଣ ଦେଖି ଡରେ ନ କହିବେ କେହି ।
ମତ୍ତଗର୍ବେ ଦେବତାଙ୍କୁ ଖଟାଇବ ପାଦେ
ମହାପ୍ରତାପୀ ହୋଇବ ରଖିଥିବୁ ହୃଦେ ।
ଯେବେ ଏହାଙ୍କୁ ତୁ ମାରି ପକାନ୍ତୁ ଏ ବେଳେ
ତେବେରେ ବାବୁ ରହନ୍ତା ପୁତ୍ର ତୋହରକୁଳେ
ଏହା ଯୋଗୁଁ ବଂଶ ନାଶ ହୋଇବ ତୋହର
ପିଙ୍ଗଳ ବରନ ଦିଶେ ନୟନ ଏହାର ।
ଏହାଯୋଗୁ ଏ ଲଙ୍କା ଦେଶ ନାଶ ଯିବ
ଲୁହାମଇ ଗୋଠ ଏହି ନଗରେ ବୁଲିବ ।
ଖାଲ ଡ଼ିପ ସମତୁଲ ହେବ ଏହା ଯୋଗୁ
ସର୍ବଦା ଏ ଅହଙ୍କାରେ ଥିବ ପୂର୍ବଭାଗ୍ୟ ।
ଦ୍ୱିତୀୟ ପୁତ୍ରର ନାମ ହୋଇଲା ତ୍ରିଶିରା
ପୃଥିବୀରେ ବୋଲାଇବ ଏହି ମହାବୀରା ।
ଶୁଭ ଯୋଗରେ ଜନମ ହୋଇଛି ଏ ଶିଶୁ
ବିଦ୍ୟାରେ ପଣ୍ଡିତ ଏହି ହେବ ଭାଗ୍ୟବଶୁ ।
ଧର୍ମବନ୍ତ ଗୁଣବନ୍ତ ହେବ ଏ କୁମର
ଏମନ୍ତ ଶୁଣି ହୋଇଲା ଆନନ୍ଦ ଅପାର ।
ଶୁକ୍ରଙ୍କୁ ବହୁତ ଧନ ରତ୍ନ ନେଇ ଦେଲା
ଗଉରବ କରି ତାଙ୍କ ଚରଣେ ସେବିଲା ।
ଶୁଣ ତୁ ଗୋ ଶାକମ୍ଭରୀ ବୋଲନ୍ତି ଶଙ୍କର
ଲଙ୍କା ଉତ୍ତରକାଣ୍ଡ ରାମାୟଣ ସାର ।
ଶ୍ରୋତା ବକତା ଯେତେକ ପଢ଼ୁରିବା ଲୋକେ
ଅନ୍ତକାଳେ ନ ପଡ଼ିବେ କଦାପି ନରକେ ।
ମଧୁରଠାରୁ ମଧୁର ପଦେ ପଦେ ଜାଣ
ସାମବେଦରୁ ହୋଇଛି ଏ ଗ୍ରନ୍ଥ ବଖାଣ ।
ଅପୁତ୍ରିକ ନାରୀ ଶୁଣି ହେବେ ପୁତ୍ରବତୀ
ମଉତ୍ତ ଦୋଷ ଖଣ୍ଡିବ ରହିବ ସନ୍ତତି ।

ସଂକଳ୍ପ କରିଣ ଯେବେ ଶୁଣିବ ଏ ଗ୍ରନ୍ଥ
ପଢ଼ିବ ଅବା ଯେ ନାରୀ ହୋଇ ଶୁଚିମନ୍ତ ।
ଧନବତୀ ପୁତ୍ରବତୀ ସଉଭାଗୀ ହେବ
ପତିର ସହିତେ ସୁଖେ ଦିନେ ତାର ଯିବ ।
ତରିବ ତାରିବ କୁଳ ଉଦ୍ଧାରିବ ସେହି
ରାମାୟଣ କରେ ଘୋର ବିପଦରୁ ତ୍ରାହି ।
ରାମ ଚରିତ ସୁଜନେ ନ ଛାଡ଼ିବ କ୍ଷଣେ
ରାମ ନାମ ରହୁ କଣ୍ଠେ ଯେବେ ଅନୁକ୍ଷଣେ ।
ରାମ ନାମ ଅମୃତକୁ ନିରନ୍ତରେ ପିଅ
ଅଜର ଅମର ହୋଇ ସୁଖେ ଦିନ ନିଅ ।
କହନ୍ତି ଶଙ୍କର ଯାହା ଶୁଣନ୍ତି ପାର୍ବତୀ
ତହୁଁ ପବିତ୍ର ଆଉର କି ଅଛଇ କ୍ଷିତି ।
ଜୟ ତୁ ଜୟ ତୁ ମାଗୋ ଶାରଦା ବରଦା
ତୋହର ଚରଣେ ମୋର ମନ ରହୁ ସଦା ।
ତୁ ଜଗତମାତ ତୋର ମହିମା ଅନନ୍ତ
ଦୀନ ରତ୍ନଧର ତୋର ପାଦତଳ ଭୃତ୍ୟ ।

—୦—

## ଲକ୍ଷଶିରର ତପସ୍ୟା

ଏଥୁଅନ୍ତେ ହିମବନ୍ତ ରଜାର ଦୁଲଣୀ
ବୋଲନ୍ତି ସେ କରଯୋଡ଼ି ଆହେ ଶୂଳପାଣି ।
କହିବା ଅପୂର୍ବ ଏହି ରାମାୟଣ କଥା
କେମନ୍ତେ କରିଲା ତହିଁ ଦୈତ୍ୟ ଲକ୍ଷମଥା ।
ଶଙ୍କର ବୋଇଲେ ତୁଗୋ ଶୁଣ ସାବଧାନେ
ଅତି ଆନନ୍ଦ ଦନୁଜ ପୁତ୍ର ଦରଶନେ ।
ଦିନୁ ଦିନ ବଢ଼ିଲା ସେ ଶଶିକଳା ପ୍ରାୟ
ମହାନନ୍ଦ ହେଉଥାଇ ସେ ଲଙ୍କାରାୟ ।
ଏମନ୍ତ ଯୁବା ହୋଇଲେ ସେହି ପୁତ୍ର ଦୁଇ
ଅସ୍ତ୍ର ଶସ୍ତ୍ର ବିଦ୍ୟା ଶିଖି ବଳବନ୍ତ ହୋଇ ।
ଗର୍ବ ଅହଙ୍କାର ବହି ଦୁଷ୍ଟ ବୁଦ୍ଧି ହେଲେ
ଗୁରୁ ଗଉରବ ସେହି କିଛି ନ ମାନିଲେ ।
ନିବାତ କବଚ ବଂଶେ ଥିଲା ଏକ ଦୈତ୍ୟ
ହିରଣ୍ୟ କବଚ ନାମେ ମହାବଳବନ୍ତ ।
ତାହାର ଦୁହିତା ନାମ ଅଟେ କୁଣ୍ଡୋଦରୀ
ତା ନିମନ୍ତେ ଲକ୍ଷଶିର ପୁତ୍ରକୁ ସେ ବରି ।
ସହସ୍ର ଶିର ରାବଣ ହେଲା ତାକୁ ବର
ଅସୁର କୁଳେ ସୁନ୍ଦରୀ ପାଉଅଛି ଶୋଭା ।

ରୂପ ଦେଖିଣ ସହସ୍ରଶିରା ହେଲା ତୋଷ
ଦୁହିତା ଦେଇ ଶରଣ ପଶିଲା ରାକ୍ଷସ ।
ଏମନ୍ତେ ସହସ୍ରଶିରା ତାକୁ ବଶ ହୋଇ
ମନ୍ତ୍ରଗଙ୍କେ ବଳେ ପରନାରୀଙ୍କି ହରଇ ।
ଲକ୍ଷେ ରାଣୀ ଆଣି ସେହି ରଖିଲା ମନ୍ଦିରେ
ସୁନ୍ଦ ଉପସୁନ୍ଦ ନାମେ ହେଲେ ସେ ଅସୁରେ ।
ତାହାଙ୍କ କୋଳରେ ଜାତ ଦୁଇଗୋଟି ସୁତା
ଶରସେନା ଖରସେନା ନାମ ଦେଲେ ପିତା ।
ଯୁବତୀ ହୁଅନ୍ତେ ଦେଖି ସେହି ଦୁଇଭାଇ
ବିଚାରିଲେ ଦ୍ୱିଶିରାକୁ ବିଭାଦେବା ନେଇ ।
ଏମନ୍ତ ବିଚାରି ତାକୁ ଘେନିଗଲେ ବର
ବିଭାକରି ଦେଲେ ଦୁହେଁ ସେ ଦୁଇ କୁମାରୀ ।
ଏମନ୍ତ ସେ ଦୁଇଭାଇ ବିଭା ହୋଇ ସୁଖେ
ରହିଲେ ବଳଙ୍କାପୁରେ ପୁର ପାଖେ ପାଖେ ।
ଦୁଇଭାଇଙ୍କର ପୁର ଭିନ୍ନ ଭିନ୍ନ କରି
ତା ମଧ୍ୟରେ ଉପବନ ବଗିଚା ପୋଖରୀ ।
ଏମନ୍ତ ତହିଁ ଆନନ୍ଦେ କରନ୍ତି ବିହାର
ଏଥୁଅନ୍ତେ ପାର୍ବତୀ ଗୋ ଶୁଣ ସମାଚାର ।
ଦିନେ ଲକ୍ଷଶିରା ବସି ଅଛଇ ଆସ୍ଥାନେ
ପିତାମୃତ୍ୟୁ କଥା ତାର ପଡ଼ିଗଲା ମନେ ।
ଭାଳଇ କି କଲି ମୁହିଁ ରାଜ୍ୟଲୋଭେ ପଡ଼ି
ପିତୃବଇରୀ ନ ମାରି ଦେଲି ତାକୁ ଛାଡ଼ି ।
ଧିକ ଧିକ ବଳବୀର୍ଯ୍ୟ ଧିକ ମୋର ପ୍ରାଣ
ଧିକ ଧିକ ଏ ମୋହର ରାଜା ହେବା ପଣ ।
ଆଉ ଏ ଜୀବନେ ମୋର ପ୍ରୟୋଜନ ନାହିଁ
କି ହେବ ମୋହର ଧନ ସମ୍ପତ୍ତି ବା ଥାଇଁ ।
କି ହେବ ମୋହର ଦେହେ ଥାଇ ଅବା ବଳ
କି କରିବ ମୋ ଛାତିରେ ହେଲା ସେହି ଶଲ୍ୟ ।
କି ବୁଦ୍ଧି କରିବି କାହିଁ ପାଇବି ତାହାକୁ
କିଏ କହିବ ପୁଛିବି ଏହା ମୁଁ କାହାକୁ ।
ତିନି ଭୁବନ ଭ୍ରମିଲି ନ କହିଲେ କେହି
ରାଜ୍ୟ ଛାଡ଼ି ତପ ପାଇଁ କରିବଇଁ ମୁହିଁ ।
ଅନାଦି ଅନନ୍ତ ଯେହୁ ସୃଷ୍ଟିର କରତା
ତାହାକୁ ପୁଛିଲେ ଅବା ପାଇବି ବାରତା ।
କେମନ୍ତେ ତାକୁ ଭେଟିବି ସେ ଶୂନ୍ୟ ପୁରୁଷ
କାହାକୁ କହିବ କିଏ ଦେବ ଉପଦେଶ ।
କେମନ୍ତେ ତାହାଙ୍କ ସଙ୍ଗେ ହୋଇବ ମୋ ଭେଟ
ଏମନ୍ତେ ବସି ଭାଳଇ ବହୁଶିରା ଗୂଢ଼ ।
ଅନ୍ନ ପାଣି ନ ରୁଚଇ ନିରତେ ଭାଳଇ
ବିରସ ମୁଖ ଦେଖିଣ କଳପା କହଇ ।
ହେ ଦେବ ଦେବାଧିରାଜ ବଳଙ୍କା ଈଶ୍ୱର
ମନରେ କମ୍ପାଇ କହ ବିରସ ତୋହର ।
ଧନ ଜନ ଗୋପଲକ୍ଷ୍ମୀ ପୂରିଛି ତୋ ପୁରେ
ତୁହି ଏକେଶ୍ୱର ଏକା ବ୍ରହ୍ମାଣ୍ଡ ଭିତରେ ।
ତୁ କାହାକୁ ଡରୁ ତୋର ସମସ୍ତେ ସେବକ
ତୋ କଥା ଆନ କରିବା ପାଇଁ ନାହିଁ ଲୋକ ।
ମନ୍ତ୍ରୀର ବଚନେ ରାଜା କହଇ ଏକାନ୍ତେ
ମୋ ହୃଦେ ଦେବତା ପିତା ଶତ୍ରୁର ନିମନ୍ତେ ।
ନ ସାଧିବି ଯେବେ ମୁହିଁ ପିତାର ବଇରୀ
ନିଶ୍ଚେ ଜାଣ ନ ରହିବ ଜୀବନ ମୋହର ।
ପୁତ୍ର ହୋଇ ପିତାର ମୁଁ କଲି କେଉଁ କର୍ମ
ରାଜ୍ୟ ଲୋଭେ ପଡ଼ି ସିନା ଛାଡ଼ିଲଇଁ ଧର୍ମ ।
ପିତାଙ୍କ ସଙ୍ଗରେ ମୁହିଁ ପଡ଼ିବି ନରକେ
ପଚାରିଲ ନ କହିଲେ କେହି ଇହଲୋକେ ।
ଏଣୁ ମନରେ ବିଚାରି କରିଛି ଏମନ୍ତ
ଯେଉଁ ଦେବ ସୃଷ୍ଟି କର୍ତ୍ତା ଅନାଦି ଅନନ୍ତ ।
ତାହାକୁ ପୁଛିଲେ ଅବା କହିଦେବ ସେହି
କେମନ୍ତେ ତାହାର ଭେଟ ପାଇବଇଁ ମୁହିଁ ।
କାହାକୁ କହିବ କିଏ ଦେବ ଉପଦେଶ
ଜାଣିଥିଲେ ମନ୍ତ୍ରୀବର ଫେଡ଼ ମୋ ସନ୍ଦେଶ ।
ଏମନ୍ତ ନୃପତି ମୁଖୁ ଶୁଣି ମନ୍ତ୍ରୀମଣି
ବୋଇଲା କମ୍ପାଇଁ ରାଜା କରୁଛୁ ଭାଳେଣି ।
ଶୁକ୍ରଙ୍କୁ ତୁ ଗୁରୁ କରି ମହାମନ୍ତ୍ର ନେଉ
ସେ ମନ୍ତ୍ରବଳେ ତାହାକୁ ତୁହି ସିନା ପାଉ ।
ଗୁରୁ ନ କଲେ କାହୁଁ ତୁ ପାଇବୁରେ ବାବୁ
ପାଇଲେ ସିନା ତାହାକୁ ତୁହି ପଚାରିବୁ ।
ନ ପଚାରିଲେ କାହାକୁ କୁହଇ କି କେହି
କହିଲେ ସିନା ଜାଣିବୁ ଅନାଦିକି ତୁହି ।
ଏମନ୍ତ ଶୁଣି ଦଇତ ଶୁକ୍ରଙ୍କୁ ଗଇଲା
ଗନ୍ଧ ପୁଷ୍ପ ଦେଇ ତାଙ୍କ ପାଦପୂଜା କଲା ।
ଆସନେ ବସାଇ ତାଙ୍କୁ ଗଉରବ କରି
ବୋଲଇ ବିନୟେ କରପଦ୍ମ ଯୋଡ଼ିକରି ।

ହେ ଗୁରୁ କହିବା ମୋତେ ଅନାହତ ଭେଟ
କେମନ୍ତ ହେବ ତହିଁକ ପାଉନାହିଁ ବାଟ ।
ହସ୍ତରଲେ ତୁମ୍ଭେ ସିନା ଅଟ ଆମ୍ଭ ଗୁରୁ
ତୁମ୍ଭଠାରୁ ସିନା ସବୁ କଥା ଶିଖିପାରୁ ।
ତୁମ୍ଭେ ନ କହିଲେ କିଏ କହିବ ତା କହ
କା ପାଖକୁ ଗଲେ ମୋର ଫିଟିବ ସନ୍ଦେହ ।
ଦାନବ ମୁଖୁ ଏମନ୍ତ ଶୁଣି ଶୁକ୍ର ଭଣି
ଶାସ୍ତ୍ରଧାରୀବର ତୁ ଦୈତ୍ୟ ଚୂଡ଼ାମଣି ।
ଯାହା ପଚ୍ଚରୁଛୁ ମୋତେ ସେ ତ ଅସମ୍ଭବ
ଅନାହ ସଙ୍ଗତେ କାହୁଁ ତୋର ଭେଟ ହେବ ।
ଯୋଗୀ ମୁନି ନ ପାନ୍ତି ସେ ଅନାହତ ଦେଖା
ଅନନ୍ତ ଅଚ୍ୟୁତ ସେହି ଅରେଖ ଅଲେଖା ।
ଦେବ ଦାନବ ମାନବେ ଅଗୋଚର ସେହି
ଦେଖି ନ ପାରନ୍ତି ତାକୁ ହରିହର ବ୍ରହ୍ମ ।
ବ୍ରହ୍ମାଣ୍ଡ କରତା ସେହି ଆତ୍ମାରୂପେ ଥାଇଁ
କେମନ୍ତେ ଆସଇ ପୁଣି କେମନ୍ତେ ସେ ଯାଇ ।
ତାହାକୁ ରାଜନ ତୁହି ଦେଖିବୁ କେମନ୍ତେ
ଆଚମ୍ବିତ କଥା ଗୋଟା ପଚ୍ଚରୁଛୁ ମୋତେ ।
ଅଭାବକୁ ଅଦୃଶ୍ୟ ଯେ ଭାବକୁ ଯେ ଦୃଶ୍ୟ
ଯୋଗ ସାଧି ମହାଯୋଗୀ ବୋଲନ୍ତି ମହେଶ ।
ଜ୍ଞାନ ଚକ୍ଷୁରେ ତାହାଙ୍କ ରୂପକୁ ଦେଖନ୍ତି
ସେ ମହାଯୋଗୀନ୍ଦ୍ର ତାଙ୍କୁ ଛୁଇଁ ନ ପାରନ୍ତି ।
ଯେ ଯୋଗସାଧନ ବାଟ ଅଟଇ କଠୋର
ତାହା କି କରିପାରିବୁ ତୁ ହୋ ନୃପବର ।
ଏମନ୍ତ ଶୁଣି ବୋଲଇ ବଳଙ୍କା ନୃପତି
ସାଧିବ ସେ ବାଟ ମୋତେ ଦେଖା ତୁ ହୋଯତି
ରାଜାର ଆଗ୍ରହ ଦେଖି ଭୃଗୁମୁନି ସୁତ
ବୋଇଲେ ତୁ ସାବଧାନେ ଶୁଣ ଦେଇ ଚିତ୍ତ ।
ଅମଡ଼ା ମାଡ଼ିବୁ ଯେବେ ଅଜପା ଜପିବୁ
ଅମୁହାଁ । ପବନ ଯେବେ ଉଜାଣି ଟେକିବୁ ।
ଅନାହତ ଘରେ ଯେବେ ରଖିପାରୁ ଚେତା
ବାନ୍ଧି ପାରିବୁ ତୁ ଯେବେ ମନ ଉନମତ୍ତା ।
କାଟି ପାରିବୁ ତୁ ଯେବେ ତ୍ରିଗୁଣ ଦଉଡ଼ି
ଟହ୍ଲି ପାରିବୁ ତୁ ଯେବେ ଇଳାପିଳା ନାଡ଼ି ।

ସୁଷୁମ୍ନା ରନ୍ଧ୍ର ଯେବେ ପାରିବୁ ତୁ ଭେଦ
ଷଡ଼ ଅରିଙ୍କ ମୁଣ୍ଡ ପକାଇବୁ ଛେଦ ।
ବଙ୍କନାଳ ପାଣି ଯେବେ ଟେକିବୁ ଉଜାଣି
ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଥିବେ ପୁଣି ।
ନଶବଦ ଘରେ ଯେବେ ରଖିପାରୁ ମନ
ମନ ରଖିଲେ ପାଇବୁ ସିନା ଚଇତନ ।
ଚଇତନ ପାଇଲେ ଯେ ଇନ୍ଦ୍ରିୟ ରୁନ୍ଧିବୁ
ଇନ୍ଦ୍ର ରୁନ୍ଧିଲେ ଗୁପତ ସନ୍ଧିକି ଭେଦିବୁ ।
ଗୁପତ ସନ୍ଧି ଭେଦିଲେ ଜାଣିବୁ ନା ନାଡ଼
ନାଡ଼ ଜାଣିଲେ ଦଉଡ଼ ଯିବ ସିନା ଛୁଡ଼ ।
ଦଉଡ଼ ଛୁଡ଼ିଲେ କାମ ପଡ଼ିବ ନା ଧରା
କାମ ଧରା ପଡ଼ିଲେଟି ରୁନ୍ଧ ନାକପୁଡ଼ା ।
ନାକପୁଡ଼ା ରୁନ୍ଧି ସିନା ଜପି ଏକାକ୍ଷର
ପାପ ପୁରୁଷଙ୍କୁ ପୋଡ଼ିଦେବୁ ନୃପବର ।
ପୋଡ଼ି ପାରିଲେ ତୁ ସିନା ବୋଲାଇବୁ ଜ୍ଞାନୀ
ଜ୍ଞାନୀ ବୋଲାଇଲେ ସିନା ଅଟେ ଲଭହାନି ।
ଲଭ ହାନି ତୁଟିଗଲେ ଜପିବୁ ଅବନା
ଅବନା ଜପିଲେ ସିନା ପାଇବୁ ଚେତନା ।
ଚେତନା ପାଇଲେ ତହିଁ ଅଜପା ଜପିବୁ
ଅଜପା ଜପିଲେ ଶୂନ୍ୟ ପୁରକୁ ଭେଦିବୁ ।
ଶୂନ୍ୟେ ଶୂନ୍ୟକୁ ମିଶାଇ ଦେଖିବୁ ଯା ଶୂନ୍ୟ
ଶୂନ୍ୟ ଦେଖିଲେ ପାଇବୁ ସିନା ଦିବ୍ୟଜ୍ଞାନ ।
ଏହି ଅନାହତ ଯୋଗ କହିଲି ମୁଁ ତୋତେ
ଗୁରୁଠାରୁ ଜ୍ଞାନ ଯୋଗେ ପାଇଣ ଏମନ୍ତେ ।
ରାଜ୍ୟ ଛାଡ଼ି ଲକ୍ଷଶିରା ଗଲା ତହୁଁ ଚଳି
କାଞ୍ଚନ ଦ୍ୱୀପେ ମିଳିଲା ଯାଇ ମହାବଳୀ ।
ଦେଖିଲା ସେ ସ୍ଥାନଗୋଟି ମହାନିରାଲମ୍ବ
ବସିଲା ଆସନ ମାଡ଼ି କରି ମହାଦମ୍ଭ ।
ପଞ୍ଚ ପାଣି ଖାଇ ଘୋର ତପ ଆରମ୍ଭିଲା
ସହସ୍ର ବରଷ ଏହି ମତେ ବହିଗଲା ।
ସହସ୍ରଶିରା ରାବଣ ହୋଇଲା ନୃପତି
ଶୁଣିଲୁ ତ ଏ ଅପୂର୍ବ ଚରିତ ପାର୍ବତୀ ।
ଏ ବଳଙ୍କା ରାମାୟଣ ସୁଧାମୟ ରସ
ଚନ୍ଦଧର ରାମ ପଦପାଦତଳ ଦାସ ।

## ସହସ୍ରଶିରାର ଦେବଙ୍କ ସହିତ ଯୁଦ୍ଧ ଓ ବରୁଣଙ୍କ ବନ୍ଦୀ

ଏଥୁଅନ୍ତେ କରଯୋଡ଼ ହିମବନ୍ତ ଜେମା
ବୋଇଲେ ହେ ସଦାଶିବ ମୁହିଁ ତୋର ବାମା
ସଂଶୟ ରଖିଣ କିମ୍ପା କହୁଛ ଗୋସାଇଁ
ମଲା କି ନ ମଲା ଦୈତ୍ୟ ତପ ହେଲା ଯାଇଁ ।
ଏ ସଂଶୟ ଦୂର କର ପ୍ରଭୁ କୃପା କରି
ରାମାୟଣ ତବ ମୁଖୁଁ ଶୁଣି ସିଦ୍ଧ ହରି ।
ଗଉରୀ ବଚନ ଶୁଣିଁ ଶଙ୍କର କହନ୍ତି
ତୁ ମୋହର ଅର୍ଦ୍ଧ ଅଙ୍ଗ ଅଟୁ ହୈମବତୀ ।
ତୋତେ କି କପଟ ମୋର ଅଛଇ ଗୋ ଉମା
ସାବଧାନେ ଶୁଣ ତୁଗୋ ହିମବନ୍ତ ଜେମା ।
ସହସ୍ରଶିରା ହୋଇଲା ବଲଙ୍କା ରାଜନ
ତାହାକୁ ମାରିଲେ ଯେବେ ଶ୍ରୀରଘୁନନ୍ଦନ ।
ଶୁଣିଛୁ ତ ଆଦ୍ୟ ପ୍ରାନ୍ତ କରି ସେହି କଥା
ରାମ କାଟି ପକାଇଲେ ସହସ୍ରେକ ମଥା ।
ଲୁହାମଇ ବୁଲାଇଲେ ବଲଙ୍କାରେ ନେଇ
ବଲଙ୍କା ପୋଡ଼ିଲା ଯେଉଁଦିନ ହନୁ ଯାଇଁ ।
ଲକ୍ଷଶିରା ମନ୍ତ୍ରୀ ତାର ସେନାପତିମାନେ
ବଲଙ୍କା ଛାଡ଼ି ରହିଲେ ପାତାଳ ଭୁବନେ ।
ଲୁଚିଲେ ରାମଙ୍କ ଡରେ ଛାଡ଼ି ଘରଦ୍ୱାର
ପୂର୍ବେ ସେ କେବଳ ରହିଥିଲେ କରି ଘର ।
ତାଙ୍କୁ ବଡ଼ ଅନାଦର କରଇ ରାଜନ
ବୋଲଇ ଏମାନେ ବଳହୀନ ବୃଦ୍ଧଜନ ।
ଯେତେବେଳେ ଦଗଦ୍ଧଜେ କଲା ଦୈତ୍ୟପତି
ତାହାଙ୍କୁ ସଙ୍ଗେ ନ ନେଲା ସେହି ଦୁଷ୍ଟମତି ।
ପାତ୍ରମନ୍ତ୍ରୀ ପଣ ସବୁ ନେଲାକ ଛଡ଼ାଇ
ସେନାପତିଙ୍କି ପାଖରେ ନ ଦେଲା ବସାଇ ।
ରାଉତ ମାହୁନ୍ତ ଯେତେଥିଲେ ଯେତେବେଳେ
ଛଡ଼ାଇ ନେଲା ତାହାଙ୍କ ବାଡ଼ ବୃତ୍ତି ବଳେ ।
ତାର ଦୁଷ୍ଟପଣ ଦେଖି ଗଲେ ସେ ପଳାଇ
ପାତାଳେ ଲୁଚି ରହିଲେ ଘରକରି ଯାଇ ।
ଖରଣସୀ ରାଣୀ ଆଗେ କଲେକ ଗୁହାରି
ପ୍ରଜାଙ୍କର କଷ୍ଟମାନ ସେ ସହି ନ ପାରି ।
ବୁଝାଇ କହିଲା ଯାଇଁ ପୁଅକୁ ବହୁତ
ନ ଶୁଣିଲା ମାତା କଥା ପ୍ରତାପୀ ଦଇତ ।
ପାତାଳକେତୁ ତା ଅଜା ବୁଝାଇଲା ଯେତେ
ଅଧିକ କୋପ ବଢ଼ିଲା ଆସି ତାର ଚିତ୍ତେ ।
ମାତାକୁ ବାହାର କରି ଦେଲା ଦୁଷ୍ଟପଣେ
ପାତାଳକେତୁର ବଂଶ ନ ରଖିଲା ଜଣେ ।
ସମସ୍ତେ ପଳାଇଗଲେ ଛାଡ଼ି ସେ ବଲଙ୍କା
ସହସ୍ରଶିରା ରାବଣ ଅଟଇ ନିଃଶଙ୍କା ।
ନୂଆ ନୂଆ ପାତ୍ର ମନ୍ତ୍ରୀ କଲା ବାଛିକରି
ଜିଣିଲା ପୃଥ୍ୱୀରେ ଥିଲେ ଯେତେ ଦଣ୍ଡଧାରୀ ।
ଆକାଶକୁ ଢକେ କଲା ଘେନି ଥାଟ ସୈନ୍ୟ
ଶତଶିରା ନାମେ ହେଲା ଏକଇ ନନ୍ଦନ ।
ମନ୍ତ୍ରୀ ନାମ ସପ୍ତଶିରା ନାତି ବଂଶଶିରା
କମ୍ବୁ ଶମ୍ବୁ ନାମେ ଦୈତ୍ୟ ପୃଥ୍ୱୀକି ସେ ଭାରା ।
ଦ୍ୱିଶିରା ବିଶିରା ଆଦି ମହା ମହା ବୀରେ
ଏହାଙ୍କୁ ଘେନି ପୃଥ୍ୱୀ ଜିଣିଲା ସମରେ ।
ସ୍ୱର୍ଗକୁ ବାହିଲା ଦିନେ ବଲଙ୍କା ଅସୁର
ବହୁତ ଥାଟ ସଙ୍ଗରେ ଅଛଇ ତାହାର ।
ହାତୀ ଘୋଡ଼ା ପାଇକ ଯେ ସେନା ଅସୁମାର
ରାଉତ ମାହୁନ୍ତ ରଥୀ ରଥ ଅସୁମାର ।
ଗୋରୁ ମଇଁଷି ପାଇଲେ ବାଟରେ ଅସୁରେ
ଗୋଟା ଗୋଟା ଧରି ଭକ୍ଷି ଦିଅନ୍ତି ଉଦରେ ।
ଋଷି ମୁନିଙ୍କି ଭେଟିଲେ ଆନନ୍ଦ ହୁଅନ୍ତି
ମାରି ଟିକଟିକ କରି ମାଂସ ଖାଇଯାନ୍ତି ।
ବହୁତ ଅନ୍ୟାୟ କରି ଯାନ୍ତି ବାଟେ ବାଟେ
ପର ନାରୀଙ୍କି ହରନ୍ତି ବଳେ ଧରି ଘାଟେ ।
ଏମନ୍ତେ ସେ ଜମ୍ବୁ ଦ୍ୱୀପ କରି ନାରଖାର
ହିମାଳୟୁ ବାଟେ ଦେଇ ଗଲେ ସ୍ୱର୍ଗପୁର ।

ଉଭେ ଲୋକେ ଘରଦ୍ୱାର ଛାଡ଼ି ପଳାଇଲେ
ବନପର୍ବତ କନ୍ଦର ମଧ୍ୟରେ ଲୁଚିଲେ ।
ଦିଶୁଛନ୍ତି ନିଶାଚର ଭୂତ ପ୍ରେତ ପରି
ଡେଉଁଛନ୍ତି ଆନନ୍ଦରେ ହୁଁ ହୁଁ କାର କରି ।
ଢୋଲ ଦମା ବଜାଘୋଷ ମହୁରୀ କାହାଳୀ
ବାଦ୍ୟନାଦ ଶବଦରେ ସମୁଦ୍ର ଉଛୁଳି ।
ଅସୁରଙ୍କ ମୁଖରବ ଘଡ଼ଘଡ଼ି ଜାଣି
ଆକାଶେ ଥାଇଁ ଜାଣିଲେ ଦେବ ଚକ୍ରପାଣି ।
ସାଜିଲେ ଆପଣା ଆଠ କରିଣ ମୁରାଠ
ମଧ୍ୟ ସ୍ୱର୍ଗରେ ଘେରିଲେ ନ ଛାଡ଼ିଲେ ବାଟ ।
ଚାରି ମେଘକୁ ଯେ ଡାକି ବୋଇଲେ ବାସବ
ପଥର ବରଷି ମାର ଦୁର୍ଦ୍ଦାନ୍ତ ଦାନବ ।
ଅଗ୍ନିଙ୍କ ବୋଇଲେ ପୋଡ଼ପକା ଦୈତ୍ୟଆଠ
ମୋର ସ୍ୱର୍ଗ ଭୁବନକୁ ନ ଛାଡ଼ିବ ବାଟ ।
ଆଦିତ୍ୟଙ୍କୁ ଚାହିଁ ଆଜ୍ଞାଦେଲେ ପୁରନ୍ଦର
ପ୍ରଚଣ୍ଡ କିରଣ ବୃଷ୍ଟି କର ନିରନ୍ତର ।
ପବନକୁ ବୋଇଲେ ତୁ ନ କର ହୋ ହେଳା
ଏକ୍ଷଣି ଆସି କାଟିବେ ଦେବତାଙ୍କ ଗଳା ।
ଯମକୁ ବୋଇଲେ ଦିଅ ମୃତ୍ୟୁକୁ ପଠାଇ
କାଳଦଣ୍ଡକୁ ତୋହର ମାର ହୋ ନିଠାଇ ।
ଏମନ୍ତ ଶୁଣି ଧାଇଁଲେ ଅନଳ ଅନିଳ
ଚାରିଦିଗ ଆଚ୍ଛାଦିଲେ ଘୋଟି ମେଘମାଳ ।
ଘଡ଼ଘଡ଼ି ଚଡ଼ଚଡ଼ି ବିଜୁଳି ମାରିଲ
ନିର୍ଘାତ କରକା ବୃଷ୍ଟି ଅନ୍ତରୀକ୍ଷେ ହେଲ ।
ଅଃଚୃଷ ମୂର୍ତ୍ତି ଧରି ବହିଲ ପବନ
ପ୍ରବଳ ଅନଳ ତେଜ ବ୍ୟାପିଲା ଗଗନ ।
ଆଦିତ୍ୟ କିରଣ ବୃଷ୍ଟି ଘନ ଘନ କଲେ
ଅସୁରମାନେ ଊର୍ଦ୍ଧ୍ୱକୁ ଉଠି ନ ପାରିଲେ ।
ତିମିର ଘୋଟିଲା ପ୍ରାୟ ହୋଇଛି ଅନ୍ଧାର
ଉପରେ ପଡ଼ଇ ଆସି କରକା ପଥର ।
ଜଳଇ ପ୍ରଚଣ୍ଡ ବହ୍ନି ପ୍ରଜ୍ୱଳିତ ହୋଇ
ଲହ ଲହ ଜିଭ କରି ଦୈତ୍ୟଙ୍କୁ ପୋଡ଼ଇ ।
ଗଗନଯାକ ବ୍ୟାପିଛି ହୁତାଶନ ଶିଖା
ପ୍ରଚଣ୍ଡ ପବନ ତାକୁ ହୋଇବାରୁ ସଖା ।
ଖସିଲେ ଦାନବ ଖସେ ଉଲ୍କା ଯେସନ
କେ ପର୍ବତେ କେ ସମୁଦ୍ରେ କେ ମଧ୍ୟ ଭୁବନ ।

ଛିନ୍ନଭିନ୍ନ ହୋଇ ତଳେ ପଡ଼ିଲେ ଅସୁରେ
କେହୁ ମଲେ କେହୁ ମୋହଗଲେ ଭୂମିପରେ ।
କାହା ନାକ ଛିଣ୍ଡିଗଲା କାନ ଗଲା ଛିଡ଼ି
କାହା ଗୋଡ଼ ଭଙ୍ଗିଗଲା ପର୍ବତରେ ପଡ଼ି ।
କେହୁ ବୁଡ଼ିମଲା କେହୁ ଅଇଲା ପହଁରି
କେହୁ ପୋଡ଼ିଗଲା କେହୁ ଅଇଲା ଉବୁରି ।
ଏମନ୍ତେ ଅସୁର ଆଠ ହୁଅନ୍ତେ ନିପାତ
ସହସ୍ରଶିରର ହୃଦେ ହେଲା କୋପ ଜାତ ।
କାୟା ବଢ଼ାଇ ଅସୁର ଆକାଶ ଘୋଟିଲା
ଅଗ୍ନି ଦେବତାକୁ ଯାଇ ଚାପୋଡ଼େ ମାଇଲା ।
ପବନକୁ ମୁଷ୍ଟି ମାରି ଦାନ୍ତ ଦେଲା ଭାଙ୍ଗି
ଆଦିତ୍ୟର ରଥ ଧରି ବଳେ ଦେଲା ଫିଙ୍ଗି ।
ଯମଦେବତା ପାଖକୁ ଅସୁର ଧାଇଁଲା
ଦେଖି ଯମ କାଳଦଣ୍ଡ ମାଇଲା ନିଠାଇ ।
ଛଡ଼ାଇ ନେଲା ଦନୁଜ କାଳଦଣ୍ଡ ଗୋଟା
ଯମକୁ ପିଠନ୍ତେ ପାଦେ ବାଜି ହେଲା ଚେଷ୍ଟା ।
ଯମ ଚେଷ୍ଟା ହେବାଦେଖି କୋପେ ରୁଦ୍ରଗଣ
ଅସୁର ଉପରେ କଲେ ଶୂଳ ବରଷଣ ।
କେ ମାଇଲା ଜଙ୍ଘେ ଶୂଳ କେ ମାଇଲା ଉରେ
କେ ମାରଇ ପୃଷ୍ଠେ କେହୁକୋପେମାରେ ଶିରେ
ପ୍ରତାପୀ ଦାନବ ହସେ ଟହ ଟହ ହୋଇ
ଗୋଟାକ ଉପରେ ଧରି ଗୋଟା କଚୁଡ଼ଇ ।
ଏହା ଦେଖି ପାଶ ପାତି ବସିଲା ବରୁଣ
ପଡ଼ିଲା ବରୁଣ ପାଶେ କଉଣପ ଗଣ ।
ବ୍ୟାଧ ପାଶରେ ପକ୍ଷୀ ପଡ଼ିଲା କି ଆସି
ତେସନେ ଅଚଳ ହୋଇ ପଡ଼ିଲେ ଖସି ।
ମୁଣ୍ଡମାଳ ଗିରିଶୃଙ୍ଗ ପ୍ରାୟେ ବିରାଜଇ
ଆକାଶ ମାର୍ଗରେ ଦୈତ୍ୟ ଖସିଣ ଆସଇ ।
ବିନ୍ଧ୍ୟ ପରବତ ଶିଖେ ପଡ଼ିଲା ଦାନବ
ଘନ ଘନ ଗରଜଇ ପାଇ ପରାଭବ ।
ଶୃଙ୍ଗ ଭଙ୍ଗିଗଲା ଗିରି ଦିଶଇ ଲାଣ୍ଡିଆ
ଭାର ସହି ନ ପାରି ସେ ହେଲା କୁଆଭୁଆ ।
ବାରହାତଯାଏ ଭୂମି ମଧ୍ୟେ ଗଲା ଲସି
ବିନ୍ଧ୍ୟ ପରବତ ଦଶା ଦେଖି ସୂର୍ଯ୍ୟ ହସି ।
ଭାଳିଲେ ଏ ଗିରି ମୋତେ ନ ପାରଇ ସହି
ଗତିରୋଧ କରିବାକୁ ଉଚ୍ଚରେ ବଢ଼ଇ ।

ଦାନବ ଘାତରେ ଶୃଙ୍ଗଯାକ ଗଲା ଝଡ଼ି
ଏବେ ଆକାଶକୁ ଆଉ ନ ପାରିବ ଚଢ଼ି ।
ପଡ଼ି ସେ ଦାନବ କୋପେ ହେଲା ପ୍ରଜ୍ୱଳିତ
ଜଳନ୍ତା ଅନଳେ ଯେହ୍ନେ ଢ଼ାଳିଦେଲେ ଘୃତ ।
ବରୁଣ ପାଶକୁ ଧରି ଛିଣ୍ଡାଇ ପକାଇ
ଶତେକ ଯୋଜନ ଯାଏ କାୟାକୁ ବଢ଼ାଇ ।
ଧାଇଁଲା ସେ ରାହୁପ୍ରାୟ ଅନ୍ତରୀକ୍ଷ ଘୋଟି
ଦେଖି ପୁରନ୍ଦର ଶିରେ ବଜ୍ର ଧରି ପିଟି ।
ଝଡ଼ି ପଡ଼ିଲା ସେ ବଜ୍ର ନ ଭେଦିଲା ତଳେ
ଐରାବତ ଗଜଦନ୍ତ ମାଇଲାକ ବଳେ ।
ଯେଉଁ ଦନ୍ତେ ହିମାଳୟ ଗିରି ଗଲା ଫୁଟି
ତିନଧାର ହୋଇ ଗଙ୍ଗା ବହିଲେ ପ୍ରକଟି ।
ସେ ଦନ୍ତ ଅସୁର ଦେହେ ବାଜିଗଲା ଭାଙ୍ଗି
ଗର୍ଜଇ ଅସୁର ବେଳୁ ବେଳ ଯାଇଁ ରାଗି ।
ଗଜଯୋର ପାହୁଲକୁ ବୁଲାଇଲା ଧରି
ଛେଡ଼େ ବଡ଼ ଗଜ ଗୋଟା ଭ୍ରମେ ଚକ୍ର ପରି ।
ବୁଲାଇ ବୁଲାଇ ଦୈତ୍ୟ ଫିଙ୍ଗି ଦେଲା ରାଗେ
ବାସବ ଦେବତା ତହୁଁ ଡେଇଁଗଲା ବେଗେ ।
ଗଜବର ସମୁଦ୍ରରେ ପଡ଼ିଲାକ ଯାଇଁ
ଆତଙ୍କେ ଡାକିଲା ମୋତେ ରଖ ଶୂଳସାଇଁ ।
ଗଜର ଆତଙ୍କ ଆମ୍ଭେ ଜାଣି ଯୋଗବଳେ
ତ୍ରିଶୂଳ ନେଇ ପୋତିଲୁ ସମୁଦ୍ରର ଜଳେ ।
ଅଗାଧ ଅପାର ଯେଉଁ ଘୋର ପାରାବାର
ଆମ୍ଭ ତ୍ରିଶୂଳକୁ ଅଧ ହେଲା ସେହି ନୀର ।
ବାରଯୋଜନ ଉପ୍ସର୍ଗ ଉର୍ଦ୍ଧ୍ୱକୁ ଉଗୁଳ
ପଡ଼ିଲା ତ୍ରିଶୂଳେ ଯାଇଁ ଗଜ ମହାବଳୀ ।
ସୁସ୍ଥ ହୋଇ ଛିଡ଼ା ହେଲା ତ୍ରିଶୂଳ ଉପରେ
ବାସବ ଦେବତା ତହୁଁ ପଳାଇଲା ଡରେ ।
ବରୁଣ ଦେବତା ପୁଣି ପାତିଲାକ ପାଶ
ଦେଖି ପ୍ରତାପୀ ଦଇତ ମନେ ବହି ରୋଷ ।
ମୁଖିଏ ମାରି ବରୁଣ ଦାନ୍ତ ଦେଲା ଝାଡ଼ି
ପାକୁଆ ହସିଲା ଯହୁଁ ଦନ୍ତ ଗଲା ଝଡ଼ି ।
ଦାଢ଼ିକି ଧରି ହଲାଇ ଦେଲା ପୁଣି ରୋଷେ
ମୂର୍ଚ୍ଛାଗଲା ସେ ବରୁଣ ଦାନବର ତ୍ରାସେ ।
କାଖରେ ଯାକିଲା ତାକୁ ପ୍ରତାପୀ ଦଇତ
ଯେସନେ ପିତାର କାଖେ ଥାଇ ଯେ ବାଳୁତ ।
ଦେଖିଣ ଗନ୍ଧର୍ବ ବଳ ଅଇଲେକ ଧାଇଁ
ତେତିଶ କୋଟି ଦେବତା ଏକମେଳ ହୋଇ ।
ଘେରିଗଲେ ଅସୁରକୁ ସାତପୁର କରି
ମଧୁର ଦେଖି ପିମ୍ପୁଡ଼ି ଯେହ୍ନେ ଯାନ୍ତି ଘେରି ।
ମେଘ ବରଷିଲା ପ୍ରାୟ ଅସ୍ତ୍ର ବରଷିଲେ
କେହି ଗଦା ମୁଦୁଗର ଶକତ ମାଇଲେ ।
କୁନ୍ତ ବରଛି ସାବଳ ଯଷ୍ଟି ଛୁରି କାତି
ମାରନ୍ତି ଦେବତାମାନେ ହୋଇ କୋପ ମୂର୍ତ୍ତି ।
କେହି କେହି ଧନୁ ଧରି ବରଷନ୍ତି ଶର
ନାଗପାଶ ଜଳପାଶ ପରିଘ ଆବର ।
ବ୍ରହ୍ମଶର ବିଷ୍ଣୁଶର ଇନ୍ଦ୍ରଶର ଆଦି
କେହି କ୍ଷୁରପ୍ର ତମିର ବାଣରେ ଆଚ୍ଛାଦି ।
ମେଘାଶର ଦୈବତାସ୍ତ୍ର ପବନାସ୍ତ୍ର ମାରି
ଦାନବର ଅଙ୍ଗ ଗୁଣ୍ଡ ଦେଲେ କୋପକରି ।
ମେରୁଗିରି ପ୍ରାୟ ମଧ୍ୟେ ରହିଛି ଦଇତ
ମେଘେ ବୃଷ୍ଟି କରି ଫୁଟି ରୁହନ୍ତି ଯେମନ୍ତ ।
ତେସନ ଦେବତା ମାନେ ଅସ୍ତ୍ରଶସ୍ତ୍ର ମାରି
ସାତଦିନ ସାତରାତି ଅସୁରକୁ ଘେରି ।
ନିସତ ହୋଇ ପଛକୁ ଅପସରି ଗଲେ
ପଦ୍ମବନ ମଧ୍ୟେ ମତ୍ତ ମାତଙ୍ଗ ପଶିଲେ ।
ଯେସନେ ପାଦରେ ଦଳି ଶୁଣ୍ଢରେ ମନ୍ଥଇ
ପବନ ଯେସନେ ରମ୍ଭା ବୃକ୍ଷକୁ ଭାଙ୍ଗଇ ।
ତେସନେ ସେ ମହାବଳ ଦାନବ ଧାଇଁଲା
ପାଦେ ହସ୍ତେ ଦେବତାଙ୍କ ଠାଟକୁ ମନ୍ଥିଲା ।
ପଳାଇଲେ ଦେବଗଣ ନ ରହିଲେ ଆଗେ
ସିଂହ ସମ୍ମୁଖରେ ଯେସନ ନ ରହନ୍ତି ମୃଗେ ।
ଗୋଡ଼ାଇ ଦାନବ ପଛେ ମାରଇ ଗୋଇଠା
ତେତିଶକୋଟି ଦେବଙ୍କୁ କଉଣସି ଗୋଟା ।
ମାରି ଘଉଡ଼ାଇ ଦେଲା ଗଲେ ସ୍ୱର୍ଗ ଛାଡ଼ି
ବରୁଣକୁ ମାରି ଦୈତ୍ୟ ଦେଇ ଘୋରରଡ଼ି ।
ବିଲଙ୍କା ଭୁବନେ ଆସି ମିଳିଲା ତୁରିତେ
ବାଟରେ ଭେଟିଲେ ତାକୁ କେତେକ ଦଇତେ ।
କେହି ସ୍ଥୋଟା କେହି କଣା କହି କୁଜାହୋଇ
ବିଲଙ୍କାରେ ଦରଶନ କଲେ କଷ୍ଟେ ଯାଇଁ ।
କେ ନାକଖଣ୍ଡିଆ ହୋଇ ମିଳିଲାକ ତହିଁ
ଘୁଷୁରି ଘୁଷୁରି ଯାଏ ପଙ୍ଗୁ ହୋଇ କେହି ।

ହାତ ଗୋଡ଼ ଖଣ୍ଡିଆ କେ ନ ପାରଇ ଚାଲି
କେ ପର୍ବତେ ଛେଚିହୋଇ ବୋଲେ ମଲି ମଲି
କାହା ଦାନ୍ତ ଝଡ଼ି ଯାଇ ହୋଇଛି ପାକୁଆ
କେହ୍ନ ବିରୂପ ହୋଇ ସର୍ବାଙ୍ଗ ଖଣ୍ଡିଆ ।
ଆସ୍ଥାନ ତଳେ ଏମନ୍ତ ଦେଖି ଅସୁରଙ୍କୁ
ବନ୍ଧଘରେ ବନ୍ଧକରି କୋପେ ବରୁଣକୁ ।
ଆସ୍ଥାନେ ବସିଲା ଯାଇ ପ୍ରତାପୀ ଦଇତ
ମହିମା ମହିମା କହି ଜଣାଇଲା ଦୂତ ।
ହେଦେବ ତୋହରଥାଟେ ଥିଲେ ଯେତେବୀର
ଅଧେ ଆସିଲେ ନାହାନ୍ତି ଅଧିକ ଆବର ।
ଫରକାର ପଏକାର ପାଇକେ ନାହାନ୍ତି
ଗଜ ଅଶ୍ୱ ରଥ ରଥୀ ଅଳପ ଅଛନ୍ତି ।
ଯେ ଅଛନ୍ତି ସେ ସମସ୍ତେ ଅଙ୍ଗହୀନ ହୋଇ
ଚଳି ନ ପାରନ୍ତି ତୁହେ ଦେଖ ଲଙ୍କସାଇଁ ।
ଏମନ୍ତ ଶୁଣି ସହସ ଶିରକୁ କମ୍ପାଇ
ବୋଲଇ ଦେବତା ଆରେ ଯିବ ତୁମ୍ଭେ କାହିଁ
ଇନ୍ଦ୍ରପୁର ଖୋଜି କାଲି ମାରିବି ସବୁନ୍ତ
ସ୍ୱର୍ଗର ପଦାର୍ଥ ଯାକ ଆଣିବି ଏଥାନ୍ତ ।
ଦେଖିବା ରଖିବ ଆସି କେ ବାପ ତୁମ୍ଭର
ଏମନ୍ତ କହି କୋପରେ ହୋଇ ଥରହର
ଦୁଇସହସ୍ର ନୟନ କଲା ରଙ୍ଗବର୍ଣ୍ଣ
ଉଦେ କି ହୋଇଲେ ଦୁଇ ସହସ୍ର ତପନ ।
ଉଦୟ ଗିରିରେ ଏକାବେଳେ ହେଲେ ଉଦେ
ଦେଖି ଭୟ ଜାତ ହେଲା ଅସୁରଙ୍କ ହୃଦେ ।
ଡରି ପଳାଇଲେ କେହ୍ନ ନ ରହିଲେ ଆଗେ
ବ୍ରହ୍ମାଙ୍କ ପୁରକୁ ଦେବେ ପଳାଇଲେ ବେଗେ
କହିଲେ ବ୍ରହ୍ମାଙ୍କୁ ଯାଇଁ ଯୁଦ୍ଧ ସମାଚାର
ଶୁଣି ତକ୍ଷଣେ ଅଇଲେ ଉଠି ବେଦବର ।
ବୋଇଲେ ଚାଲ ଦୈତ୍ୟକୁ ସନ୍ତୋଷ କରିବା
ଭଲ ଭଲ ରତ୍ନ ଘେନି ଉପହାର ଦେବା ।
ଧନ ଦରବେ ତୋଷିବା ଦାନବର ମନ
ଏମନ୍ତ ଭାଳି ଦେବଙ୍କୁ ଘେନି ପଦ୍ମାସନ ।
ବିଲଙ୍କା ପୁରେ ମିଳିଲେ ଦନ୍ତେ କୁଟା ଘେନି
ଆସ୍ଥାନରେ ବସିଅଛି ଦେଖି ପଦ୍ମଯୋନି ।
ତଳେ ଉଭାହୋଇ ଧୀରେ ବୋଇଲେରେବାପ
ତ୍ରୈଲୋକ୍ୟନାଥ ତୋର ବଳ ହେ ଅମାପ ।

ତେତିଶକୋଟି ଦେବତା ତୋହର ଶରଣ
ଦେଖ ରହିଛନ୍ତି ଦନ୍ତେ ଘେନିଣ ତୃଣ ।
ରଖିଲେ ତୁ ରଖ ବାବୁ ମାଇଲେ ତୁ ମାର
ବ୍ରହ୍ମାର ମୁଖୁ ଏମନ୍ତ ଶୁଣିଣ ଅସୁର ।
ବୋଇଲା ହେ ଚତୁର୍ମୁଖ ବଚନ ତୁ ଚଉ
ତେତିଶ କୋଟି ଦେବତା ବେଢ଼ି ପୁଣି ମୋତେ
ସାତଦିନ ସାତରାତି ମାଇଲେ ନଠାଇ
ମୋ ଥାଟ ମାଇଲେ ମେଘ ପବନ ପଠାଇ ।
ଏତେଡ଼ ଦୁଷ୍ଟପଣ ଧରି ଅଛନ୍ତି କେମନ୍ତେ
ଧର୍ମ କର୍ମ ବିଚାରହିଁ ନାହିଁ କାହା ଚିତ୍ତେ ।
ଅମୃତଲଡ଼ୁ ଖାଇ ଏ ବୋଲନ୍ତି ଅମର
ଗର୍ବ କରିଛନ୍ତି ମୃତ୍ୟୁ ନାହିଁ ଯେ ଆମ୍ଭର ।
ମୃତ୍ୟୁର ଉପରେ ମୃତ୍ୟୁ ଅଛି ବୋଲି ଜଣେ
ନ ଜାଣନ୍ତି ଆଜଯାଏ ଏହି ଦେବଗଣେ ।
କାଳ ଦେବତା ଉପରେ ମୁହିଁ ଜାଣ କାଳ
ମୋର କରଗତ ଯମ ଦେବତାର ବାଳ ।
ମୁଁ ଯାହାକୁ ରଖିବି ସେ ହୋଇବ ଅମର
ମୁଁ ମାଇଲେ ମରିବ ସେ ଜାଣ ବେଦବର ।
ମୋ ଆଗରୁ ଯାଇ କାହିଁ ଲୁଚିବ ବା କିଏ
ଚଉଦ ଭୁବନ ମଧ୍ୟେ ମୁହିଁ ଏକା ରାଜେ ।
ଏମନ୍ତ କହି କୋପରେ ଚାହିଁାନ୍ତେ ତରାଟି
ଡରେ ଦେବେ ମୂର୍ଚ୍ଛାଯାଇ ଭୂମିପରେ ଲୋଟି ।
ବେଦବର ବୋଇଲେ ତୁ କୋପ ଶାନ୍ତକର
ତୋହର କୋପରେ ନାଶ ଯିବ ଇନ୍ଦ୍ରପୁର ।
ଏ ସ୍ଥିର ଦେବତା କାହୁଁ ହେବେ ରହମାନ
ଏହାଙ୍କ ଦୋଷକୁ ବାବୁ ମନରେ ନ ଘେନ ।
ବ୍ରହ୍ମାବଚନେ ଅସୁର କୋପ କଲା ଶାନ୍ତ
ବୋଇଲା ତୋହର ବୋଲେ ଯାଆନ୍ତୁ ଏଥାନ୍ତ
ଏମନ୍ତ ଶୁଣି ବୋଇଲେ ପୁଣି ବେଦବର
ଆବର କଥାଏ ଶୁଣ ବିଲଙ୍କା ଈଶ୍ୱର ।
କକେ ବରୁଣକୁ ଆଣି କରିଛୁ ତୁ ବନ୍ଦୀ
ଏହାକୁ ତୁ ଛାଡ଼ିଦିଅ ବୋଲୁଁ ଆମ୍ଭେ କଧି ।
ଯାହା ତୁ କହିବୁ ଆମ୍ଭେ କରିବୁ ନା ତାହା
ଶୁଣି ଟହ ଟହ ହୋଇ ହସେ ଦୈତ୍ୟ ନାହା
ଯେବେ ହୋ ବୋଇଲୁ ବ୍ରହ୍ମା କରିବା ତୋକଥା
ମୋର ଥାଟକୁ ବଞ୍ଚାଇ ଦିଅ ଚଉମଥା ।

ଖଣ୍ଡିଆ ଖାବରା କଣା ଟେଣ୍ଟା କୁଜା ଯେତେ
ଭଲକରି ଦେଇ ଯେବେ ପାରିବୁ ତୁ ମୋତେ ।
ତେବେ ସିନା ଆମ୍ଭେ ଦେବା ବରୁଣକୁ ଆଣି
ଏମନ୍ତ ଶୁଣି ବୋଇଲେ ପୁଣି କୁଶପାଣି ।
ଆଚ୍ଛା ଆମ୍ଭେ ତୋ ଆଣ୍ଟକୁ ଭଲକରି ଦେବା
ପୂର୍ବେ ଯେମନ୍ତେ ସେ ଥିଲେ ତେମନ୍ତ କରିବା ।
ସହସ୍ର ଶିର ବୋଇଲା ଦେଖିବା ନା ଆଗେ
ଶୁଣି ବାସବକୁ ବ୍ରହ୍ମା ବୋଇଲେ ତୁ ବେଗେ ।
ଅମୃତ ସିଞ୍ଚ ବଞ୍ଚାଇ ଦିଅ ତାର ଆଣ୍ଟ
ସ୍ୱର୍ଗ ବୈଦ୍ୟଙ୍କୁ ବୋଇଲେ ଅନାଦିର ଗୁଣ୍ଠ ।
ଔଷଧ ଦେଇ ତୁ ଭଲ କରୁ କିନା ବେଗେ
ଏମନ୍ତ ନ କଲେ ରହି ପାରିବା କି ସ୍ୱର୍ଗେ ।
ତତକ୍ଷଣେ ଧନ୍ୱନ୍ତରି ମହୌଷଧ ଦେଇ
ଅସୁରଙ୍କୁ ଭଲ କରି ଦେଲେ ତହିଁ ଯାଇ ।
ପୂର୍ବପରି ଦେହ ଧରି ଅଇଲେ ଅସୁରେ
ଭେଟିଲେ ସହସ୍ରଶିର ଦଇତ ପ୍ରମୁଖରେ ।
ମଣିମା ମଣିମା କହି କଲେ ନଉଗ୍ରାଳ
ଦେଖି ମନରେ ଆନନ୍ଦ ହୋଇ ମହାବଳୀ ।
ବୋଇଲା ହେ ବେଦବର କଥା ଏ କରିବୁ
ଦେବତାଙ୍କୁ ଘେନି ନିତ ଦର୍ଶନ ତୁ ଦେବୁ ।
ସଭାରେ ମୋ ଗୁଣ ଗାଇ ତୋଷୁଥିବୁ ମୋତେ
ତେବେ ଯାଇ ବରୁଣକୁ ଆଣି ଦେବି ତୋତେ ।

ଏ କଥାରେ ବେଦବର କଲେ ସନମତ
ବରୁଣଙ୍କୁ ମୁକୁଳାଇ ଦେଲାକ ଦଇତ ।
ଦେବତାଙ୍କୁ ସଙ୍ଗେ ଘେନି ଗଲେ ବେଦବର
ଶୁଣନ୍ତି ପାର୍ବତୀ ଦେବୀ କହନ୍ତି ଶଙ୍କର ।
ଏ ବିଲଙ୍କା ରାମାୟଣ ରସ ସୁଧାସିନ୍ଧୁ
କୃଷ୍ଣଅଗ୍ରେ ସଦାଶିବ ଆଣି ଏକବିନ୍ଦୁ ।
ପାର୍ବତୀ ଆଗେ କହିଲେ ହୋଇଲା ପ୍ରଚୁର
ପାପ ତମିରକ ଏହିଗ୍ରନ୍ଥ ଭାସକର ।
ନାରୀଏ ଶୁଣିଲେ ପତି ପୁଣ୍ୟବତୀ ହୋନ୍ତି
ସ୍ୱାମୀର ସଙ୍ଗତେ ଅନ୍ତେ ବଇକୁଣ୍ଠେ ଯାନ୍ତି ।
ରାମ ରାମ ଭଜ ତର ସଂସାରରୁ ପ୍ରାଣୀ
ରାମ ନାମ ଭଜ ସୁସ୍ଥ ହୋଇଲା ଧରଣୀ ।
ରାମ ନାମ ଭଜ ହନୁ ହୋଇଲା ଅମର
ରାମ ନାମ ଭଜ ନାରୀ ହୋଇଲା ପଥର ।
ରାମ ନାମ ଭଜ ସୁଗ୍ରୀ ହୋଇଲା ନୃପତି
ରାମ ନାମ ଏକା ଏହି ଜୀବନ ମୁକତି ।
ରାମ ନାମ ଏକା ଜାଣ ପଥର ସଙ୍ଖାଳି
ରାମଙ୍କୁ ନ ଭଜି ମଲା ମହାବଳୀ ବାଳି ।
ରାମଙ୍କୁ ନ ଭଜି ମଲା ଲଙ୍କାର ରାବଣ
ରାମଙ୍କୁ ଭଜି ନୃପତି ହେଲା ବିଭୀଷଣ ।
ରାମଙ୍କୁ ନ ଭଜି ମଲା ବିଲଙ୍କା ନୃପତି
ଚକ୍ରଧର ରାମ ନାମ ଭଜେ ଦିନ ରାତି ।

—o—



## ସହସ୍ର ଶିରର ରାବଣ ସହିତ ଯୁଦ୍ଧ ଓ ମିତ୍ରତା

ପାର୍ବତୀ ବୋଇଲେ ତହିଁ କି କଲା ରାବଣ
ପାଦତଳେ ଖଟାଇଲା ଆଣି ଦେବଗଣ ।
ପୃଥିବୀରେ ବଳବନ୍ତ ନ ଥିଲେ କି କେହି
ବାଳୀ ବଳୀୟାର ଥିଲା ଶୁଣିଅଛି ମୁହିଁ ।
ରାବଣ ସେ ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ତିନି
ଏମନେ ତ ବଳବନ୍ତ ପୃଥ୍ୱୀ ଥିଲେ ଜିଣି ।

କ୍ଷତ୍ରିୟ ରାଜାଙ୍କ ମଧ୍ୟେ ନ ଥିଲେ କି କେହି
ସହସ୍ରଶିର ରାବଣ ସାଧ କଲା ମହୀ ।
ଏଥିରେ ସଂଶୟ ଜାତ ହେଉଛି ଯେ ମନେ
ବୀର କି କେହି ନ ଥିଲେ ପାତାଳ ଭୁବନେ ।
ଏମନ୍ତ ପାର୍ବତୀ ମୁଖୁଁ ଶୁଣି ଶୂଳ ପାଣି
ବୋଇଲେ ଗୋ ଶୁଣ ହେମବନ୍ତର ଦୁଲଣୀ ।

ଦେବେ କନ୍ତ ଆସି ତାର ସଭାରେ ବସନ୍ତ
ନାରଦ ଅଙ୍ଗିରା ଆଦି ଋଷି ମୁନି ସନ୍ତ ।
ଦିନେ ଯେ ନାରଦ ମୁନି ସଭାରେ କହିଲେ
ପାତ୍ର ମନ୍ତ୍ରୀ ଆଦି ସେହି ସଭାରେ ଯେ ଥିଲେ ।
ଆସ୍ଥାନ ଉପରେ ଅଛୁ ସହସ୍ର ରାବଣ
ଏମନ୍ତ ବେଳେ ନାରଦ କଲେକ ଜଣାଣ ।
ଶୁଣିବା ହେଉ ପ୍ରତାପୀ ହଳଙ୍କ ନୃପତି
କାଲଠାରୁ ନ ଆସିବୁ ଆମ୍ଭେ ତୋର କତି ।
ଏମନ୍ତ ଶୁଣି ଅସୁର ବୋଇଲା କାହିଁକି
ନାରଦ ବୋଇଲେ ସଭା ମଧ୍ୟେ ହାତ ଟେକି ।
ରାବଣ ନାମରେ ଅଛୁ ଲଙ୍କାର ଈଶ୍ୱର
ବଡ଼ ପ୍ରତାପୀ ତାହାର ଦଶଗୋଟା ଶିର ।
ଭାଇ ତାର କୁମ୍ଭକର୍ଣ୍ଣ ମହାବଳବନ୍ତ
ପୁତ୍ର ତା ଇନ୍ଦ୍ରକୁ ଜିଣି ନାମ ଇନ୍ଦ୍ରଜିତ ।
ବାଆସ୍ତରି ପୁତ୍ର ତାର ତେର ଶତ ନାତି
ଏକେ ଏକେ ତିନିପୁର ସେ ଜିଣି ପାରନ୍ତି ।
ହର ବରେ ବଳୀୟାର ସେହି ଦଶଶିର
ଉପାଡ଼ିଲା କଇଲାସ ନାମେ ଗିରିବର ।
ବିଷ୍ଣୁ ଚନ୍ଦ ବନ୍ଧ ହେଲା ବାଳି ତାର ବେକେ
ତିନିପୁର ଜିଣିଲା ସେ ପ୍ରତାପୀ ଏକାକେ ।
ତାର ଡରେ ଆମ୍ଭେ ଆଉ ନ ପାରିବୁ ଆସି
ଆସିଲେ ମାରିବ ବୋଲେ ସ୍ୱର୍ଗପୁରେ ପଶି ।
କି କରିବୁ ତାହାକୁ ଯେ ନାହିଁ ପ୍ରତିକାର
ତେଣୁ ସିନା ଜଣାଉଛୁ ତୋହର ଛାମୁର ।
ଏମନ୍ତ ଶୁଣି ହଳଙ୍କା ନୃପତି ବୋଇଲା
ସହସ୍ରଶିର କମ୍ପାଇଁ କଣ୍ଠେ ହସିଲା ।
ଚଉଦ ବ୍ରହ୍ମାଣ୍ଡେ ମୋର କାହାକୁରେ ଡର
ନ ଜାଣେ କି ମୋର ନାମ ସେହି ଦଶଶିର ।
ଅମ୍ବା ଅସୁରକୁ ଡାକି ବୋଲେ କ୍ରୋଧଭରେ
ମୋହର ଶ୍ରୀମୁଖ ଘେନି ଯାଅ ତୁରେ ଖରେ ।
ଦଶଶିରକୁ କହିବୁ ଦନ୍ତେ ଘେନି ତୃଣ
ମୋର ପାଦତଳେ ଆସି ପଶୁ ସେ ଶରଣ ।
ନୋହିଲେ ଯାଇଁ ଉପାଡ଼ି ଆଣିବଇଁ ଲଙ୍କା
ଏମନ୍ତ ବୋଲି ଶ୍ରୀମୁଖ ଲେଖିଲା ନିଃଶଙ୍କା ।
ପ୍ରଥମରେ ଶିଷ୍ଟା ଲେଖି ଲେଖେ ପୁଣି ସ୍ୱସ୍ତି
ମୁହିଁ ଲକ୍ଷଶିର ପୁଅ ବହୁଶିର ନାତି ।

ମୋ ନାମ ସହସ୍ରଶିର ଜାଣ ମୋ ନିଶିର
ପୁତ୍ର ନାମ ଶତଶିର ନାତି ବଂଶଶିର ।
ମୋହର ପ୍ରତାପ ସହି ନ ପାରନ୍ତି କେହି
ଚଉଦ ବ୍ରହ୍ମାଣ୍ଡେ ଏକାବୀର ଜଣେ ମୁହିଁ ।
ଦେବତାମାନଙ୍କୁ ଆଣି ଖଟାଇଛୁ ପାଦେ
ଜାଣି ଜାଣି ଟିକେ ଡର ନାହିଁ ତୋର ହୃଦେ ।
ତୁ ପୁଣି ବିବାଦ କରୁ ମୋ ସଙ୍ଗେ ପାମର
ମରଣକୁ ଭଲେ ମନ ନାହିଁକିରେ ଡର ।
ଏବେ ଏ ଶ୍ରୀମୁଖ ପଢ଼ି ଦନ୍ତେ କୁଟା ଘେନି
ସେହିବୁ ଆସି ଯେବେ ତୁ ମୋର ପାଦ ବେନି
ତେବେ ତୋର ଲଙ୍କାପୁର ରହିଲାଟି ଜାଣ
ନୋହିଲେ ମୁଁ ଉପାଡ଼ିବି ଜାଣ ଏ ମୋ ପଣ ।
ଏମନ୍ତେ ଶ୍ରୀମୁଖ ଲେଖି ଅମ୍ବା ହସ୍ତେ ଦେଲା
ଘେନି ଅମ୍ବାସୁର ତହୁଁ ତୁରିତେ ଚଳିଲା ।
ଲଙ୍କାରେ ମିଳିଲା ଯାଇଁ ଦିବା ଅର୍ଦ୍ଧଠାରେ
ମେଘନାଦ ପାଚେରୀକି ଦେଖେ ଖଣ୍ଡ ଦୂରେ
ତାହାକୁ ଡେଇଁ ସେ ଶୂନ୍ୟମାର୍ଗେ ଗଲା ଚଳି
ସ୍ୱର୍ଣ୍ଣମୟ ଲଙ୍କାପୁର ଦେଖେ ମହାବଳୀ ।
ରାବଣ ଜଗତୀ ଦେଖେ ମଧୁବନ ତୋଟା
ଗହ ଗହ ଲାଗିଅଛୁ ତହିଁ ସଭାଗୋଟା ।
ନରାନ୍ତକ ଦେବାନ୍ତକ ଆଦି ମହାବୀରେ
ବସିଛନ୍ତି ମନ୍ତ୍ରସିଂହ ପ୍ରାପ୍ତେ ସେ ସଭାରେ ।
ଜଗତୀ ଉପରେ ବସି ଅଛଇ ରାବଣ
ଏମନ୍ତବେଳେ ମିଳିଲା ଅମ୍ବା କରି ଠାଣ ।
ବୋଇଲାରେ ଦଶଶିର ଘେନ ତୁ ଶ୍ରୀମୁଖ
ହଳଙ୍କା ରାବଣ ପାଠ ସହସ୍ରଟା ମୁଖ ।
ଏମନ୍ତ ଶୁଣି ରାବଣ ଉଚ୍ଚସ୍ୱରେ ହସି
ବୋଇଲା ଶ୍ରୀମୁଖ ଗୋଟା ପଢନା ବସି ।
ଏସନ୍ତ ଶୁଣି ଅମ୍ବା ଶ୍ରୀମୁଖ ଫିଟାଇ
ପଢନ୍ତେ ସଭାରେ ଦୃଷ୍ଟି ଅଛୁ ତାର ତହିଁ ।
ଶୁଣି ଶୁଣି ରାବଣ ଯେ କୋପେ ହେଲା ରଙ୍ଗ
ଯଷ୍ଟି ପ୍ରହାରେ ଯେମନ୍ତେ ଗର୍ଜଇ ପନ୍ନଗ ।
ତେସନେ ଗର୍ଜନ୍ତେ ଭୟେ କମ୍ପେ ତିନିପୁର
ଚକ୍ଷୁ ରଙ୍ଗବର୍ଣ୍ଣ ବାଳସୂର୍ଯ୍ୟ ପରକାର ।
ବୋଇଲା ନାହିଁର ତୁରେ ଅଧମ ଅଜ୍ଞାନ
ଶ୍ରୀମୁଖକୁ ଘେନ ତୋର ପଳା ଯା ବହନ ।

ନୋହିଲେ ତୋ ଶିର ଖଣ୍ଡ ଖଣ୍ଡ କରିଦେବ
ଏମନ୍ତ କହି ଧଇଲ ମୂର୍ତ୍ତି ଭଇରବୀ ।
ଚନ୍ଦ୍ର ହାସ ଖଡ଼ଗକୁ ଝମକାଇ ଦେଲ
ଦେଖି ଭୟେ ଅମ୍ବାସୁର ତହୁଁ ପଳାଇଲ ।
ସହସ୍ର ଶିରା ଛାମୁରେ ମିଳିଲକ ଯାଇଁ
ଭୟରେ ସର୍ବାଙ୍ଗଯାକ ତାହାର କମ୍ପଇ ।
କେଶବାସ ଅସମ୍ଭାଳ ଦେହଯାକ ଝାଳ
ମୂର୍ଚ୍ଛା ଯାଇଁ ପଡ଼ିଲ ସେ ଆସ୍ଥାନର ତଳ ।
ପାତ୍ର ମନ୍ତ୍ରୀଏ ତାହାକୁ ଚେତା କରାଇଲେ
ଜଳସିଞ୍ଚି ସୁସ୍ଥ କରି ଧରି ବସାଇଲେ ।
ବୋଇଲେ କି ହେଲ କହ ଆରେ ଅମ୍ବାସୁର
ଏମନ୍ତ ଶୁଣି ବୋଲଇ ଶିରେ ଦେଇ କର ।
ହେ ମହିମା କି କହିବ ଗଲି ଆଜ୍ଞା ଘେନି
ପୁରକୁ ଦେଖି ପବନ ହେଲି ଚକ୍ଷୁ ବେନି ।
ମେଘନାଦ ନାମେ ଅଛି ଏକଇ ପାଚେରି
ଉତ୍ସର୍ଗ ତାହାର ପ୍ରାୟେ ହେବ ସୂର୍ଯ୍ୟ ଋରି ।
ତାହାକୁ ଡେଇଁ ମୁଁ ଶୂନ୍ୟମାର୍ଗେ ଗଲି ଉଡ଼ି
ଧନ୍ୟ ସେହି ପୁରି ଗୋଟି ଯେହ୍ନ ଅଛି ଗଢ଼ି ।
ଉପମା ଦେବାକୁ ତାକୁ ନାହିଁ ତିନି ପୁରେ
ତହୁଁ ଯାଇ ମିଳିଲି ମୁଁ ତାହାର ସଭାରେ ।
କି କହିବ ମୁଁ ହିଁ ସେହି ସଭାର ମହିମା
ଏକେ ଏକେ ବୀର ତହିଁ କରନ୍ତି ଗାରିମା ।
ଜଗତର କଥା ମୁଁ ହିଁ କି କହିବି ତୋତେ
ହୀରା ମାଳା ଖଞ୍ଜାସବୁ ସୁବର୍ଣ୍ଣର କାନ୍ଥେ ।
ତହିଁର ଉପରେ ବସିଅଛି ଦଶଶିର
ଶ୍ରୀମୁଖ ପଡ଼ନ୍ତେ ଶୁଣି କୋପିଲା ଅସୁର ।
ତାହାର ମୂରତି ଦେଖି ଅଇଲି ପଳାଇ
ସାକ୍ଷାତେ କି ପଛରେ ସେ ଅଛଇ ଗୋଡ଼ାଇ
ବଡ଼ ପ୍ରତାପୀ ଅଟଇ ଦେଖି ମାତେ ଡର
ବିଚାରି ମହିମା ଯାହା ଇଚ୍ଛା ତାହା କର ।
ଏମନ୍ତ ଶୁଣି ସହସ୍ର ଶିରା କୋପ କଲା
ଭୟଙ୍କର ମୂର୍ତ୍ତି ଧରି ଏକାକେ ଉଠିଲା ।
ଲୁହାର ମୂଷଳ ଏକ ଧରିଅଛି କରେ
ଅସୁରଙ୍କୁ ବୋଲି ତୁମ୍ଭେ ଥାଅ ଏ ନଗରେ ।
ଏକାକେ ଯାଉଛି ମୁହିଁ ଉପାଡ଼ିବି ଲଙ୍କା
ମୂଣ୍ଡାଇ ଏକ୍ଷଣି ଘେନି ଆସିବି ବିଲଙ୍କା ।

ଏମନ୍ତ କହି କୋପରେ ଧାଇଁଲା ଅସୁର
କଳା ମେଘ ଖଣ୍ଡ ପ୍ରାୟେ ଦିଶଇ ଶରୀର ।
ଦୁଇଶ ଯୋଜନ ଯାଏ ବଢ଼ାଇଛି କାୟା
ଶୂନ୍ୟେ ଗମନ କରଇ ନିର୍ଦ୍ଦୟା ନିର୍ଭୟା ।
ମହାଭୟଙ୍କର ରୂପ ଘୋଟିଛି ଗଗନ
ଲଙ୍କାର ଅସୁର ଦେଖି ଭୟେ ଛନ୍ନ ଛନ୍ନ ।
କେ ବୋଲଇ କଳାମେଘ କେ ବୋଲଇ ଗିରି
କେ ବୋଲଇ ଭୂତଯାଏ ଗଗନ ଆବୋରି ।
କେ ବୋଲଇ ଆସୁଅଛି ନଷ୍ଟେ ଏ ଅସୁର
ଛାରଖାର କରିବ ଏ ଆମ୍ଭ ଲଙ୍କାପୁର ।
ଏମନ୍ତେ ଭଲନ୍ତି ତହିଁ ଅସୁର ଅସୁରୀ
ଦୂତ ଧାଇଁ ଯାଇଁ ବେଗେ କରଯୋଡ଼ି କରି ।
ମହିମା ମହିମା ବୋଲି ଉଚେ ଛାଡ଼େ ବୋବ
ହେ ଦେବ ଗଲା ଏଥର ତୁମ୍ଭର ପଦବୀ ।
ଆକାଶେ ଘୋଟି ଆସଇ କେବଣ ଅସୁର
କଳା ମେଘ ଖଣ୍ଡ ପରି ଦିଶଇ ଶରୀର ।
ବେଗେ ଉଠ କ୍ଷଣେ ଦେବ ବିଳମ୍ବ ନ କର
ଶୁଣି କୋପେ ଆଜ୍ଞାଦେଲା ବୀର ଲଙ୍କେଶ୍ୱର ।
ଆରେ କୁମ୍ଭ ନିକୁମ୍ଭରେ ବୀର ଅତିକାୟ
ଇନ୍ଦ୍ରଜିତ ଆଦି ଯେତେ ବେଗେ ସଜହୁଅ ।
ଘେରି ବାପୁଡ଼ାକୁ ଦୁରୁ ମାରି ବେଢ଼ି କରି
ଧାଇଁ ଗଲେ ବୀରଗଣେ ଅସ୍ତ୍ରଶସ୍ତ୍ର ଧରି ।
ମାର ମାର ଧର ଧର ଡାକ ଅନୁକ୍ଷଣେ
ଆସ ଆସ ଚାଲ ଚାଲ କହି ଜଣେ ଜଣେ ।
ଆଗ ପଛଭର ହୋଇ ଧାମନ୍ତି ଗରଜ
ଗହଳ ଚହଳେ ଲଙ୍କାପୁର ପଡ଼େ ଭାଜ ।
ସହସ୍ରଶିରା ରାବଣ ଗଗନରୁ ଖସି
ରାଗରେ ଶୂଳକୁ ଦେଲା ଲଙ୍କାପୁରେ ଭୁଷି ।
ଶାବଳ ମାରି ଯେସନେ ହୁଙ୍କାକୁ ତାଡ଼ନ୍ତି
ବଜ ମୁନାରେ ଯେସନେ ଗିରି ଉପାଡ଼ନ୍ତି ।
ତେସନ ହୁଁ ଙ୍କାର କରି ପ୍ରତାପୀ ଅସୁର
ଶୂଳରେ ତାଡ଼ିଲା ତେଡ଼େ ବଡ଼ ଲଙ୍କାପୁର ।
ଚଡ଼ ଚଡ଼ ଶବଦରେ କମ୍ପିଲା ସେ ଭୁଇଁ
ଏମନ୍ତ ଦେଖି ଆସ୍ଥାନୁ ଉଠି ଲଙ୍କାସାଇଁ ।
କରଦୁଇ ଯୋଡ଼ି କଲା ଭଦ୍ରାକାଳୀ ସ୍ତୁତି
ଜୟ ତୁ ଜୟ ତୁ ମାତ ଅନନ୍ତ ମୂରତି ।

ଜୟ ତୁ ଜୟ ତୁ ମାତ ରକ୍ଷାକର ଆସି
ଜୟ ତୁ ଜୟ ତୁ ମାତ କରୁଣା ପ୍ରକାଶି ।
ଜୟ ତୁ ଜୟ ତୁ ମାତ ମାନ ଉଦ୍ଧାରିଣୀ
ଜୟ ତୁ ଜୟ ତୁ ମାତ ଅଭୟ ତାରିଣୀ ।
ଏମନ୍ତେ ବହୁତ ସ୍ତୁତି କଲା ଲଙ୍କେଶ୍ୱର
ମିଳିଲେକ ଭଦ୍ରକାଳୀ ଆସି ତା ସମ୍ମୁର ।
ବୋଇଲେ ରେ ପୁତ୍ର କମ୍ପା କରୁଅଛୁ ଭୟ
ନେଇଛୁ ରେ ବାବୁ ତେଣୁ ମୋହର ଆଶ୍ରୟ ।
ଏମନ୍ତ କହିଣ ଦେବୀ ବସିଲେକ ମାତି
ବିଲଙ୍କା ରାବଣ ଲଙ୍କା ନ ପାରିଲା ଛାଡ଼ି ।
ସେଦିନୁ ଲଙ୍କାଦେବତି ନାମେହେଲେ ଖ୍ୟାତ
ପ୍ରତିଦିନ ବଳି ଭୋଜା ଦିଏ ଦଶମାଥ ।
ଲଙ୍କାକୁ ସେ ଦିନୁ ରକ୍ଷା କଲେ ମହାମାଈ
ଗ୍ରାମଦେବତା ରୂପରେ ରହି ପୂଜା ପାଇ ।
ଗ୍ରାମଲୋକେ ପୂଜନ୍ତି ଯେ ତାଙ୍କୁ ପ୍ରତିଦିନ
ଶତ୍ରୁ ପଶି ନ ପାରଇ ସେ ଲଙ୍କା ଭୁବନ ।
ଏମନ୍ତବେଳେ ଉଠିଲା ବୀର କୁମ୍ଭକର୍ଣ୍ଣ
ବରଷକ ତାର ହେଲା ସେ ଦିନ ସମ୍ପୂର୍ଣ୍ଣ ।
ମଦମାଂସ ଖାଇଲା ସେ ପେଟ ପୂରାଇଣ
ଶୁଣିଲା ଲଙ୍କାକୁ ଛାଡ଼େ ବିଲଙ୍କା ରାବଣ ।
ଧାଇଁଲା ସେ ମହାବଳୀ ପରିଘେକ ଧରି
ପିଟିଲା ସହସ୍ର ଶିରା ରାବଣ ଉପରି ।
ପଡ଼ି ବେନଖଣ୍ଡ ହେଲା ତେଣ୍ଡବଡ଼ ଅସ୍ତ୍ର
କୁମ୍ଭକର୍ଣ୍ଣ ବୀର ତହୁଁ ହୋଇଲା ନିରସ୍ତ୍ର ।
ହସଇ ସହସ୍ର ଶିରା ଟହ ଟହ ହୋଇ
ନ ଜାଣୁ କି ମୁଁ ସହସ୍ର ଶିରା ଯେ ଅଟଇ ।
ଯାହା ନାମେ ପୁରନାରୀ ଗର୍ଭ ପଡ଼େ ଖସି
ତୁ ପାମର ମୋର ସଙ୍ଗେ ଯୁଦ୍ଧକରୁ ଆସି ।
ଏମନ୍ତ କହି ପ୍ରହାର କଲା କୋପେ ଶୂଳ
ଉପୁଡ଼ି ପଡ଼ିଲା ଯେହ୍ନେ ଛିନ୍ନ ତରୁମୂଳ ।
ତେଡ଼େ ବଡ଼ ଶୂଳ କୁମ୍ଭକର୍ଣ୍ଣ ଦେହେ ବାଜି
ଦୁଇଖଣ୍ଡ ହୋଇ ତଳେ ପଡ଼ିଗଲା ଭାଜି ।
ନିରସ୍ତ୍ର ହୋଇଲା ତହିଁ ବିଲଙ୍କା ରାବଣ
କୋପଭରେ ବୋଲଇ ଯେ ବୀର କୁମ୍ଭକର୍ଣ୍ଣ ।
ମରଣ କି ତୋତେ ଏଥେ ଆଣିଛି କଢ଼ାଇ
ତେଣୁ ତୁହି ସ୍ୱଇଚ୍ଛାରେ ଆସିଅଛୁ ଧାଇଁ ।
ମୋର ନାମ କୁମ୍ଭକର୍ଣ୍ଣ ନ ଜାଣୁ ପାମର
ଏହିକ୍ଷଣି ପଠାଇବି ତୋତେ ଯମପୁର ।
ସହସ୍ର ମୁଣ୍ଡକୁ ତୋର ପକାଇବି ମୋଡ଼ି
ଏହା କହି କୁମ୍ଭକର୍ଣ୍ଣ ଦେଲା ସିଂହରଡ଼ି ।
ରଡ଼ି ଘାତେ ଗିରି ଶୃଙ୍ଗ ଝଡ଼ି ପଡ଼େ ତଳେ
ନିର୍ଘାତ ଶବଦ ଯେହ୍ନେ ପ୍ରଳୟର ଜଳେ ।
ଏମନ୍ତ ଶୁଣି ସହସ୍ର ଶିରା ଗରଜିଲା
ଗରଜନ ଘାତେ ସିନ୍ଧୁ ଉଛୁଳି ପଡ଼ିଲା ।
ହସ୍ତୀ ଯେହ୍ନେ ହସ୍ତୀ ସଙ୍ଗେ କରଇ ସମର
ତେସନ ଗର୍ଜନ କରି ଦୁଇ ମହାବୀର ।
ଧରା ଧରି ମରା ମରି ହେଲେ କ୍ରୋଧଭରେ
ରାବଣ ମାରଇ ଦୁଇ ସହସ୍ର ହସ୍ତରେ ।
କୁମ୍ଭକର୍ଣ୍ଣ ଦୁଇ ହସ୍ତେ ମାରଇ ତାହାକୁ
ଜିଣି ନ ପାରନ୍ତି ରଣେ କେହି ଯେ କାହାକୁ ।
ଦୁହେଁ ମାଲଯୁଦ୍ଧ କଲେ ଧରାଧରି ହୋଇ
ପାଦେ ପାଦ ଛନ୍ଦାଛନ୍ଦି ହୋଇ ଗଡ଼ିଯାଇ ।
ଏମନ୍ତେ ସମର କରୁ ଦିନ ହେଲା ଶେଷ
ଦେଖୁ ଦେଖୁ ରଜନୀ ଯେ ହୋଇଲା ପ୍ରବେଶ ।
ଖାଲଢ଼ିପ ସମତୁଲ କଲେ ଦୁଇବୀରେ
ପର୍ବତ କି ଲଢ଼ୁଅଛି ପର୍ବତ ସଙ୍ଗରେ ।
କେହି ତଳେ ପଡ଼େ କେହି ଉପରେ ପଡ଼ଇ
ପୁଣି ଲେଉଟାଇ ଭୂମିପରେ ଗଡ଼ିଯାଇ ।
ଏମନ୍ତେ ରଜନୀ ଆସି ହେଲା ଅବସାନ
କୁମ୍ଭକର୍ଣ୍ଣକୁ ଯେ ନିଦ୍ରା ଘାରିଲା ବହନ ।
ଡୋଳାଇଲା ବୀରମଣି ଜାଣିଣ ରାବଣ
ଅସୁରକୁ ଧରି ପେଲି ପକାଇ କୋପେଣ ।
କୁମ୍ଭକର୍ଣ୍ଣକୁ ଛଡ଼ାଇ ନେଲା ତହୁଁ ବେଗେ
ଇନ୍ଦ୍ରଜିତ ଉଗାଳିଲା ଅସୁରର ଆଗେ ।
ଧନୁ ଧରି ବାଣ ବୃଷ୍ଟି କଲା ବୀରମଣି
ଆଷାଢ଼ ଶ୍ରାବଣ ମାସ ଜଳଧାରା ଜାଣି ।
ତଳେ ନ ଭେଦଇ ବାଣ ପଡ଼ଇ ଉପୁଡ଼ି
କେତୁ ବେଳ ଦାନବ ଯେ ଛାଡ଼େ ସିଂହରଡ଼ି ।
ନରାନ୍ତକ ଦେବାନ୍ତକ ଆଦି ମହାବୀରେ
ଧନୁଧରି ବାଣବୃଷ୍ଟି କଲେ ତାର ଶିରେ ।
ସାତଦିନ ସାତରାତି ବାଣ ମାରି ମାରି
ଫାଟି ରହିଲେ ପର୍ବତେ ବାରିଧାରା ପରି ।

ଧଇଁଲା ସହସ୍ର ଶିରା କରି ଗରଜନ
ଡରେ ପଳାଇଲେ କେହି ନ ରହିଲେ ପୁଣ ।
ଦେଖିଣ ରାବଣ ଧନୁଧରି ଯୁଦ୍ଧକଲା
ବାଣରେ ତାହାକୁ ପହୁଁ ଜିଣି ନ ପାରିଲା ।
ଧଇଲା ତାହାକୁ ବଳେ କୋଡ଼ିଏ ହାତରେ
ତା ଦେଖି ସହସ୍ର ଶିରା ମହାକୋପଭରେ ।
ସାପୋଟି ଧରିଲା ତାକୁ ହସ୍ତକୁ ବିସ୍ତାରି
ଦୁଇ ସହସ୍ର ହସ୍ତରେ ଅଛି ତାକୁ ଧରି ।
ଉଠିଲା ଆକାଶମାର୍ଗେ ରାବଣକୁ ଘେନି
ଗଗନରେ ଘୋର ଯୁଦ୍ଧ ଆରମ୍ଭିଲେ ବେନି ।
ପୁଣି ଧନ୍ଧଧରି ହୋଇ ପଡ଼ିଲେ ସାଗରେ
ଜଳ ମଧ୍ୟେ ଘୋର ଯୁଦ୍ଧକଲେ ଦୁଇବୀରେ
ବହୁତ ଯେ ଜଳଜନ୍ତୁ ଗଲେ ଯମଘର
ପୁଣି ଧରାଧରି ହୋଇ ଉଠି ଦୁଇବୀର ।
ପୃଥିବୀ ଉପରେ ଆସି କଲେକ ସଂଗ୍ରାମ
ତର୍ଜନ୍ତି ଗର୍ଜନ୍ତି ଦୁହେଁ ପାଇ ମହାଶ୍ରମ ।
ଇନ୍ଦ୍ରଜିତ ଆଦି ବୀରେ ଦେଖୁଛନ୍ତି ରହି
ଦେବତା ଦେଖଣାହାରି ହୋଇଛନ୍ତି ତହିଁ ।
ସହସ୍ର ଶିରା ରାବଣ ବସିଲାକ ମାଡ଼
ଦଶଶିରା ତଳେ ଥାଇ ଗୁଡ଼ୁଡ଼ ସିଂହରଡ଼ ।
ରାବଣ ପାଦକୁ ଧରି ବିଲଙ୍କା ରାଜନ
ବୁଲାଇଲା ଚକ୍ରପ୍ରାୟ କରି ଗରଜନ ।
ଦେଖି ଇନ୍ଦ୍ରଜିତ ଆଦି କଲେ ହାହାକାର
କାହୁଁ ଅକାରଣ ଶତ୍ରୁ ହୋଇଲା ଆମ୍ଭର ।
ସହସ୍ର ଶିରା ବୋଲଇ ମଲୁ ତୁରେ ଏବେ
ଶରଣ ପଶିବୁ ଯେବେ ଛାଡ଼ିଦେବି ତେବେ ।
ଏମନ୍ତ କହି ଅସୁର ବୁଲାଇ ବୁଲାଇ
ସୁବଳସ୍ଥା ପରବତେ କଚୁଡ଼ିଲା ନେଇ ।
ଘଡ଼ିକ ପରେ ଚେତନା ପାଇଲା ରାବଣ
ସହସ୍ର ଶିରାକୁ ଯାଇ ଧରି ସାପୋଟିଣ
ତଳେ ପକାଇଣ ମାଡ଼ ବସିଲାକ କୋପେ
ଗଳାରେ ନାଭିରେ ପାଦଦେଲା ଦୃଢ଼େ ରୂପେ
ଅଚେତନ ହେଲା ତେଣ୍ଡେବଡ଼ ବଳୀୟାର
ଧଇଲା ତାହାର ପାଦ ଦୁଇ ଦଶଶିର ।
ବୁଲାଇ ବୁଲାଇ ନେଇ ପିଟିଲା ପର୍ବତେ
ବୋଇଲା ପାମର ଆସି ମଲୁ ଏତେ ଏଥେ ।

ଘଡ଼ିକେ ଚେତନା ପାଇ ପ୍ରତାପୀ ଦଇତ
କାୟା ବଢ଼ାଇଲା ଶତ ଯୋଜନ ପର୍ଯ୍ୟନ୍ତ ।
ତା ଦେଖି ରାବଣ କୋପେ କାୟା ବଢ଼ାଇଲା
ଗୃଲଶ ଯୋଜନ ଯାଏ ସେହି ବଢ଼ିଗଲା ।
ଦୁଇବୀର ବଳବନ୍ତ ଅଟନ୍ତି ଅବଧ
କୋଡ଼ିଏ ଦିବସ ଯାଏ କଲେ ଘୋର ଯୁଦ୍ଧ ।
ଦୁହିଁଙ୍କର ଭାର ସହି ନ ପାରିଲା ମହୀ
ବେଳୁବେଳ କମ୍ପି ଗଲା ବାସୁକି ଯେ ଅହି
ଦେଖି ଦେବତାଏ ମହାଭୟ ପାଇ ଗଲେ
ବ୍ରହ୍ମାଙ୍କ ଆଗରେ ଯାଇଁ ବୁଝାଇ କହିଲେ ।
ନିଶ୍ଚେ ତୋର ସୃଷ୍ଟି ନାଶ ଯିବ ବେଦବର
ତୋହର ବରେ ଅବଧ ଅଟେ ଦଶଶିର ।
ବାଲଖିଲ୍ୟା ଋଷିଙ୍କର ବଳେ ବଳବନ୍ତ
ହୋଇଛି ସହସ୍ର ଶିରା ପ୍ରତାପୀ ଦଇତ ।
ବିଗୃରଣ ରଖ ଏବେ ଉପାୟ କରଣ
ଶୁଣି ବ୍ରହ୍ମା ସଙ୍ଗତରେ ଘେନି ଦେବଗଣ ।
ମିଳିଲେ ଦୁହିଁଙ୍କ ପାଶେ ଯୁଦ୍ଧସ୍ଥାନେ ଆସି
ଦେଖିଲେ ସେ ଦୁଇବୀର ଗିରିପ୍ରାୟ ଦିଶି ।
କେତୁ ମଙ୍ଗଳ ପରାୟେ ଯୁଦ୍ଧ ଘୋରତର
ଦୁହେଁ ତ ବଡ଼ ପ୍ରତାପୀ ଗର୍ବୀ ଭୟଙ୍କର ।
ଷଣ୍ଢକୁ ଦେଖିଲେ ଷଣ୍ଢ ଗର୍ଜଇ ଯେମନ୍ତ
ସିଂହ ଦେଖି ସିଂହ ଯେହ୍ନେ ଫୁଲଇ ବନସ୍ତ ।
ତେସନ ଗର୍ଜନ କରି ଦୁହେଁ ଫୁଲାଇ
ସମର କରନ୍ତି ଦୁହେଁ ଛନ୍ଦାଛନ୍ଦି ହୋଇ ।
ମୁଣ୍ଡେ ମୁଣ୍ଡ ପିଟାପିଟି ହସ୍ତେ ଧରାଧରି
ପାଦେ ପାଦ ମରାମରି ହୁଅନ୍ତି ଏପରି ।
ଇନ୍ଦ୍ରଜିତ ଆଦି ବୀରେ ଦେଖୁଛନ୍ତି ରହି
ପାଦଭରେ ଦଲଦଲ ହେଉଅଛି ମହୀ ।
ଏମନ୍ତ ଦେଖି ବୋଇଲେ ବ୍ରହ୍ମା ରହ ରହ
ଆମ୍ଭେ ଯେ ଅଟୁ ଜଗତ ଜନ ପିତାମହ ।
ଯୁଦ୍ଧ ତେଜ ଦୁଇବୀର ଆମ୍ଭ ବୋଲ କର
ଅକାରଣେ କାହିଁପାଇଁ କୋପକରି ମର ।
ଏମନ୍ତ ଶୁଣି ସେ ଦୁଇ କୋପ କରି ଶାନ୍ତ
ବୋଇଲେ ଆମ୍ଭର କଥା ଶୁଣ ପ୍ରଜାପତି ।
ଏମନ୍ତ ଶୁଣି ବୋଇଲେ ପଦ୍ମଯୋନି ବ୍ରହ୍ମା
ତୁମ୍ଭେ ମହୀ ମଣ୍ଡଳରେ ଅଟ ଘୋରକର୍ମା ।

କେତେ କଷ୍ଟ ସହ୍ବି ସୃଷ୍ଟି ଭିଆଇଛୁ ବାବୁ
ତୁମ୍ଭେ କପାଇଁ ବିନାଶ କର ତାହା ସବୁ ।
ଏମନ୍ତ ଶୁଣି ରାବଣ ବୋଇଲା ତୁ ବୁଝ
କାହୁଁ ଆସି ମୋ ସଙ୍ଗତେ କରେ ମାଲଯୁଝ ।
ଯେଉଁ ଲଙ୍କାକୁ ବାସବ ଦେଖି କରେ ଶଙ୍କା
ଯେଉଁ ଦଶାନନ ବୀର ଅଟେ ରଣରଙ୍କା ।
ସେ ବୀର ଥାଉଁ ଏ କାହୁଁ ଆସି ଡାଡେ ପୁର
ଏମନ୍ତ ଶୁଣି ବୋଲଇ ବିଲଙ୍କା ଈଶ୍ବର ।
ଆହୋ ବ୍ରହ୍ମା ନ ଜାଣୁକ ମୋର କେତେ ବଳ
ଯାହାର ପାଦେ ଖଟନ୍ତି ଦେବତା ସକଳ ।
ତାହାର ଦୂତକୁ ଏହି ନ ମାନିଲା ପୁଣି
ଶ୍ରୀମୁଖକୁ ନ ଦେଖିଲା ଏହି ବଂଶପାଣି ।
ବ୍ରହ୍ମା ବୋଇଲେ ନ ଜାଣି କର ଦୁହେଁ କଳି
ଏତିନ ଭୁବନେ ତୁମ୍ଭେ ଦୁଇ ମହାବଳୀ ।
ଲଙ୍କା ବିଲଙ୍କା ଏ ଦୁଇ ରାଜ୍ୟହିଁ ସମାନ
ତୁହି ଦଶାନନ ସେହି ସହସ୍ର ଆନନ ।

ତୋ ନାମ ରାବଣ ପୁଣି ତା ନାମ ରାବଣ
ଦୁହେଁ ମଇତ୍ର ତ ହୋଇ କରୁଅଛ ରଣ ।
ଏମନ୍ତେ ବ୍ରହ୍ମା ମୁଖରୁ ଶୁଣି ଦୁଇବୀରେ
ମଇତ୍ର ହୋଇ ମିଳିଲେ ଯାଇ ଲଙ୍କାପୁରେ ।
ସହସ୍ର ଶିରାକୁ ଅତି ଗଉରବ କରି
ମାସେ ରଖାଇଲା ପୁରେ ଲଙ୍କା ଦଣ୍ଡଧାରୀ ।
ଦୁଇଜଣଙ୍କର ହେଲା ଅଭେଦ ପୀରତି
ବିଲଙ୍କା ରାଜ୍ୟକୁ ଗଲା ବିଲଙ୍କା ନୃପତି ।
ସୁଖେ ରାଜ୍ୟକଲା ତୁଗୋ ଶୁଣିଲୁ ଗଉରୀ
ବାଲ୍ମୀକି ମୁନି ନାମ ଯେଉଁ ତପସ୍ବୀର ।
ସାମ ବେଦରୁ କାଢ଼ିଛି ଏ ଅପୂର୍ବ ଗ୍ରନ୍ଥ
ଯାହାକୁ ଶୁଣି ଶୁଣାନ୍ତି ସୁଜ୍ଞ ସାଧୁ ସନ୍ତ ।
ଏ ପୁଣ୍ୟଗ୍ରନ୍ଥକୁ ଶୁଣି ଭବରୁ ତରନ୍ତି
ଅନ୍ତକାଳେ ବଇକୁଣ୍ଠ ଭୁବନେ ବସନ୍ତି ।
ତାହା ତୋ ଆଗେ କହିଲି ମନେ ହେତୁ ରଖ
ଚନ୍ଦ୍ରଧରକୁ ଉଦ୍ଧାର କର ପଞ୍ଚମୁଖ ।

—*—

## ସହସ୍ରଶିରାର ବଳୀଠାରୁ ଅପମାନ ପାଇବା

ଏଥୁ ଅନନ୍ତରେ ତୁ ଗୋ ଶୁଣ ହୈମବତୀ
ଦିନେ ସଭାକରି ଅଛି ବିଲଙ୍କା ନୃପତି ।
ବୀର ମହାବୀର ଜେନା ବୃନ୍ଦଗାଇଁ କରଣ
ପାତ୍ର ମହାପାତ୍ର ମନ୍ତ୍ରୀ ଅମାନତ୍ୟ ଗଣ ।
ଗନ୍ଧାଇତ ପାଇକେ ଯେ ରାଉତେ ସାହୁନେ
ବସିଅଛନ୍ତି ସଭାରେ ଦେବଙ୍କ ସହିତେ ।
ମଣିମା ମଣିମା ଡାକ ପଡ଼ୁଅଛି ତହିଁ
ଜଉତିଷେ ଦିନବାର ବୁଝୁଛନ୍ତି ରହି ।
ଖରୁଆ ମିରୁଆ ଖତ କହୁଛନ୍ତି କାନେ
ନୃପତି ବସି ଅଛଇ କନକ ଆସ୍ଥାନେ ।
ଅପସରା ନୃତ୍ୟକରି ତୋଷୁଛନ୍ତି ମନ
ପଞ୍ଚମ ସ୍ବରେ ବିରଞ୍ଚି ବୀଣାକରେ ଗାନ ।
ନୃତ୍ୟରସରେ ଆନନ୍ଦ ସର୍ବ ସଭାଜନେ
ଏମନ୍ତ ବେଳେ ମିଳିଲେ ନାରଦ ସେ ସ୍ଥାନେ ।

ମୁନିଙ୍କି ଦେଖି ଆନନ୍ଦ ହୋଇଣ ନୃପତି
ଦିବ୍ୟ ଆସନେ ବସାଇ ବୋଇଲା ହୋ ଯତି !
ତିନିଭୁବନର କଥା ଜାଣ ତୁମ୍ଭେ ଭଲେ
କେହି ରାଜା କି ସମାନ ହେବ ମୋର ତୁଲେ ।
ସମ୍ପଦରେ ବଳରେ କି ଧନରେ ମାନରେ
ମୋହ ସମାନ କେହି କି ଅଛି ତିନିପୁରେ ।
ସ୍ବର୍ଗ ମର୍ତ୍ତ୍ୟ ପାତାଳରେ ଏକା ମୁହିଁ ବୀର
ଏମନ୍ତ ଶୁଣି ବୋଇଲେ ବ୍ରହ୍ମାର କୁମର ।
ଯାହା କହିଲୁ ତୁ ରାଜା ନୁହଇ ତା ମିଛ
ତୋ ପଦ ଇନ୍ଦ୍ର ପଦକୁ କରୁଅଛି ତୁଚ୍ଛ ।
ତୋ ସମାନ ମାନୀ ଧନୀ ଜାଣେ ନାହିଁ କେହି
ହେଉଗ କରୁଛୁ ବିଲଙ୍କା ନାମେ ମହୀ ତୁହି ।
ଏକା ବୀର ବୋଲି ତୁହି କହୁଅଛୁ ଯାହା
ତୋ ସମ ବୀରେ ଅଛନ୍ତି ଆହେ ଦୈତ୍ୟନାହା

ଏମନ୍ତ ଶୁଣି ବୋଇଲା ଅସୁର ନୃପତି
କହ କି ନା ମୁନିବର କାହିଁ ସେ ଅଛନ୍ତି ।
ନାରଦ ବୋଇଲେ ଶୁଣ ତୁହେ ସାବଧାନ
ପାତାଳେ ବୀରେକ ଅଛି ତୋହର ସମାନ ।
ତାର ନାମ ବଳୀ ସେହି ଦାନବ ରାଜନ
ଦାନଶୂର ମାନଶୂର ମହାବଳବାନ ।
ଅଗୋଚର ମହିମା ଯେ ଅଟଇ ତାହାର
ସତ୍ୟଯୁଗର ରାଜା ସେ ଅଟେ ମହାବୀର ।
ତିନି ଭୁବନେ ତାହାକୁ ନ ଥିଲେ କେ ସରି
ଅସୁରଙ୍କୁ ହବି ଦେଉଥିଲା ଯଜ୍ଞ କରି ।
ଯେ ଯାହା ମାଗଇ ତାକୁ ନ କରଇ ନାହିଁ
ଅନ୍ନ ବସ୍ତ୍ର ଧନ ରତ୍ନ ସୁନାରୁପା ଗାଈ ।
ଦେବତାଏ ବଡ଼କଷ୍ଟ ପାଇଲେକ ଯହୁଁ
ବିଷ୍ଣୁଙ୍କୁ ଯାଇଁ କହିଲେ ଶୁଣି ମହାବାହୁ ।

ବିପ୍ରରୂପ ଧଇଲେ ସେ ଦେବତାଙ୍କ ପାଇଁ
ଅଦ୍ଭୁତ ବାମନ ରୂପେ ବଳିଦ୍ୱାରେ ଯାଇଁ ।
ସାମବେଦ ଗାଇଲେ ସେ ତାନମାନ ଧରି
ଶୁଣି ରାଜା ଯଜ୍ଞଶାଳୁ ଆଇଲା ବାହାରି ।
ଦେଖିଲା ଅପୂର୍ବ ଦ୍ୱିଜ ଉତ୍ତରୀ ପଇତା
ହସ୍ତେ ଗଣ୍ଡୂପାତ୍ର କାନ୍ଧେ ତାଳପତ୍ର ଛତା ।
ଅଙ୍ଗୁଳିରେ କୁଶବଟୁ ବାସ ହରିଣପଟ
କଟିରେ ମେଖଳା ରଜ୍ଜୁ ତିଳକ ଲଲାଟ ।
ଦେଖି ବାମନକୁ ବଳି ବୋଇଲାକ ଦ୍ୱିଜ
ଧନ ରତ୍ନ ଅନ୍ନ ବସ୍ତ୍ର ଭୂମି କିବା ରାଜ୍ୟ ।
ଯାହା ତୁ ମାଗିବୁ ତାହା ଦେବି ମୋର ସତ୍ୟ
ଏମନ୍ତ ବେଳେ ମିଳିଲେ ଶୁକ୍ର ପୁରୋହିତ ।
ବୋଇଲେ ହେ ରାଜା ତୁହି ହୋଇଲୁ କି ବାଇ
ଆସିଅଛି ବିଷ୍ଣୁ ତୋତେ ଛଳିବାର ପାଇଁ ।



ବଳୀର ବାମନକୁ ଦାନଦେବା

ଦାନ ଘେନି ତୋର ଶିରୀ ହରିନେବେ ହରି
ଇନ୍ଦ୍ର ଦେବତାକୁ ଦେବେ ଯାଉ ଦ୍ୱିଜ ଫେରି
ଦାନ ତୁ ନ ଦିଅ ବାବୁ ମୋର କଥା ମାନ
ଏହା କହି ତା ହସ୍ତକୁ ଧଇଲେ ବହନ ।
ବଳି ବୋଇଲା ହେ ଗୁରୁ ଛାଡ଼ ମୋର ହସ୍ତ
ନିଶ୍ଚେ ଦାନ ଦେବି ମୁହିଁ କରିଅଛି ସତ୍ୟ ।
ବିଷ୍ଣୁ ହେଲେ ଅଧିକରେ ଫଳ ହେବ ମୋର
ଏହା କହି ଛାଡିଦେଲା ଆପଣାର କର ।
ଶଙ୍ଖେ ଜଳ ତିଳ ଭରିଦେଲା ବିପ୍ରକରେ
ଶୁକ୍ର ମାଛିରୂପ ଧରି ରହିଲେ ଭୃଙ୍ଗାରେ ।

ଜଳ ନ ପଡ଼ିଲା ଯହୁଁ ଜାଣିଲେ ବାମନ
କୁଶବଟୁ ଖୁଞ୍ଚିଦେଲେ ଫୁଟିଲା ନୟନ ।
କଣା ହୋଇ ଗଲେ ଯହୁଁ ଶୁକ୍ର ମୁନିବର
ଉଡ଼ିଗଲେ ଭୃଙ୍ଗାରରୁ ଝରିଲାକ ନୀର ।
ବଳୀ ବୋଇଲେ ହେ ଦ୍ୱିଜ କେତେ ପଢ଼ିବେଦ
ବେଗେ ଦାନ ମାଗ ତୁହି ଅତ୍ୟନ୍ତ ଦରିଦ୍ର ।
ଭାଗ୍ୟବଳେ ପାଇଅଛି ତୋପରି ଦ୍ୱିଜକୁ
ସହସ୍ରେ ବରଷ ଯଜ୍ଞ ହେଲାଣି ଆଜକୁ ।
ମାଗ ମାଗ ବାମନ ହେ ବିଳମ୍ବ ନ କର
ଏମନ୍ତ ଶୁଣି ବୋଇଲେ ସେହି ଦ୍ୱିଜବର । ୩୮

ତିନପାଦ ଭୂମି ମୋତେ ଦେବୁ ତୁହେ ରାଜା
ବାମନପଣେ ଗୃହଦ୍ୱାରେ ଉଡ଼ୁଛି ତୋ ଧ୍ୱଜା ।
ମହାଦାନୀ ବୋଲି ଲୋକ ମୁଖୁ ମୁହିଁ ଶୁଣି
ଧାଇଁ ଆଇଲି ତୋ ପାଖେ ନେବାପାଇଁ ଭୂମି ।
ତିନପୁରେ ଧନବନ୍ତ ବଳବନ୍ତ ତୁହି
ଦେବା କହି ନ ପୂରାଉ କରୁ ମୋତେ ନାହିଁ ।
ତୋ ପରି ନୃପତି ଯେବେ ଅସତ ହୋଇବ
ପୃଥିବୀରୁ ନିଶ୍ଚେ ଜାଣ ଧର୍ମ ଗୁଡ଼ିଯିବ ।
ଏମନ୍ତ ଶୁଣି ହସିଲା ମହାଦାନୀ ବଳୀ
ବୋଇଲା ତୋ ଭଲ ବିପ୍ର ନୃପତି ମୋ ଭଳି ।
ଏଥିରେ ପୁଣି ଅସତ ହେବି କହେ ଦ୍ୱିଜ
ଜାଣିଲି ତୋହର କର୍ମ ଶ୍ରେଷ୍ଠ ତେଣୁ ଆଜ ।
ନ ମାଗିଲୁ ଧନ ଜନ ଘୋଡ଼ା ହାତୀ କିଛୁ
ରାଜ୍ୟ ସୁନାରୂପା ରତ୍ନ ଭୂମି ମାଗୁ ବାଛୁ ।
ବାଟି ମାଣ ନୁହେଁ ପୁଣି ତିନପାଦ ଭୂମି
ମୋତେ ଲଜ୍ଜା ଦେଲୁ ବିପ୍ର ମୁହିଁ ପୃଥ୍ୱୀ ସ୍ୱାମୀ ।
ଏମନ୍ତ ଶୁଣି ବ୍ରାହ୍ମଣ ବୋଇଲେକ ହସି
ଲୋଭୀ ବିପ୍ର ନୁହେଁ ମୁହିଁ ମାଗିବଇଁ ବେଶି ।
ଅଗ୍ନିନିତ୍ୟ ସ୍ଥାପିବାକୁ ନାହିଁ ମୋର ସ୍ଥାନ
ମୋ ପାଦରେ ତିନପାଦ ଭୂମି ଦିଅ ଦାନ ।
ଏମନ୍ତେ ଶୁଣି ରାଜନ ଦେଲା ବିପ୍ରହସ୍ତେ
ତ୍ରିବିକ୍ରମ ମୂରତିକ ଧରି ଜଗନ୍ନାଥେ ।
ଏକପାଦେ ପୃଥ୍ୱୀସାକ ଘୋଟିଲେ ତକ୍ଷଣେ
ଆକାଶସାକ ଘୋଟିଲେ ଦ୍ୱିତୀୟ ଚରଣେ ।
ବୋଇଲେ ଭୋବଳୀ ତୋର ଭୂମି ଅଛି କାହିଁ
ବଳୀ ବୋଇଲା ତୋହର ପାଦ ଆଉ ନାହିଁ ।
ତତକ୍ଷଣେ ନାଭିରୁ ଯେ ପାଦ କଲେ ଜାତ
ବୋଇଲେ ତୋ ଭୂମି କାହିଁ କହ ନରନାଥ ।
ବଳୀ ବୋଇଲା ମୋଶିର ଦେଲି ତୋତେଦାନ
ତା ଶିରେ ଚରଣ ଦେଇ ପ୍ରଭୁ ଭଗବାନ ।
ପାତାଳକୁ ଚୁପିଦେଲେ ବଳୀ ଗଲା ଗଳି
ବାସବକୁ ସବୁ ଦେଇ ଗଲେ ବନମାଳୀ ।
ବଳୀଦ୍ୱାରେ ରାତିଦିନ କରେ ଚକ୍ରଧର
ଖଟିଛନ୍ତି ଭୃତ୍ୟପଣେ ହୋଇ ପଡ଼ିହାରୀ ।
ଚଉଦଭୁବନେ ନାହିଁ ବଳୀ ସମ ବଳୀ
ତାହାର ପୁର ସୁନ୍ଦର ସବୁହି ଉଜୁଳ ।

କି କହିବି ତାର ପୁର ଶୋଭା ମୁହିଁ ତୋତେ
ଉପମା ଦେବାକୁ ନାହିଁ ଏ ତିନି ଜଗତେ ।
ଆବର ବାରେକ ଅଛି ଶୁଣ ତାର ନାମ
ଘର ତାହାର ଅଟଇ କିଷ୍କିନ୍ଧ୍ୟା ଯେ ଗ୍ରାମ ।
ବାନର ରାଜା ଅଟଇ ତାର ନାମ ବାଲୀ
ତିନପୁରେ ନାହିଁ ତାର ସମ କେହି ବଳୀ ।
ଆବର ରାଜାଏ ଅଛି ନାମ ଶୂରସେନ
ହଇହୟ ବଂଶରେ ସେ ଅଟଇ ରାଜନ ।
ମହା ବଳବନ୍ତ ପଣେ ଉଡ଼ାଇଛି ଧ୍ୱଜା
ତାହାର ପାଦେ ଖଟନ୍ତି ପୃଥିବୀର ରାଜା ।
ଅଠର ଦ୍ୱୀପରେ ତାର ଅଛି ଅଧିକାର
ଏମନ୍ତ ଶୁଣି କୋପିଲା ଲଙ୍କା ଈଶ୍ୱର ।
ବୋଇଲା ହୋ ସଭାଭର୍ଗି ଯାଅ ନେଖାଘରେ
ମୁହିଁ ଯାଉଛି ଏକ୍ଷଣି ପାତାଳ ନଗରେ ।
ଏମନ୍ତ ବୋଲି ପ୍ରତାପୀ ଦାନବ ଉଠିଲା
ଏକାକେ ପାତାଳପୁରେ ପ୍ରବେଶ ହୋଇଲା ।
ବଳୀର ଭୁବନେ ଯାଇ ମିଳିଲା ଅସୁର
ଦେଖିଲା ସେ ପୁରଗୋଟି ଦିଶଇ ସୁନ୍ଦର
ମନେ ବିଚାରିଲା ଯାହା କହିଥିଲା ମୁନି
ଏମନ୍ତ ଭୁବନ ଦେଖି ନାହିଁ ନେତ୍ର ବେନି ।
ଯେ ଗଢ଼ିଛି ତାକୁ ଆମେ ବୋଲିବା ନା ଧନ୍ୟ
ଏମନ୍ତ ଭାଳି ଭିତରେ ପଶିଲା ରାଜନ ।
ବଳୀରାଜା ବସିଅଛି ରତ୍ନ ସିଂହାସନେ
ଏକବେ କି କୋଟି ସୂର୍ଯ୍ୟ ଉଇଁଛି ଗଗନେ ।
ନୟନ ବେନି କି ତାର ପ୍ରଳୟ ଅନଳ
ନିଶ୍ୱାସ ନିଦାଘକାଳ ପ୍ରଳୟ ଅନଳ ।
ସହସ୍ରଶିର ରାବଣ ଦୂରେ ଥାଇ ଦେଖି
ଚାହିଁ ନ ପାରଣ ବୁଜି ପକାଇଲା ଆଖି ।
ଦୁଇସହସ୍ର ନୟନେ ନ ପାରିଲା ଚାହିଁ
ମୂର୍ଚ୍ଛା ଯାଇ ପଡ଼ିଲା ସେ ପ୍ରତାପ ନ ସହି ।
ଦାସୀଗଣେ ଆସି ପାଖେ ସିଞ୍ଚିଦେଲେ ଜଳ
ଚେତନା ପାଇ ଉଠିଲା ଦୈତ୍ୟ ମହାବଳ ।
ଦାସୀ ଏକ ତୋଳି ତାକୁ ଧଇଲାକ ହସ୍ତେ
ତା ହସ୍ତୁ ଆରେକ ନାରୀ ଧରି ବାମହାତେ ।
ଏମନ୍ତେ ହସ୍ତରୁ ହସ୍ତ ଧରି ରମାଗଣ
ଏ ହାତ ସେ ହାତ କରୁଁ ବଳଙ୍କା ରାବଣ ।

ଅର୍ଦ୍ଧପ୍ରାଣ ହେଲା କଥା କହି ନ ପାରିଲା
ବଳୀରାଜା ଆସି ତାକୁ ଛଡ଼ାଇଣ ନେଲା ।
ବୋଇଲା ନାରଦ ମୁନି କଥାରେ ଏଠାକୁ
ଆସିଅଛୁ ମୋ ସଙ୍ଗତେ ଯୁଦ୍ଧ କରିବାକୁ ।
ଲକ୍ଷଶିରା ପୁଅ ତୁହି ବହୁଶିରା ନାତି
ଏଠାରୁ ଏବେ ବାହୁଡ଼ ଯାଅ ତୁ ଝଟତି ।
ଏମନ୍ତ ଶୁଣି ସହସ୍ରଶିରା ଭୟ ପାଇ
ଶତ ଦଣ୍ଡବତ କଲା ଧରି ପାଦ ଦୁଇ ।
ବୋଇଲା ନ ଜାଣି ଦୋଷ କଲି ତୁମ୍ଭପାଦେ
ତୁମ୍ଭେ ମୋର ଗୁରୁ ଦୋଷ ନ ଘେନିବ ହୃଦେ
ଜାଣିଲି ଆମ୍ଭର କୁଳେ ତୁମ୍ଭେ ବୃଦ୍ଧଜନ
ଆମ୍ଭମାନଙ୍କର ତୁମ୍ଭେ ଅଟ ମହାମାନ୍ୟ ।
କଲ୍ୟାଣ କରନ୍ତୁ ଏବେ ଯାଉଛି ଘରକୁ
ଏମନ୍ତେ କହି ଆସନ୍ତେ ନାରଦ ତାହାକୁ ।
ଉପହାସ କରି କେତେ କହିଲେ ଇଙ୍ଗିତେ
ସହସ୍ର ଗୋଟା ଶିର ତୁ ବହୁ କି ନିମନ୍ତେ ।
ପର୍ବତେ ବହୁତ ଶୃଙ୍ଗଥିବା ପ୍ରାୟେ ଦିଶେ
କେବଳ ଗିରି ଶୋଭାକୁ ବଢ଼ାନ୍ତି ବିଶେଷେ ।
କରିବା ଶକତି କିଛି ନ ଥାଇ ତାଙ୍କର
ତେମନ୍ତ ଏ ଦାନବର ସହସ୍ରେକ ଶିର ।
ବୃକ୍ଷରେ ବହୁତ ଡାଳ ଥିଲା ପ୍ରାୟ ଦେଖି
ଏହାର ବହୁତ ଭୁଜ ଅଟନ୍ତି ନରେଶ ।
ଶାଖାପ୍ରାୟ ଶୋଭା ସିନା ବଢ଼ାଉ ଅଛନ୍ତି
ନାହିଁ ଏହାଙ୍କର କିଛି କରିବା ଶକତି ।
ଏହାର ଦେହରେ ବଳ ତିଳେମାତ୍ର ନାହିଁ
ମାଂସ କେବଳ ବହିଛି ମାଛ ପ୍ରାୟ ଏହି ।
ଏମନ୍ତେ ବହୁତ କହି ତାଳି ମାରି ମାରି
ଗୋଡ଼ାଇ ଆସିଣ ଖଣ୍ଡେଦୂରୁ ଗଲେ ଫେରି ।
ଲାଜେ ଦାନବ ପଛକୁ ନ ଚାହିଁ ଅଇଲା
କାହାରି ଆଗରେ ପୁଣି କିଛି ନ କହିଲା ।
ରହିଲା ଆପଣା ପୁରେ ନିଶ୍ଚିନ୍ତ ହୋଇଣ
ଚନ୍ଦ୍ରଧର କାଳିକାଙ୍କ ଚରଣେ ଶରଣ ।

—୦—

## ସହସ୍ରଶିରାର ବାଳୀଠାରୁ ଅପମାନ ପାଇବା

ଶଙ୍କର କହନ୍ତି ବସି ଶୁଣନ୍ତି ପାର୍ବତୀ
ଶୁଣାଇବା ଲୋକର ଯେ ନାହିଁ ଭୟଭୀତି ।
ଶୁଣିବା ଲୋକକୁ ନାହିଁ ଯମଦଣ୍ଡ ବାଧା
ଯେବଣ ଜନ ପଢ଼ିରେ କରିଣ ଶରଧା ।
ସେହି ତରଇ ତାହାର କୁଳକୁ ତାରଇ
ଭବ ସମୁଦ୍ରକୁ ଭେଳା ଏକା ଏ ଅଟଇ ।
ଏ ଗ୍ରନ୍ଥର ମହିମା ଯେ ଅପାରୁଁ ଅପାର
କେବଳ ଜାଣନ୍ତି ଏକା ମହାଦେବ ହର ।
ପାର୍ବତୀ ବୋଇଲେ ସ୍ୱାମୀ ତଦନ୍ତେ କି କଲା
ଅପମାନ ପାଇ ତହୁଁ ବାହୁଡ଼ି ଅଇଲା ।
ଲାଜ କଥା ନ କହିଲା କାହାରି ଆଗରେ
ନାରଦ ଯାଇଁ କହିଲେ ବାସବ ଛାମୁରେ ।
ଶୁଣି ଦେବଗଣ ଅତି ଆନନ୍ଦ ହୋଇଲେ
ବାସବ ଦେବ ନାରଦ ମୁନିଙ୍କି ବୋଇଲେ ।
ସଭାରେ ଗରବ କରି କହୁଥାଇ ବସି
ଗଞ୍ଜି ହୋଇବ ତୁମ୍ଭଙ୍କୁ ଦେଖିଲେ ହେ ଋଷି ।
ଏମନ୍ତେ ଯେ କୁହାକୁହି ହେଲେ ଦେବଗଣ
ତଦନ୍ତେ କି କଲା ପୁଣି ବିଲଙ୍କ ରାବଣ ।
ବୋଇଲେ ଶଙ୍କର ଶୁଣ ଗୋ ଶୁଣ ହୈମବତୀ
କିଛିଦିନ ଅନ୍ତେ ଦିନେ ଚଳଇ ଭୂପତି ।

କଷ୍କିନ୍ଧ୍ୟାର ରାଜା ବାଲୀ କେଡ଼େ ବଳବାନ
ବାଲୀ ରାଜ୍ୟରେ ପାଇଲ ବଡ଼ ଅପମାନ ।
ଏମନ୍ତ ଭାଳି ସେ ଦିନେ ମନ୍ତ୍ରୀକି କହିଲା
ରାଜ୍ୟ ମୋହର ତୋହର ହସ୍ତରେ ରହିଲା ।
ମୁହିଁ ଯାଉଅଛି ଏବେ ଜମ୍ବୁଦ୍ୱୀପ ଯାଏ
କଷ୍ଟ ନ ପାନ୍ତୁ ଯେମନ୍ତେ ମୋର ପରଜାଏ ।
ଏମନ୍ତ କହି ମନ୍ତ୍ରୀକି ରାଜ୍ୟ ସମର୍ପିଣ
ଜମ୍ବୁଦ୍ୱୀପରେ ମିଳିଲା ବିଲଙ୍କା ରାବଣ ।
କଷ୍କିନ୍ଧ୍ୟା ନଗରେ ଯାଇଁ ପ୍ରବେଶ ହୋଇଲା
ବାଲୀ ବାଲୀ ବୋଲି ସିଂହଦ୍ୱାରେ ଡାକଦେଲା
ବାନର ତାହାକୁ ଦେଖି ହୋଇଲେ ଖଡାଇ
ଦଧିମୁଖ ନାମେ ଏକ କପି ଦ୍ୱାରେ ଥାଇ ।
ବୋଇଲେ କିଏ ତୁ କମ୍ପା ଆସିଅଛୁ କାହୁଁ
ଏମନ୍ତ ରୂପ ଆମ୍ଭେ ତ କେବେ ଦେଖିନାହୁଁ ।
କାହିଁ ତୋର ଘରଦ୍ୱାର ଖୋଜୁ କି ନିମନ୍ତେ
ନୃପତି ନିଅବକାଶେ ଅଛନ୍ତି ଏକାନ୍ତେ ।
ରମଣୀଗଣଙ୍କ ସଙ୍ଗେ କରୁଛନ୍ତି କ୍ରୀଡ଼ା
କିଛିକ୍ଷଣ ଦ୍ୱାରେ ତୁମ୍ଭେ ହୋଇଥାଅ ଛିଡ଼ା ।
ବାହାର ଅବକାଶକୁ କରିବେ ସେ ବିଜେ
ଏମନ୍ତ ଶୁଣି ଦନୁଜ କହେ ମହାତେଜେ ।
ତୁମ୍ଭେ ବଣପଶୁ ତୁମ୍ଭ ବୁଦ୍ଧି ଅବା କେତେ
ବିଲଙ୍କା ରାଜନ ବୋଲି ନ ଜାଣ କି ମୋତେ
ଦଧିମୁଖ ବୋଇଲା ଯେ କେ ଜାଣେ ବିଲଙ୍କା
କି ନିମନ୍ତେ ଆସିଅଛୁ କହ ଛାଡ଼ି ଶଙ୍କା ।
ଏମନ୍ତ ଶୁଣି ଆହୁରି କୋପିଲା ରାକ୍ଷସ
ବୋଇଲା ଏକ୍ଷଣି ତୋତେ କରିବି ବିନାଶ ।
ନ ଜାଣୁ ସହସ୍ରଶିର ରାବଣ ମୋ ନାମ
ଯାହାର ଦୁଆରେ ବାଡ଼ତାଟି ଖଟେ ଯମ ।
ଅଗ୍ନି ଯାହାର ବସନ କାଚେ ଆସି ନିତି
ଯାହାର ଆଗରେ ପାଞ୍ଜି କହେ ବୃହସ୍ପତି ।
ପବନ ଦେବତା ଆସି ପକାଏ ଚାମର
ଯାହାର ଦୁଆରେ ବେଦ ପଢ଼େ ବେଦବର ।
ତେତିଶ କୋଟି ଦେବତା ଯାର ଆଜ୍ଞାକାରୀ
ଯାହାକୁ ନିତି ଖଟନ୍ତି ଲକ୍ଷେ ପରିବାରୀ ।
ସାତପଦ୍ମ ରଥୀ ଯାର ଦଶପଦ୍ମ ସେନା
ଏଗାର ହଜାର ଯାର ମଦମତ୍ତ ଜେନା ।

ହାତୀ ଘୋଡ଼ା ରଥୀ ରଥ କେ ପାରିବ କଳି
ଚଉଦ ବ୍ରହ୍ମାଣ୍ଡେ ଯେହୁ ଏକା ମହାବଳୀ ।
ତାହାକୁ ତୁ ପରିହାସ କରୁଛୁ ମାଙ୍କଡ଼
ମୁଣ୍ଡ ଛିଡ଼ିଯିବ ତୋର ଖାଇଲେ ଚାପୋଡ଼ ।
କହ ଯାଇ ତୋ ରାଜାକୁ କରୁ ଆସି ରଣ
ତାର ପାଞ୍ଜି ପୋଛିଲାଣି ଜାଣ ଯମରାଣ ।
ଏମନ୍ତ କହି ଗର୍ଜିଲା ପ୍ରତାପୀ ଦଇତ
ଦେଉଳ ଅଟ୍ଟାଳୀ ଘାରୀ ହେଲା ଚୂର୍ଣ୍ଣିଭୂତ ।
କମ୍ପିଲା କଷ୍କିନ୍ଧ୍ୟା ପୁର ଦେଖି ଦଧିମୁଖ
ବୋଇଲା ପୂର୍ବେ ଲଙ୍କାର ରାଜା ଦଶମୁଖ ।
ତୁ ଯେମନ୍ତେ ଗରଜୁଛୁ ସେ ଗର୍ଜିଲା ଆସି
ଆମ୍ଭେ ବୋଇଲୁ ସମୁଦ୍ର ମଧ୍ୟେ ବାଲୀ ପଶି ।
ସନ୍ଧ୍ୟା କରୁଅଛି ତୁମ୍ଭେ ରହ କିଛିକ୍ଷଣ
ନ ମାନି ବାଲୀ ପାଖକୁ ଗଲା ସେ ରାବଣ ।
ସନ୍ଧ୍ୟା କରୁଥିବା ବେଳେ ଭେଟିଲା ସେ ଯାଇ
ଧରିବା ନିମନ୍ତେ ଗଲା ତା ପାଖକୁ ଧାଇଁ ।
ଜାଣି ତାକୁ କାଖତଳେ ବାଲୀ ଦେଲା ଜାକି
ଶେଷକଲା ନିତ୍ୟକର୍ମ ଯାହାଥିଲା ବାକି ।
ଘରେ ଆସି ଓଦାଲୁଗା ପାଲଟିଲା ବେଳେ
କାଖରୁ ଖସି ରାବଣ ପଡ଼େ ଭୂମିତଳେ ।
ଅଚେତନ ହୋଇଅଛି ନାହିଁ ତାର ଚେତା
ଯାହାର ମୂଡ଼ା ଏହାର ଦଶଗୋଟା ମଥା ।
ଏହାକୁ ବନ୍ଦୀରେ ରଖାଯାଉ ଦିନା କେତେ
ବୁଝିବା ନା ଆସିଥିଲା ଏଠେ କି ନିମନ୍ତେ ।
ଏମନ୍ତ ଶୁଣି ତାହାକୁ ପକାଇଲୁ ବାନ୍ଧି
ମାସକ ଯାଏ ସେ ଏଠେ ମଲା କାନ୍ଦି କାନ୍ଦି ।
ଆମ୍ଭଙ୍କୁ ବହୁତ କରି କହିବାରୁ ଆମ୍ଭେ
ରାଜାକୁ ଯେ ବୁଝାଇଲୁ କହି ନାନା ଭାବେ ।
ଛାମୁକୁ ନେଲୁ ତାହାକୁ କଲେ ସେହି ଦୟା
ଶରଣ ପଶି ହୋଇଲା ସେଦିନ ନିର୍ଭୟା ।
ମାୟାବୀ ନାମେ ଗୋଟାଏ ରାକ୍ଷସ ଥିଲା
ତୋ ପରି ଏମନ୍ତ ଆସି ବହୁତ କହିଲା ।
ରାତି ଅଧେ ଶୋଇଥିଲେ ବାଲୀ ବୀରମଣି
ନିଦ୍ରୁ ଉଠିଆସି କୋପେ ମଲ ଚିଷ୍ଟ ବେନି ।
ବିଧାଏ ମାଇଲେ ସେହି ଷଣ୍ଢରୂପ ହୋଇ
ପଳାଇଲା ତା ପଛରେ ଗଲା ସେ ଗୋଡ଼ାଇ ।

ପାତାଳେ ଲୁଚିଲା ଯାଇ ପ୍ରତାପୀ ଅସୁର
ତାହାକୁ ଖୋଜି ମାଇଲେ ବାଳୀ ନୃପବର ।
ଲଢ଼ିଲା ପ୍ରତାପୀ ଦୈତ୍ୟ ବରଷକ ଯାଏ
ପାତାଳେ ମାଇଲେ ତାକୁ ଏହି ବାଳୀ ରାୟେ ।
ତାହାର ଭାଇ ଦୁନ୍ଦୁଭି ନାମେ ଏକ ଦୈତ୍ୟ
ସେ ଆସି ଏମନ୍ତ ଗାଳି ଦେଲାକ ବହୁତ ।
ନ ସହି ପାରି ସେ ବାଳୀ କଲା ଆସି ରଣ
ଧଇଲା ସେ ଦାନବର କୋପରେ ଚରଣ ।
ବୁଲାଇ ବୁଲାଇ ତାକୁ ଫିଙ୍ଗି ଦେଲା ରାଗେ
ଋଷ୍ୟମୂକ ପର୍ବତରେ ପଡ଼ି ମଲା ବେଗେ ।
ଆଜଯାଏ ପଡ଼ିଅଛି ଦେଖ ଅସ୍ଥି ଯାଇଁ
ମେରୁ ଗିରି ପରି ତାର ପଞ୍ଜରା ଅଟଇ ।
ଚାରି ସମୁଦ୍ରରେ ନିତି କରେ ତରପଣ
ସୂର୍ଯ୍ୟ ଉଦେ ନ ହେଉଣୁ ଆସଇ ଫେରିଣ ।
ସହସ୍ର ଗୋଟା ମୁଣ୍ଡ ତୁ ବହି ଗର୍ବକରୁ
ଉବୁରି କି ଯିବୁ ଆଉ ବାଳୀର ଆଗରୁ ।
ଏମନ୍ତ କହିବାବେଳେ ଅଇଲାକ ବାଳୀ
ଅସୁର ଗର୍ଜନ ଶୁଣି କୋପେ ପରଜ୍ୱଳି ।
ଦେଖିଲା ସହସ ଗୋଟା ଶିର ଅଛି ବହି
ଲାଞ୍ଜକୁ ବଢ଼ାଇଦେଲା କିଛି ହିଁ ନ କହି ।
ଦୁଇସହସ୍ର ହାତକୁ ଲାଞ୍ଜେ ଦେଲା ବାନ୍ଧି
ଚଳି ନ ପାରିଲା ଦୈତ୍ୟ ହେଲା ତହିଁ ବନ୍ଦୀ ।

ମୁଣ୍ଡ ଉପରେ ବସିଣ ବାଳି ମହାବୀର
ଯେସନେ ବୃହତ ବୃକ୍ଷ ଉପରେ ବାନର ।
ହୁଁକାର କରି ଏ ଡାଳୁ ସେ ଡାଳକୁ ଯାଇ
ତେସନେ ଅସୁର ମୁଣ୍ଡେ ଚଢ଼ି ଯାଏ ଡେଇଁ ।
ଏ ମୁଣ୍ଡରୁ ସେ ମୁଣ୍ଡକୁ କୁଦାମାରି ଯାଏ
ଅଚଳ ହୋଇ ରହିଛି ଦୈତ୍ୟ ଗିରିପ୍ରାୟେ ।
ଏମନ୍ତ ବାଳୀର ପାଦଭାରା ହେଲା ଗରୁ
ରୁଧିର ବହିଲା ଦୈତ୍ୟ ନାସିକା ମୁଖରୁ ।
ନିସତ ହୋଇବା ଦେଖି ବାଳୀ ମହାବୀର
ବୁଲାଇଲା ଲାଞ୍ଜେ ଧରି ଚକ୍ର ପରକାର ।
ଫିଙ୍ଗିଦେଲା ପଡ଼ିଲା ସେ ସହସ୍ର ଯୋଜନେ
ପ୍ରହରକେ ଚେତାପାଇ ବସି ମନେ ମନେ ।
ଭାଳଇ ବାନର ମୋତେ କି ନ କଲା ଆଜ
ଜାଣିଲି ମୋଠାରୁ ବେଶି ତାର ବଳବୀର୍ଯ୍ୟ ।
ତା ସଙ୍ଗେ ବିବାଦ କଲେ ଯଶ ନାହିଁ ମୋର
ଏମନ୍ତ ଭାଳି ଘରକୁ ଚଳିଲା ଅସୁର ।
କିଛି ନ କହି ରହିଲା ଆପଣାର ପୁରେ
ବୃହସ୍ପତି ଜଣାଇଲେ ବାସବ ଛାମୁରେ ।
ଶୁଣି ପୁରନ୍ଦର ବୋଲେ ଧନ୍ୟ ତୁରେ ବାଳୀ
ତିନିଭୁବନରେ ନାହିଁ ତୋ ସମାନ ବଳୀ ।
ଏମନ୍ତେ ବହୁତ ତାକୁ ପରଶଂସା କଲେ
ଅଚ୍ୟୁତ ପାଦୁକା ଭଜି ଚକ୍ରଧର ବୋଲେ ।

—o—

## ଶୂରସେନ ଦ୍ୱାରା ସହସ୍ରଶିରାର ନାଗପାଶ ବନ୍ଧନ ଓ ମୋଚନ

ଏଥୁ ଅନନ୍ତରେ କଥା ଶୁଣ ଶାକମ୍ବରୀ
କେତେକ ଦିନେ ବିଲଙ୍କାଦେଶ ଦଣ୍ଡଧାରୀ ।
ମନେ ବିଚାରିଲା ମୋତେ ମୁନି ଯେ ନାରଦ
କହିଥିଲେ ତିନି ଜଣ ଅଟନ୍ତି ଅସାଧ ।

ମୁନିର କଥା ଅନ୍ୟଥା ନୋହିଲା ଦେଖିଲି
ଦୁଇ ବୀରଠାରୁ ଅପମାନ ତ ପାଇଲି ।
ଆଉ ଏକ ବୀର କଥା କହିଥିଲେ ମୋତେ
ବୁଝିବା ନା ସେହି ବୀର ଅଟଇ କେମନ୍ତେ ।

ଏମନ୍ତ ଭାଳି ମନ୍ତ୍ରୀର ହସ୍ତେ ରାଜ୍ୟ ଦେଇ
ଜମ୍ବୁଦ୍ୱୀପରେ ମିଳିଲା ଦୈତ୍ୟପତି ଯାଇଁ ।
ହଇହୟ ଦେଶକୁ ସେ ଗଲା ତହୁଁ ଚଳି
ପ୍ରତାପ ମାଁରତଣ୍ଡ ସେ ଦୈତ୍ୟ ମହାବଳୀ ।
ରାଜ୍ୟରେ ପଶି ବହୁତ ଦେଶ ଗ୍ରାମ ନାଶି
ଗୋଠା ଗୋଠା ଧରି ଗିଳେ ଗୋରୁ ଯେ ମଇଁଷି
ଯେବଣ ମାନବ ଆସି ପଡ଼ଇ ତା ଆଗେ
ତାହାକୁ ଧରି ଉଦରେ ଭରିଦିଏ ବେଗେ ।
ଭୟେ ରାଜ୍ୟଲୋକେ ଯାଇଁ କଲେକ ଗୁହାରି
ଯେ ମଣିମା ହଇହୟ ବଂଶ ଦଣ୍ଡଧାରୀ ।
କାହୁଁ ଅସୁର ଗୋଟାଏ ପଶିଲା ତୋ ପୁରେ
ସହସ୍ରଗୋଟା ବଦନ ଶୃଙ୍ଗ ପରକାରେ ।
ମୁଖ ତାହାର ପର୍ବତ ଗୁହାଠାରୁ ବଡ଼
ଦୁଇସହସ୍ର ଯେ ଭୁଜ ଦୁଇଗୋଟା ଗୋଡ଼ ।
ଗୋରୁ ମଇଁଷି ମାନବ ଯେ ପଡ଼େ ତା ଆଗେ
ତାହାକୁ ଧରି ଉଦରେ ଭରିଦିଏ ବେଗେ ।
ତାହାର ରୂପ ଦିଶଇ ଅତି ଭୟଙ୍କର
ଶୁଣି ପାର୍ବତୀ ବୋଇଲେ ହେ ପ୍ରଭୁ ଶଙ୍କର ।
କଥାର ସନ୍ଧିତ ଏଥି ରହିଗଲା ପୁଣି
ପୂର୍ବେ ମୋତେ କହିଥିଲେ ପରା ଶୂଳପାଣି ।
ବରଷକେ ଥରେ କରେ ଦାନବ ଆହାର
ମାହେନ୍ଦ୍ର ବେଳାରେ ଦିଏ ବଢ଼ାଇଣ କର ।
ଯାହା ପାଏ ତାହା ଖାଏ ନାହିଁ ତା ବାରଣ
ଆଜି କେମନ୍ତେ ଖାଇଲା କ୍ଷୁଧା ନାହିଁ ପୁଣ ।
ଏମନ୍ତ ଶୁଣି ଶଙ୍କର ବୋଇଲେ ଗୋ ସଖୀ
ଭଲ ପଚାରିଲୁ ପଛକଥା ମନେ ରଖି ।
ଆମ୍ଭେ ତ ଭୋଳା ମହେଶ କହିଯାଉ ଭୋଳେ
ଦାନବ ପାଳି ପଡ଼ିଲା ଜାଣ ସେହି କାଳେ ।
ପୁରେ ଥିଲେବେଳେ ସିନା ଜଣାନ୍ତି ସେବକେ
ସ୍ନାନ ମାର୍ଜଣା ହୋଇଣ ଚଳଇ ସେ ଲୋକେ ।
ତାହାର ପାଳି ଜାଣିଣ ହଲଙ୍କାର ପ୍ରାଣୀ
ପଳାନ୍ତି ଆଗେ ନ ରହି ବେଳକାଳ ଜାଣି
ଏଠାରେ ତାହାକୁ କିଏ କହିବାକୁ ନାହିଁ
ପେଟ ପୋଡ଼ି ଯିବାରୁ ସେ ଯାହା ଯହିଁ ପାଇ ।
ତାହାକୁ ଗିଳି ଦିଅଇ କରକୁ ବଢ଼ାଇ
ଉଦର ପୂରିବା ଯାଏ କିଛି ନ ମାନଇ ।

ଦୁଇପ୍ରହର ପର୍ଯ୍ୟନ୍ତେ ଖାଇଲା ଅସୁର
ତୃପତି ହୋଇଲା ଯହୁଁ ପୂରିଲା ଉଦର ।
ଏଥୁଅନନ୍ତରେ କଥା ଶୁଣ ଦେଇ ମନ
ଆସ୍ଥାନରେ ବସିଥିଲା ରାଜା ଶୂରସେନ ।
ବିଷ୍ଣୁର ପରମ ଭକ୍ତ ଅଟଇ ସେ ରାଜା
ଗୁହାରି କଲେକ ଯହୁଁ ଆସିଣ ପରଜା ।
ଶ୍ରୀହରିଙ୍କି କରଯୋଡ଼ି କଲା ରାଜା ସ୍ତୁତି
ଆହେ ପ୍ରଭୁ ଜଗନ୍ନାଥ କମଳାର ପତି ।
ଦୁରିତ ନାଶନ ଦୀନବନ୍ଧୁ ତୋର ନାମ
ଭକ୍ତ ବେଦନା ନ ସହି ପୁରୁଷ ଉତ୍ତମ ।
ଭବଗ୍ରାହୀ ନାଥ ତୁହି ଅନାଥର ବନ୍ଧୁ
ଦୁଃଖୀ ଦୁଃଖ ନିବାରଣ କୃପାମୟ ସିନ୍ଧୁ ।
ବିପଦ ସାଗରୁ ମୋତେ କରିବା ଉଦ୍ଧାର
ମୁହିଁ ଦୀନଜନ ତୋର ପାଦ ପରିଚର ।
କାହିଁ ଆସି ଦାନବେକ ହୋଇଲା ବଇରି
ବାରେକ ଉଦ୍ଧାର କର ପ୍ରଭୁ ଦଇତାରି ।
ଏମନ୍ତେ ଅନେକ ସ୍ତୁତି କରି ନୃପମଣି
କରେ ଧନୁଶର ଘେନି ଉଠିଲା ତକ୍ଷଣି ।
ଦେଖିଲା ଦାନବ ଦିଶେ ପର୍ବତ ଆକାର
ବିନ୍ଧିଲା ବହୁତ ଶର ନ କରି ବିଚାର ।
ଗିଳଇ ଦାନବରାଜ ବଦନ ବିସ୍ତାରି
ରାହୁ ଗ୍ରହ ତପନକୁ ଗ୍ରାସ କଲା ପରି ।
ଶୂରସେନ ଶରଯାକ ସୂର୍ଯ୍ୟତେଜ ଜିଣି
ସମସ୍ତ ଭକ୍ଷିଲା ଦୈତ୍ୟ ଦେଖି ନୃପମଣି ।
ଗଦା ମୁଦ୍ଗର କୁନ୍ତ ଅସିପତ୍ର ଭାଲ
ଶକତି ପରିଘ ଶୂଳ ପଟ୍ଟିଶ ମୂଷଳ ।
ମାଇଲା ସେତେକ ପଡ଼ି ଅଙ୍ଗେ ହେଲା ଚୂରି
ବ୍ରହ୍ମଶର ଶୀଳବାଣ ଭୁଜବାଣ ମାରି ।
ପାଶୁପତ ଅଗ୍ନିବାଣ ନାରାୟଣ ଶର
ମାଇଲାକ ଶୂରସେନ କରିଣ ହୁଁକାର ।
ପ୍ରତାପୀ ଅସୁର ଦେହେ ତିଳେ ନ ଭେଦିଲା
ଦେଖି ନୃପତିର ମନେ ଭୟ ଜାତ ହେଲା ।
ହୃଦପଦ୍ମେ ସୁମରିଲା ଗୋବିନ୍ଦ ଗୋପାଳ
ଅନନ୍ତ ଅଚ୍ୟୁତ ହରି ପ୍ରଭୁ ଆଦିମୂଳ ।
ଏ ଘୋର ସଙ୍କଟୁ ମୋତେ ରକ୍ଷାକର ଆସି
ଭକତର ବେଦନା ନ ସହି ବ୍ରହ୍ମରାଶି ।

ବୋଇଲେ ହେ ଶୂରସେନ ଅବଧ ଦଇତ
ଅକାଟ୍ୟ ଅଭୁତ ସେହି ଲକ୍ଷଶିର ସୁତ ।
ଏହି ନାଗପାଶ ଅସ୍ତ୍ର ଦେଉଅଛୁ ଘେନ
ଏଥିରେ ସେ ଦାନବକୁ କର ତୁ ବନ୍ଧନ ।
ଏମନ୍ତ କହି ଅସ୍ତ୍ରକୁ ଦେଲେକ ବଢ଼ାଇ
ସାନନ୍ଦ ହୋଇ ଅସ୍ତ୍ରକୁ ଗୁଣରେ ବସାଇ ।
ଶ୍ରୀହରି ସୁମରି ଗୁଡ଼ ଦେଲ ବୀରମଣି
ମହାନାଗେ ଅଇଲେ ଯେ ଶୂନ୍ୟେ ଟେକି ଫଣି
ଫୁଁଫୁଁକାର କରି ବିଷ ଦନ୍ତରେ ସୂରାଇ
ବାନ୍ଧି ପକାଇଲେ ତାକୁ ଲାଞ୍ଜରେ ଗୁଡ଼ାଇ ।
ବିଷ ଦନ୍ତ ପ୍ରହାରିଲେ ବ୍ରହ୍ମରନ୍ଧ୍ରେ ତାର
ଘୋଟିଲା ଗରଳ ଜ୍ୱାଳା ଭୁଟିଲା ଶରୀର ।
ପଡ଼ିଲାକ ମୋହ ଯାଇ ଭୂମିର ଉପରେ
ତାହାର ପାଖକୁ କେହି ନ ଗଲେକ ଡରେ ।
ପର୍ବତ ଆକାରେ ଦୈତ୍ୟ ପଡ଼ିଅଛୁ ତହିଁ
ଘଡ଼ିକରେ ବିଷଯାକ ଜୀର୍ଣ୍ଣ କରିଦେଇ ।
ଉଠିବାକୁ ଇଚ୍ଛା କରେ ପ୍ରତାପୀ ଦଇତ
ନିଗୂଢ଼େ ବାନ୍ଧିଅଛନ୍ତି ସର୍ପେ ରଜ୍ଜୁ ବତ ।
ଚଳି ନ ପାରଇ ଦେହ ଜଳଇ ପୋଡ଼ଇ
ଶରଣ ଶରଣ ବୋଲି ମୁଖେ ଫୁକାରଇ ।

ହେ ବୀର ମୁଁ ତୋର ପାଦେ ପଶିଲି ଶରଣ
ଜାଣିଲି ତୁ ପୃଥ୍ୱୀରେ ଅଟୁ ବଡ଼ଜଣ ।
ବାରେକ ରକ୍ଷାକର ତୁ ମୋହର ଜୀବନ
ଏମନ୍ତ ଶୁଣି ଦୈତ୍ୟର କାତର ବଚନ ।
ଦଶ୍ୱାନ୍ତ ରାଜା ଗରୁଡ଼ ଶର ଦେଲା ପେଷି
ନାଗେ ଡରି ପଳାଇଲେ ଦୈତ୍ୟ ଉଠିବସି ।
ବୋଇଲେ ମୋହର ତୁହି ହୋଇଲୁ ମଇତ୍ର
ନୃପତି ତାହାକୁ କହି ଆଶ୍ୱାସି ବହୁତ ।
ଗଉରବ କଲା ତହୁଁ ଦାନବ ସେ ଗଲା
ବିଲଙ୍କା ଭୁବନେ ଯାଇ ନିଶ୍ଚିନ୍ତେ ରହିଲା ।
ଏକଥାଯାକ କାହାରି ଆଗରେ ନ କହି
ସୁଖେ ରାଜ୍ୟକୁ ପାଳିଲା ଭୋଗକଲା ମହୀ ।
ଶୁଣିଲୁ ତ ଆଦ୍ୟ ପ୍ରାନ୍ତ କରି ସବୁ କଥା
ଏମନ୍ତ ବୀର ଅଟଇ ସେ ସହସ୍ର ମଥା ।
ବିଲଙ୍କା ରାମାୟଣର ଏ ଉତ୍ତରକାଣ୍ଡ
ଶୁଣି ଶୁଣାଇଲା ଲୋକ ଜିଣି ଯମଦଣ୍ଡ ।
ବଇକୁଣ୍ଠେ ଯାଇ ବିଷ୍ଣୁ ଆଶ୍ରାରେ ରହଇ
ଚକ୍ରଧର ଶ୍ରୀ ଅଚ୍ୟୁତ ପଦ୍ମର ଭଜଇ ।

—o—

## ଲକ୍ଷଶିରର ବରଲାଭ ଓ ବିଲଙ୍କା ଧ୍ୱଂସ ଶୁଣି କୋପ ଏବଂ ପୁନରପି ବିଲଙ୍କା ନିର୍ମାଣ

ବୋଇଲେ ପାର୍ବତୀଦେବୀ ଆହେ ଭୋଳାନାଥ
ଲକ୍ଷଶିର ହୃଦେ ହେଲା ବଇରାଗ ଜାତ ।
ପିତୃ ବଇରୀ ନାଶିବା ପାଇଁ ରାଜ୍ୟ ଛାଡ଼ି
ତପ ଆରମ୍ଭିଲା ବସି ଯୋଗାସନ ମାଡ଼ି ।
ଅନାଦିବ୍ରହ୍ମ ପାଇବା ଆଶାରେ ଅସୁର
ପାଇଲା କି ନ ପାଇଲା କହ ହେ ଶଙ୍କର ।
ଏମନ୍ତ ଶୁଣି ବୋଇଲେ ଦେବ ଶୂଳପାଣି
ମନ ଦେଇ ଶୁଣ ଲକ୍ଷଶିରର କାହାଣୀ ।

ଦେବଙ୍କ ଛଳେ ଶ୍ରୀରାମ ଘେନି ହନୁମାନ
ପୋଡ଼ି ନାରଖାର କଲେ ବିଲଙ୍କାଭୁବନ ।
ଅସୁର ଅସୁରୀ ତହିଁ ନ ରଖିଲେ ଏକ
କେବଳ ରହିଲା ଏକା ବିଲଙ୍କା ନାୟକ ।
ନ ମାରି ପାରିଲେ ତାକୁ ରଘୁକୁଳମଣି
ଦେବଙ୍କ ସଭା ମଧ୍ୟରେ ବୃହସ୍ପତି ଭଣି ।
ରାମଙ୍କ ହସ୍ତେ ଦାନବ ନ ମରିବେ କେବେ
ଉପାୟ କର ଏଥକୁ ମିଳି ସର୍ବ ଦେବେ ।

ଯେବେ ନ ଆସିଲେ ଏଥେ ସୀତା ଠାକୁରାଣୀ
ଅମର ହୋଇ ଦାନବ ସ୍ୱର୍ଗ ନେବ ପୁଣି ।
ଏମନ୍ତ ଶୁଣି ବାସବ ବୋଇଲେ ହେ ଗୁରୁ
ସୀତା କି ସାର ଅଟନ୍ତି ଶ୍ରୀରାମଙ୍କଠାରୁ ।
ଏଥିରେ ବଡ଼ ସନ୍ଦେହ ଉପୁଜିଲା ମୋର
ଶୁଣି ଗୁରୁ ବୋଇଲେ ହୋ ଶୁଣ ସୁନାସୀର ।
ରମ୍ଭ ଦାନବର ବଂଶେ ଜାତ ଏ ରାବଣ
ତେଣୁ ରାମ ହସ୍ତେ ନାହିଁ ଏହାର ମରଣ ।
ଅଗ୍ନି ଦେବତା ରମ୍ଭଙ୍କୁ ଦେଇଛନ୍ତି ବର
ରମ୍ଭବଂଶେ ଜନମିବେ ଯେତେକ ଅସୁର ।
ପୁରୁଷ ହସ୍ତରେ ମୃତ୍ୟୁ ନ ହୋଇବ କେଭେ
ତେଣୁ ଯୁଗେ ଯୁଗେ ଆଦ୍ୟମାତା ଜନମିବେ ।
ସେହି ଆଦ୍ୟମାତା ଜାଣ ସର୍ବତାରୂପେ ଜାତ
ସୀତା ଅଇଲେ ମରିବ ପ୍ରତାପୀ ଦଇତ ।
ସୀତାଦେବୀ ଦୁର୍ଗାଠାରୁ ପଞ୍ଚଶର ପାଇ
ବନ୍ଦିଲାମାନେ ଦାନବ ଅଙ୍ଗ ତୁଳା ହୋଇ ।
ବଜ୍ରଅଙ୍ଗ ତୁଟିଯିବ କୋମଳାଙ୍ଗ ହେବ
ରାମଙ୍କ ବାଣେ ମରିବ ପ୍ରତାପୀ ଦାନବ ।
ଶ୍ରୀରାମ ସୀତାଙ୍କ ଆଗେ କରିଛନ୍ତି ପଣ
ଏକାକେ ଯାଇଁ ମାରିବି ଲଙ୍କା ରାବଣ ।
ଲୁହାମଇ ବୁଲାଇବି ଲଙ୍କା ନଗରରେ
ଜଣେ କେହି ନ ରହିବେ ତାହାର ବଂଶରେ ।
ଅସୁର ଅସୁରୀ ଏକ ନ ରଖିବି ତହିଁ
ଏମନ୍ତ ପ୍ରତିଜ୍ଞା କରି ଆସିଛନ୍ତି କହି ।
ତେଣୁ ରାମ ନ କହିବେ ସୀତା ଆଣିବାକୁ
ପ୍ରତିଜ୍ଞା ତ ନ ରହିବ ଆଣିଲେ ତାହାଙ୍କୁ ।
ପ୍ରତିଜ୍ଞାବନ୍ତର ଯେବେ ପ୍ରତିଜ୍ଞା ନ ରହେ
ମରଣଠାରୁ ଅଧିକ ତାକୁ କଷ୍ଟ ହୁଏ ।
ଶ୍ରୀରାମ ପ୍ରତିଜ୍ଞାବନ୍ତ ପୁରୁଷ ଅଟନ୍ତି
ପରିହାସ କରିବେ ତ ତାଙ୍କୁ ମହାସତୀ ।
ଏଣୁ ଅବଧ ହୋଇଲା ଜାଣ ଏ ଅସୁର
ଉପାୟେ ସତୀଙ୍କ ଆଣ ଏ ଲଙ୍କାପୁର ।
ଏମନ୍ତ ଶୁଣି ବାସବ ଚିନ୍ତିତ ହୋଇଲେ
ବୃହସ୍ପତିଙ୍କ ବଦନ ଅନାଇ ରହିଲେ ।
ଘଡ଼ିକ ପରେ କହିଲେ କହ କି କରିବା
କି ଉପାୟେ ଜାନକୀଙ୍କୁ ଏଠାକୁ ଆଣିବା ।

ବୃହସ୍ପତି ବୋଇଲେ ହୋ ନ ହୁଅ କାତର
ସରସ୍ୱତୀଙ୍କୁ ପେଷିବା ରାମଙ୍କ ଛାମୁର ।
ଶ୍ରୀରାମ କଣ୍ଠରେ ବସି ଭୁଲାଇବେ ତାଙ୍କୁ
ଯେବେ ସେ କହିବେ ସୀତାସତୀ ଆଣିବାକୁ ।
ଏମନ୍ତ ଶୁଣି ବାସବ ବ୍ରହ୍ମାଙ୍କୁ କହିଣ
ସରସ୍ୱତୀଙ୍କି ପେଷିଲେ ରାମ ସନ୍ନିଧାନ ।
ରାମଙ୍କ କଣ୍ଠରେ ବିଜେ କଲେ ସରସ୍ୱତୀ
ସୀତା ଆଣିବାକୁ ରାମ କଲେ ସନମତି ।
ହନୁମାନ ଯାଇଁ ସୀତାସତୀଙ୍କୁ ଆଣିଲା
ସୀତା ରାମଙ୍କର ତହିଁ କଥାବାର୍ତ୍ତା ହେଲା ।
ମହାସତୀ ସ୍ୱାମୀଙ୍କୁ ଯେ ନ କହିଲେ କିଛି
ତାହାଙ୍କ ମନ ହରିଲେ କହି କଥା କିଛି ।
ଶ୍ରୀ ଦୁର୍ଗାଦେବୀଙ୍କି କରଯୋଡ଼ି କଲେ ସ୍ତୁତି ।
ପାଞ୍ଚଗୋଟି ଶର ଦେଲେ ପାଇ ସୀତାସତୀ ।
ଗର୍ଭରେ ଭରି ସମରେ ହୋଇଲେ ପ୍ରବେଶ
ଗର୍ଭରୁ କାଢ଼ି ବନ୍ଦିଲେ ମଲା ସେ ରାକ୍ଷସ ।
ରାମ ତାର ମୁଣ୍ଡଯାକ କାଟି ପକାଇଲେ
ଲଙ୍କା ନଗରରେ ଲୁହାମଇ ବୁଲାଇଲେ ।
କେବଳ ଏକା ବଞ୍ଚିଲା ଶତଶିର ପୁଅ
ପୁର ପୋଡ଼ିଯିବା ଦେଖି ପାଇ ମହାଭୟ ।
ପାତାଳପୁରେ ଲୁଚିଲା ମାମୁଁଘରେ ଯାଇ
କାଞ୍ଚନ ଦ୍ୱୀପରେ ଲକ୍ଷଶିର ଯେ ଅଛଇ ।
ଶୁକ୍ରଠାରୁ ମହାମନ୍ତ୍ର ପାଇ ସାଧେ ଯୋଗ
ସହସ୍ର ବରଷ କରି ଅତି କଷ୍ଟ ଭୋଗ ।
ଅନାହତ ଯୋଗ ସାଧି ସାଧି ହେଲା ଯୋଗୀ
ଅନାଦିବ୍ରହ୍ମ ଭେଟିବା ପାଇଁ ଅଛି ଲାଗି ।
ଭେଟିଲେ ସେ ପଚାରିବ ପିତାଶତ୍ରୁ କଏ
ଜାଣିଲେ ତାକୁ ମାରିବ ଯାଇଁ ଦୈତ୍ୟରାୟେ ।
ଏହି ରାଗ ଦ୍ୱେଷକୁ ସେ ନ ପାରିଲା ଜିଣି
ଅହଙ୍କାରେ ତାରମନ ମଜ୍ଜି ଅଛି ପୁଣି ।
କାହିଁ ଅନାହତ ଯୋଗ ପାରିବ ସେ ସାଧି
ମନ୍ତ୍ରବଳେ ଦାନବର ତପ ହେଲା ସିଦ୍ଧି ।
ଶୂନ୍ୟବାଣୀ ହେଲା ଦୈତ୍ୟ କମ୍ପା କରୁ ତପ
ଅସୁର ବୋଲେ ମାଇଲା କହ କେ ମୋ ବାପ
ଶୂନ୍ୟପୁରୁଷ ବୋଇଲେ ମାଇଲେ କଙ୍କାଳୀ
କେମନ୍ତେ ମାଇଲେ ବୋଲି ପୁଚ୍ଛେ ମହାବଳୀ ।

ଶୂନ୍ୟପୁରୁଷ ବୋଇଲେ ବନ୍ଧ୍ୟ ପରବତେ
ଖଡ଼ଗ ଧରି ଛେଦିଲେ ତା ଶିର କଣ୍ଠେ ।
ଅସୁର ବୋଲେ କାହିଁକି ମାଇଲା ତା କହ
ଶୂନ୍ୟପୁରୁଷ ବୋଲଇ ମହାସେନ ରାୟ ।
ତୋ ବାପକୁ ଦେଖି ଦୂରୁ ଡରେ ପଳାଇଲା
ଖାଇବା ପାଇଁ ତୋ ବାପ ତାକୁ ଗୋଡ଼ାଇଲା ।
ପଳାଇ ନ ପାରି ରାଜା ଅତ୍ୟନ୍ତ କାତରେ
ପଶିଲାକ କଉଶିକୀ ଦେବୀଙ୍କ ମନ୍ଦିରେ ।
ଶରଣ ପଶିଲା ତହିଁ ଦେବୀଙ୍କ ଚରଣେ
କଙ୍କାଳୀ ରୂପରେ ଦେବୀ ମିଳିଲେ ତକ୍ଷଣେ ।
ଖଡ଼ଗରେ କାଟିଦେଲେ ତୋ ବାପର ଶିର
ଏମନ୍ତ ଶୁଣି ବୋଇଲା ପ୍ରତାପୀ ଅସୁର ।
କାହିଁ ଅଛଇ କେମନ୍ତେ ପାଇବି ମୁଁ ତାକୁ
ଶୂନ୍ୟପୁରୁଷ ବୋଇଲେ ଫେରିଯା ପୁରକୁ ।
ପୁରେ ଅବଶ୍ୟ ଭେଟିବୁ ତୋ ପିତୃବଇରି
ଏମନ୍ତ ଶୁଣି ଅସୁର ତପ ତେଜିକରି ।
ଆସିବା ପାଇଁ ପୁରକୁ କରଇ ବିଚାର
ଶତଶିରା ପୁତ୍ର ବଂଶଶିରା ସେ ଅସୁର ।
ଲକ୍ଷଶିରା ଭାରିଯାର ପାଶରେ ମିଳିଲା
କାନ୍ଦିକରି ତା ଆଗରେ ସବୁ ଜଣାଇଲା ।
ଶୁଣି ସେ କାନ୍ଦି କହିଲା ତା ପିତାର ଆଗେ
ପାତାଳକେତୁ ଝିଅକୁ ବୋଇଲା ତୁ ବେଗେ ।
କାଞ୍ଚନଦ୍ୱୀପକୁ ଯାଅ ଆଲୋ ଖୁରଣସୀ
ସେ ସ୍ଥାନରେ ଲକ୍ଷଶିରା ତପ କରେ ବସି ।
ତାହାକୁ କହିଲେ ସେହି ରାମକୁ ମାରିବ
ଦାନବକୁଳକୁ ଘୋର କଷ୍ଟୁ ଉଦ୍ଧାରିବ ।
ପିତାର ମୁଖୁ ଏମନ୍ତ ଶୁଣି ଖୁରଣସୀ
ବିବର ଦେଇ ପାତାଳୁ ମର୍ତ୍ତ୍ୟପୁରେ ଆସି ।
ସଙ୍ଗତେ ଅଛୁ ତାହାର ଦୈତ୍ୟ ବଂଶଶିରା
କାଞ୍ଚନଦ୍ୱୀପକୁ ତହୁଁ ଗଲା ହୋଇ ତ୍ୱରା ।
ଲକ୍ଷଶିରା ଯୋଗ ଭାଙ୍ଗି ଆସିବା ସମୟେ
ଖୁରଣସୀ ପ୍ରଣିପାତ କଲା ସ୍ୱାମୀ ପାୟେ ।
ବଂଶଶିରାହିଁ ପଡ଼ିଲା ପୟରେ ତାହାର
ଗୃଳଣ ଆଖିରୁ ଲୁହ ଗଡ଼େ ନିରନ୍ତର ।
ଖୁରଣସୀ ପୁତ୍ରଶୋକେ କାନ୍ଦି କହେ ଉଚ୍ଚେ
ଆହାରେ ଦଇବ କହି ନିଶ୍ୱାସକୁ ମୁଞ୍ଚେ ।

ଶିରେ କରତାଡ଼ି ବୋଲେ କି କଲୁରେ ବିଧି
ଅପୁତ୍ରିକ ହେଲି ସିନା ଏତେକାଳେ ମୁହିଁ ।
ଆହାରେ ସହସ୍ର ଶିର ବୀର . ଶିରୋମଣି
ଯାହାର ପାଦେ ଖଟଇ ଆସି ବଜ୍ରପାଣି ।
ଯମଦେବତା ଯାହାର କାଚଇ ବସନ
ଯାହାର ଆଜ୍ଞାକୁ ଭାଙ୍ଗି ନ ପାରେ ପବନ ।
ତେଡ଼େ ବଡ଼ ବୀରଗୋଷ୍ଠୀ ମଲା ରାମହାତେ
ଏକଥା ଗୋଟି କହିବି ମୁଁ କାହା ଅଗ୍ରତେ ।
ବିଲଙ୍କାପୁର ବାନରହସ୍ତେ ଗଲା ନାଶ
ଆରେ ବାବୁ ବିଶିରା ତୁ ଧାର୍ମିକ ପୁରୁଷ ।
ବଡ଼ଭାଇଠାରୁ ବାବୁ ବୁଦ୍ଧିମନ୍ତ ଅତି
ବଳବନ୍ତ ବୋଲି ତୋତେ ସମସ୍ତେ ବୋଲନ୍ତି ।
କାହିଁଗଲା ବାବୁ ତୋର ବଳବୁଦ୍ଧି ଯାକ
ଜିଣି ନ ପାରିଲୁ ବାବୁ ବାନର ଗୋଷ୍ଠୀକ ।
ଆରେ ବାବୁ ଶତଶିରା କୁଳର ନନ୍ଦନ
ମହାକ୍ଷତ୍ରୀ ବୋଲାଉ ତୁ ବିଲଙ୍କା ଭୁବନ ।
ସମସ୍ତେ ମଲେରେ କେହି ମାରି ନ ପାରିଲ
ଆପେ ଗଲ ସମସ୍ତଙ୍କୁ ସଙ୍ଗତରେ ନେଲ ।
ମୋତେ କାହିଁପାଇଁ ସଙ୍ଗେ ନ ନେଲରେ ବାବୁ
ଅପୁତ୍ରିକ ହୋଇ କେଉଁ ମୁଖ ଦେଖାଇବୁ ।
ଏକାବେଳକରେ ବାବୁ ଥିଲା ମୃତ୍ୟୁଯୋଗ
ବ୍ୟାଘ୍ରଦଳକୁ କେମନ୍ତ ଗିଳିଦେଲା ମୃଗ ।
ସିଂହ ହାଡ଼କୁ ଶୃଗାଳ ଦେଲା ଆସି ଗିଳି
ବାନରଗୋଷ୍ଠୀ ବିଲଙ୍କାପୁର ଦେଲା ଜାଳି ।
ରାକ୍ଷସଦଳ ମାରଇ ବାନରେକ ଆସି
ଡରେ ତା ପାଖକୁ ବୀରେ ନ ଯାନ୍ତି ଭରସି ।
ମାନବ ଏକା ତା ସଙ୍ଗେ ଅଛଇ ଆବର
କହିବା ଏ ଅସମ୍ଭବ କଥା କା ଆଗର ।
ବିଲଙ୍କାଦେଶରେ ପୁଣି ବୁଲେ ଲୁହାମଇ
ଅଳକାପୁରକୁ ଜିଣି ଶୋଭା ଯେଉଁ ଭୂଇଁ ।
ମଶା ନାକେ ପଶିଗଲା ପ୍ରାୟେ ଗଜପଲ
ମନୁଷ୍ୟ ହାତରେ ମଲେ ବିଲଙ୍କାର ମଲ୍ଲ ।
ଗାତେ ପଶି ସାପକୁ ସେ ମାଇଲା ମଣ୍ଡୁକୀ
ମାର୍ଜାରପଲ ମାଇଲା ଇନ୍ଦୁର କି ଡାକି ।
ମାଙ୍କଡ଼ ହାତରେ ପୁଣି ମରନ୍ତି ଅସୁରେ
ଦେଖି ଫୁଟି ନ ଗଲା ଏ ଆଖି କି ପ୍ରକାରେ ।

ସହିଲା କେମନ୍ତେ ଫାଟି ନ ଗଲା ଏ ଛାତି
ଆଶ୍ଚର୍ଯ୍ୟ ହୋଇ ପୁଚ୍ଛଇ ବଲଙ୍କା ନୃପତି ।
କରେ ବାବୁ ବଂଶଶିରା କାନ୍ଦୁଛୁ କମ୍ପାଇଁ
ଆବର କାନ୍ଦୁଛୁ କମ୍ପା ପାଟ ମହାଦେଇ ।
ଏମନ୍ତ ଶୁଣି ଅସୁର ଶତଶିରା ବସି
ପିନ୍ଧା କାନରେ ଆଖିରୁ ଲୁହଦେଇ ପୋଛି ।
ସକ ସକ ହୋଇ କାନ୍ଦି କହେ ଖନେ ଖନେ
ଲୁହାମଇ ବୁଲିଲାଣି ବଲଙ୍କା ଭୁବନେ ।
ଆହେ ବୃଦ୍ଧ ପିତାମହ ସମ୍ପଦ ସରିଲା
ପିତା ମଲେ ପୁରଯାକ ସବୁ ପୋଡ଼ିଗଲା ।
ଭ୍ରମର ଯେ ଦୁଇପୁବେ ପଡ଼ିଲେ ସମରେ
ଅସୁର ଅସୁରୀ ସବୁ ଗଲେ ଯମପୁରେ ।
ଏକମାତ୍ର ନ ରହିଲେ ବଲଙ୍କାରେ କେହି
ନବର ଉଆସ ହାଟ ବାଟ କିଛିନାହିଁ ।
ଖାଲ ଡିପ ସମତୁଲ କ କହିବ ସ୍ୱାମୀ
ପଳାଇ ଅଇଲୁ ଅତି କଷ୍ଟେ ପ୍ରାଣ ଘେନି ।
କୋପେ ଲକ୍ଷଶିରା ଆଖି ରଙ୍ଗବର୍ଣ୍ଣ କରି
ଦୁଇଲକ୍ଷ ସୂର୍ଯ୍ୟ ଉଦେ କବା ଉଦେଗିରି ।
କି କହିଲୁ କି କହିଲୁ ଆରେ ବଂଶଶିରା
ହିବସେ ବାବୁ ସ୍ୱପନ ଦେଖୁଅଛୁ ପରା ।
କଦଳୀ ଭେଳାରେ କିଏ ଲଙ୍ଘିଲା ସାଗର
କାହାର ଯମଦାଢ଼କୁ ନାହିଁ ମୁଣି ଡର ।
କାଳସର୍ପ ମୁଖରେ କେ ଭରିଲା ଅଙ୍ଗୁଳି
ସୂଚୀମୁନରେ କେ ଦେଲା ମେରୁଗିରି ଟାଳି ।
ବାଘର ହାଡ଼ କେମନ୍ତେ ଶିଆଳ ଗିଳିଲା
କେହୁ ଆସି ବଲଙ୍କାରେ ଏତେକର୍ମ କଲା ।
ସତକରି କହ ବାବୁ ନ ଯାଇ ପରତେ
ଏମନ୍ତ ଜଣେ କେ ବୀର ନାହିଁ ତ୍ରିଜଗତେ ।
ଚଉଦ ବ୍ରହ୍ମାଣ୍ଡ ମୁହିଁ ପାରେ ଓଲଟାଇ
ନିମିଷକେ ସମୁଦ୍ରକୁ ମୁଁ ଶୋଷି ପାରଇ ।
ଯେଉଁ ଲକ୍ଷଶିରା ବୀର ନାମ ଶୁଣି ଯମ
ଡରେ ଶୀତେଇ ପଡ଼ଇ ଟାଙ୍କୁରଇ ରୋମ ।
କାଳ ଦଣ୍ଡ ଧରିଥିଲେ ହସ୍ତୁ ପଡ଼େ ଖସି
ଇନ୍ଦ୍ର କହି ନ ପାରଇ ଯାହାକୁ ଭରସି ।
ସେ ବୀର ଗୋଟା ଥାଉଁରେ ଏକର୍ମ କେକଲା
ଏମନ୍ତ ଶୁଣିଣ ବଂଶଶିରା ଯେ ବୋଇଲା ।

ହେ ସ୍ୱାମୀ ମୁଁ କି କହିବ ଅସମ୍ଭବ କଥା
ମାନବ ଗୋଟା କାଟିଲା ସହସ୍ରେକ ମଥା ।
ଘର ତାର ଅଯୋଧ୍ୟାରେ ନାମ ତାର ରାମ
ଏକାକେ ସେ ଧନୁ ଧରି କଲାକ ସଂଗ୍ରାମ ।
ରଥ ନାହିଁ ଗଜ ନାହିଁ ଅଶ୍ୱହିଁ ଯେ ନାହିଁ
କେବଳ ବାନର ଏକ ସଙ୍ଗରେ ଅଛଇ ।
ତାର ନାମ ହନୁ ସେହି ପୋଡ଼ିଲା ବଲଙ୍କା
ରାଣୀମାନଙ୍କୁ ପୋଡ଼ିଲା ତିଳେ ନାହିଁ ଶଙ୍କା ।
ମାଇଲେ ସେ ନ ମରଇ ବଡ଼ ନିଦାରୁଣ
ପୋଖରୀରୁ ବିଷଖାଇ ନ ମଲା ସେ ପୁଣ ।
ସୁରେଖା ତାକୁ ଗିଳିଲା ତହିଁରେ ନ ମଲା
ବଡ଼ ରାଣୀଙ୍କର ନାକ କାନ କାଟିଦେଲା ।
କି କହିବ ସ୍ୱାମୀ ସେହି କପିର ଯେ ଗୁଣ
କ୍ଷଣକେ ମୂଷା କ୍ଷଣକେ ଗିରି ପରମାଣ ।
ଜଳସ୍ଥଳ ଅନଳକୁ ନାହିଁ ତାର ଭୟ
ଆକାଶ ମାର୍ଗରେ ଉଡ଼ିଯାଏ ପକ୍ଷୀପ୍ରାୟ ।
ସ୍ୱାମୀ ବଜ୍ରହୁଁ କଠିନ ଯାର ଦେହ ଗୋଟା
ଦେଖିଲେ ଭସ୍ମ କରିବ ତାର ମୁଖ ଛଟା ।
ଆଖି ମିଟି ମିଟି କରି ମିଛେ ପଡ଼େ ଶୋଇ
ପାଖକୁ ଗଲେ ସେ ଉଠେ ବିଶ୍ୱମୂର୍ତ୍ତି ହୋଇ ।
ଦାନ୍ତକୁ ଦେଖାଇ ହିଏ ମୁଣ୍ଡକୁ ଟଙ୍ଗାରି
ମଳମୂତ୍ର ତ୍ୟାଗ କରେ ଦେଖିଣ ଅସୁରୀ ।
ଅସୁରଙ୍କୁ ଦେଖି ସ୍ୱାମୀ ଖତାଇ ହୁଅଇ
ସେହି କପି ନାଶକଲା ତୋ ବଲଙ୍କା ଭୂଇଁ ।
ପୁଣି ଲକ୍ଷଶିରା କୋପେ ଉଠିଲା ଗରଜି
ମହାଯୋଗୀ ଶିବଙ୍କର ଯୋଗ ଗଲା ଭାଜି ।
ଦଲ ଦଲ ହେଲା ମହୀ ପର୍ବତ ପଡ଼ିତେ
କଲବଲ ହେଲେ ତହିଁ ଥିଲେ ପ୍ରାଣୀଯେତେ ।
ଡରେ ଦେବତାଙ୍କ ଛାତି ହେଲା ଦକ ଦକ
ଧାମଇଁ ପ୍ରତାପୀ ଦୈତ୍ୟ ହୋଇ ଧକ ଧକ ।
ପଛରେ ଗୋଡ଼ାଇଅଛି ରାଣୀ ଖରଣସୀ
ଧାଏଁ ବଂଶଶିରା ହୋଇ ଅଣ ନିଶ୍ୱାସୀ ।
ଘଡ଼ିକ ମଧ୍ୟେ ମିଳିଲେ ବଲଙ୍କାରେ ଯାଇଁ
ଦେଖି ଲକ୍ଷଶିରା ସେହି ସମତଳ ଭୂଇଁ ।
ଦୁଇଲକ୍ଷ କର ଲକ୍ଷଶିରେ ନେଇ ମାରେ
ଆହାରେ ଦଇବ ବୋଲି କାନ୍ଦି ଉଚ୍ଚସ୍ୱରେ ।

ବୋଲଇ ରେ କାହିଁଗଲୁ ପୁଅ ମୋ ବିଶିର
କାହିଁ ଗଲୁରେ କୁମରମଣି ଶତଶିର ।
ବାବୁରେ ସହସଶିର ଲୁଚିଅଛୁ କାହିଁ
ଜଗତି ଅନ୍ଧାରୀ ରାଣୀହଂସପୁର ନାହିଁ ।
ଏମନ୍ତେ ରୋଦନ କରୁ କରୁ ହେଲା କୋପ
ଦଶିଲା ସେ କାଳାନ୍ତକ ଯମର ସ୍ୱରୂପ ।
ବଂଶଶିରକୁ ବୋଇଲା ଯାଇ ଆରେ ବାବୁ
କଲପାସୁର ମନ୍ତ୍ରୀକି ପାତାଳୁ ଆଣିବୁ ।
ଏମନ୍ତ ଶୁଣି ସେଠାରୁ ଗଲା ବଂଶଶିର
ଖବର ଦେଇ ପାତାଳେ ପଶି ମହାସୁର ।
କଲପାସୁର ଭୁବନେ ମିଳିଲାକ ଯାଇଁ
ଶୁଣି କଲପା ଅସୁର ଅଇଲାକ ଧାଇଁ ।
ମିଳିଲା ସେ ଲକ୍ଷଶିର ସମ୍ମୁଖରେ ତକ୍ଷଣେ
ପ୍ରଣମି ସେ ଲକ୍ଷଶିର ଆଜାର ଚରଣେ ।
ବୋଲଇ ହେ ମନ୍ତ୍ରୀ କହ କି ବୁଦ୍ଧି କରିବା
ରାମ ନର ବାନରଙ୍କୁ କେମନ୍ତେ ପାରିବା ।
କମ୍ପାଇଁ ଆସି ହୋଇଲା ସେ ଆମ୍ଭ ବଇରୀ ।
ସବଂଶ ମାରି ନାଶିଲା ବିଲଙ୍କା ନଗରୀ ।
ଶୁଣନ୍ତ ପରି ମନ୍ତ୍ରୀ ଥାଇଁ ଥାଇଁ ହେଲା ଏହା
କଲପା କହଇ ଶୁଣ ଆହେ ଦୈତ୍ୟନାହା ।
ତପ ଅର୍ଥେ ଏଠାରୁ ତୁ ଗଲୁ ଯେଉଁଦିନ
ବଡ଼ ପ୍ରତାପୀ ହୋଇଲା ତୋହର ନନ୍ଦନ ।
ଦୁଷ୍ଟପଣେ ତିଆରିବା କଥା ନ ରଖିଲା
ଆମ୍ଭଙ୍କୁ ଝିଂଗାସ କରି ବହୁତ କହିଲା ।
ତୋର ଯେତେ ସେନାପତି ଥିଲେ ପୁଣି ତାଙ୍କୁ
ନ ରଖିଲା ବିଲଙ୍କାରେ ଗୋଟିଏ କାହାକୁ ।
ପଳାଇଲେ ଘରଦ୍ୱାର ଭଙ୍ଗି ସେ ସମସ୍ତେ
କେ ପାତାଳେ କେ ସମୁଦ୍ରେ କେଯାଇଁ ବନସ୍ତେ
ରହିଲେ ତାହାର ଡରେ ନ ପଶିଲେ ପୁରେ
ମୁଁ ଯାଇଁ ରହିଲି ବାବୁ ମୋହର ମନ୍ଦିରେ ।
ରାଣୀ ତୋହର ରହିଲା ବାପଘରେ ଯାଇଁ
ଶାଳକଗଣ ତୋହର ନ ଆସିଲେ କେହି ।
ଅପମାନ କରି ତାଙ୍କ ଘରେ ସେ ରହିଲେ
ସହସଶିର ପ୍ରତାପ ସହି ନ ପାରିଲେ ।
ଦେବତାଙ୍କୁ ଖଟାଇଲା ପାଦତଳେ ଆଣି
ରାମ ରୂପରେ ଜନମ ହେଲେ ଚକ୍ରପାଣି ।

ଦେବତାଙ୍କ ଛଳେ କଲେ ସବଂଶେ ସଂହାର
ତୁ ଯେ ବାବୁ ତପ କଲୁ ସହସ୍ରେ ବର୍ଷର ।
ସିଦ୍ଧ ହେଲା କି ନା ବାବୁ ତୋ ମନ କାମନା
ଲକ୍ଷଶିର ବୋଲଇ ଯେ ହୋଇଣ ଉମନା ।
ଶୂନ୍ୟବାଣୀ ହେଲା ମୋତେ ଯାଅତୁହୋ ବେଗେ
କମ୍ପାଇ ତୁ ଦେହ କ୍ଷୀଣ କରୁ ମହାଯୋଗେ
ବିଲଙ୍କାପୁରେ ଭେଟିବୁ ତୋ ପିତା ବଇରୀ
ଏମନ୍ତ ବାଣୀ ମୁଁ ଶୁଣି ତପ ତେଜି କରି ।
ଆସିବା ନିମନ୍ତେ ହେଉଥିଲି ସଜବାଜ
ଏକାଳେ ମିଳିଲା ଶତଶିରର ତନୁଜ ।
କାନ୍ଦି କହିଲା ଏ ସବୁ କଥା ମୋର ଆଗେ
ଶୁଣି ଏଠାକୁ ଅଇଲି ମୁହିଁ ପୁଣି ବେଗେ ।
ବିଲଙ୍କାର ଏ ଦୁର୍ଦ୍ଦଶା ଦେଖି ପୋଡ଼େ ମନ
କି ବୁଦ୍ଧି କରିବା ଏବେ କହ ମନ୍ତ୍ରୀଗଣ ।
ଦେବଙ୍କ ଯୋଗୁ ହୋଇଲା ସିନା ପୁର ନାଶ
ଦେବେ କମ୍ପାଇଁ ରହିବେ ମରାଇ ମୋ ବଂଶ ।
ଯାଉଅଛି ସର୍ଗପୁର ପକାଇବି ଭଙ୍ଗି
ଏମନ୍ତ କହୁଁ କହୁଁ ସେ ଗଲା ପୁଣି ରଗି ।
ହସ୍ତେ ଏକ ଗଦାଧରି ମାଇଲାକ ଶର ।
ସହି ନ ପାରିଲା ମହୀ ତାର ପାଦଭର ।
ଶୂନ୍ୟେ ଉଠିଲା ଦଇତ୍ୟ କଳାମେଘ ଜାଣି
ଦୈତ୍ୟ ଆସିବା ବାରତା ପାଇ ବଜ୍ରପାଣି ।
ଭୟେ ଧାଇଁ ଯାଇ ବ୍ରହ୍ମା ସମ୍ମୁଖରେ କହିଲେ
ଶୁଣି ବେଦବର ବେଗେ ସେଠାକୁ ଅଇଲେ ।
ତେତିଶକୋଟି ଦେବଙ୍କୁ ଘେନି ବେଦବର
ମିଳିଲେ ଯାଇଁ ପ୍ରତାପୀ ଦାନବ ଆଗର ।
ବୋଇଲେ ଦାନବପତି କମ୍ପା ତୋର ରାଗ
ଅକାରଣେ କାହିଁପାଇଁ ନାଶିବୁ ଏ ସ୍ୱର୍ଗ ।
ଆମ୍ଭେତ ତୋହର ଭୃତ୍ୟ କରିନାହୁଁ ଦୋଷ
ବିନାଦୋଷେ ଆମ୍ଭପୁର କରୁଛୁ ବିନାଶ ।
ବ୍ରହ୍ମାଙ୍କ ମୁଖୁଁ ଏମନ୍ତ ଶୁଣି ଦୈତ୍ୟପତି
ବୋଇଲା ନିର୍ଦ୍ଦୋଷୀ କେହ୍ନେ କହ ପ୍ରଜାପତି ।
ବିଲଙ୍କା ଭୁବନ ମୋର ନାଶିଲ କମ୍ପାଇଁ
ପୁତ୍ର ନାତି ମରାଇଲ ରାମକୁ ଅଣାଇ ।
ଏମନ୍ତ ଶୁଣି ବିଧାତା ବୋଇଲେକ ହସି
ନ ବୁଝି ନସୁଝି ସିନା କରୁଅଛୁ ଦୋଷୀ ।

ରାମ ମର୍ତ୍ତ୍ୟବାସୀ ଆମ୍ଭେ ଅଟୁଁ ସ୍ୱର୍ଗବାସୀ
ଆମ୍ଭ ସଙ୍ଗେ ଭେଟ କାହୁଁ ହେଲା ସେହି ଆସି
ଜାତିରେ ମାନବ ସେହି ଆମ୍ଭେ ତ ଦେବତା
ତାହାର ଆମ୍ଭର କାହୁଁ ହେବ କଥାବାର୍ତ୍ତା ।
ତୋହର ତ ସଦାବଦନେ ଆମ୍ଭେ ଆଜ୍ଞାକାରୀ
ତୁ ବୋଇଲେ ତୋ କଥାରେ ଦଣ୍ଡ ସାଜକରି ।
ଶ୍ରୀରାମ ସଙ୍ଗରେ ଯାଇଁ କରିବୁ ସମର
କମ୍ପାଇଁ ତୁ ଚିନ୍ତାକରୁ ବିଲଙ୍କା ଈଶ୍ୱର ।
ପୂର୍ବେ ଯେମନ୍ତେ ବିଲଙ୍କାପୁରୀ ଥିଲା ତୋର
ତହୁଁ ଶତେଗୁଣ କରିଦେବୁ ଯେ ସୁନ୍ଦର ।
କାଲି ପ୍ରଭାତେ ଦେଖିବୁ ସିନା ଆହୋ ରାୟେ
ଗଢ଼ିଦେବୁ ରାତିକରେ ମିଳି ଦେବତାଏ ।
ଏମନ୍ତ ଶୁଣି ଦାନବ ହରଷ ହୋଇଲା
ସେଦିନ ରାତ୍ରେ ଅମରଭୁବନେ ରହିଲା ।
ବିଶ୍ୱକର୍ମାକୁ ହକାରି ବୋଇଲେ ବିଧାତା
ଆହୋ ବିଶ୍ୱକର୍ମା ତୁହି ଛାଡ଼ ସବୁ ଚିନ୍ତା
ବିଲଙ୍କାପୁରୀ ନିର୍ମାଣ କରି ଯାଇ ରାତ୍ରେ
ନ କଲେ ଅସୁର ମୁଖେ ପଡ଼ିବା ସମସ୍ତେ ।
ଗଭୁଁ ହେବ ଶତେଗୁଣ ଯେମନ୍ତ ସୁନ୍ଦର
ତେମନ୍ତ କରି ନିର୍ମାଣ କରି ଯାଇଁ ପୁରୀ ।
ପ୍ରଭାତେ ଯାଇ ଅସୁର ଦେଖି ହେବ ତୋଷ
ନୋହିଲେ ସ୍ୱର୍ଗଭୁବନ କରିବଟି ଧ୍ୱଂସ ।
ବ୍ରହ୍ମା ବଚନେ ତକ୍ଷଣେ ବିଶ୍ୱକର୍ମା ଗଲା
ରାତିକ ମଧ୍ୟେ ବିଲଙ୍କାପୁରୀ ନିର୍ମାଣିଲା ।
ପୂର୍ବେ ଥିଲା ଯେଉଁପରି ଅଟ୍ଟାଳି ଜଗତି
କନ୍ଦି ବିକନ୍ଦି ଅଗଣା ପୁରୀ ଚଉକତି ।
ଉଆସ ନଗର ଉପବନ ଅନ୍ତଃପୁର
ହାତୀଶାଳ ଓଟଶାଳ ପାଚେରୀ ଭଣ୍ଡାର । 167

ହାଟ ବାଟ ଘାଟ ସବୁ ପୂର୍ବପରି କଲା
ରାତି ନ ପାହୁଁ ଆପଣା ପୁରେ ଚଳିଗଲା ।
ପ୍ରଭାତୁଁ ଯାଇଁ ଦାନବ ପୁରକୁ ଦେଖଇ
ଦେବଗଣଙ୍କୁ ବହୁତ ପ୍ରଶଂସା କରଇ ।
ମନ୍ତ୍ରୀକି ଡକାଇ ଆଣି କହିଲା ଅସୁର
ନିର୍ଭୟେ ଆସି ଏ ପୁରେ ରହି ଘର କର ।
ବୀର ମହାବୀର ମୋର ରାହୁତ ମାହୁନ୍ତ
ହାତୀଘୋଡ଼ା ପାଇକ ଯେ ପାତ୍ରମନ୍ତ୍ରୀ ମିତ୍ର ।
ସମସ୍ତଙ୍କୁ କହିଦିଅ ଆସି ସେ ରହନ୍ତୁ
ଧନ ବସନରେ ସବୁ ପୂରାଇ ଦିଅନ୍ତୁ ।
କୁବେରକୁ ଅସୁର ଯେ କହିଲା ଡକାଇ
ଭଣ୍ଡାର ଦିଅ ତୁ ଧନ ରତ୍ନରେ ପୂରାଇ ।
ଡରେ କୁବେର ଦେବତା ଦେଲା ଆଣି ଧନ
ବରୁଣ ଦେବତା ଆଣିଦେଲା ରତ୍ନମାନ ।
ଅସୁର ଅସୁରୀ ଆସି କଲେ ତହିଁ ବାସ
ଶୁଣିଲୁ ତ ଏ ବିଲଙ୍କା ରାମାୟଣ ରସ ।
ଅମୃତଠାରୁ ମଧୁର କର୍ଣ୍ଣପ୍ରିୟ ଅତି
ରାମ ଚରିତ ମୁକତି ପସରା ପାର୍ବତୀ ।
ସୁଧାର ଭଣ୍ଡାର ଏହି ଗ୍ରନ୍ଥଗୋଟି ଜାଣ
ମହାମୁନି ବାଲ୍ମୀକି କରିଛନ୍ତି ବଖାଣ ।
ରାମ ନାମ ନ କହିବା ମୁଖ ଅପବିତ୍ର
ରାମ ନାମ ନ ଶୁଣିବା କର୍ଣ୍ଣ ବିଷପାତ୍ର ।
ରାମ ନାମ ନ ଭଜିଲେ ପିଣ୍ଡ ଅକାରଣ
ରାମ ନାମ ପିଣ୍ଡକୁ ହେ ସର୍ବଦା କାରଣ
ରାମ ନାମ ନାବକୁ ଯେ ଆଶ୍ରା କରି ନରେ
ପାପ ଜଳଧିକି ତରି ଯିବ କ୍ଷଣକରେ ।
ଚକ୍ରଧର ଶ୍ରୀରାମର ଚରଣେ ଶରଣ
ଭବସାଗରୁଁ ଉଦ୍ଧାର ପାଇବା କାରଣ । 150

—*—

## ଶ୍ରୀରାମଙ୍କର ସୈନ୍ୟସହ ବିଲଙ୍କାଯାତ୍ରା ଓ ଲକ୍ଷଶିରାର ଗଦାଘାତେ ଉଡ଼ିବା

ଏଥୁଅନନ୍ତରେ କଥା ଶୁଣ ଗୋ ପାର୍ବତୀ
ପୃଥ୍ୱୀ ଘୋଟିଲେ ଅସୁରେ ତିଳେ ନାହିଁ ସ୍ଥିତ ।
ଦେବତାମାନଙ୍କୁ ଦେଲେ ବହୁତ ଯେ କଷ୍ଟ
ଅନେକ ଗୋରୁ ବ୍ରାହ୍ମଣ ଧରି କରି ନଷ୍ଟ ।
ଦେବସଭାରେ କାନ୍ଦିଲା ପୃଥ୍ୱୀଦେବୀ ଯାଇଁ
ଦେବେ ବିଚାରିଲେ ବସି ସଭାମଧ୍ୟେ ଥାଇ ।
କି ବୁଦ୍ଧି କରିବା ଦୈତ୍ୟ ମରିବ କେମନ୍ତେ
ଚାଲ ଯାଇଁ ଜଣାଇବା ଶ୍ରୀରାମ ଅଗ୍ରତେ ।
ଇନ୍ଦ୍ର ବୋଇଲେ ସମସ୍ତେ ଅଯୋଧ୍ୟାକୁ ଗଲେ
ଅସୁର ଜାଣିବ ନିଶ୍ଚେ ଦେବେ ମେଳ କଲେ ।
ମାତଲିକି ପଠାଇବା ଗୁପତରେ ଯାଉ
ଦେବଙ୍କ ଦୁଃଖ ରାମଙ୍କ ଛାମୁରେ ଜଣାଉ ।
କହି ବୋଲି ଶ୍ରୀରାମଙ୍କୁ ବିଲଙ୍କାକୁ ଆଣୁ
ରାମ ନଇଲେ ପଳାଇ ଯିବା ଏ ଭୁବନୁ ।
ଅସୁରଙ୍କ ପାଦ ସେବା କରି ନ ପାରିବା
ବିଷପାନ କରି ଆମ୍ଭେ ସମସ୍ତେ ମରିବା ।
ଅସୁର ନାଶିବା ପାଇଁ ଶ୍ରୀରାମ ଜନମ
ଦେବଙ୍କ ନିମନ୍ତେ ସିନା ରୂପଧାରୀ ରାମ ।
ଏମନ୍ତ ଭାଳି ସମସ୍ତେ ମାତଲିକି ରାଇ
ଅଯୋଧ୍ୟାପୁରକୁ ଦେଲେ ତୁରିତେ ପଠାଇ ।
ବାକ୍ୟଦେବୀଙ୍କି ବୋଇଲେ ଦେବକାର୍ଯ୍ୟ କରି
ଅଯୋଧ୍ୟାପୁର ଜନଙ୍କ କଣ୍ଠେ ବିଜେ କରି ।
ଯେମନ୍ତେ ରାମ ଏଥକୁ ଆସିବେ ତୁରିତେ
ତହିଁର ବିଚାରମାନ କରି ଯାଇଁ ମର୍ତ୍ତ୍ୟେ ।
ସରସ୍ୱତୀ ରାମକଣ୍ଠେ ବିଜେ କଲେ ଯାଇ
ପୁରଜନଙ୍କୁ ମୋହିଲେ ମୋହିନୀ ଲଗାଇ ।
ମାତଳି ଯାଇ ମିଳିଲା ଅଯୋଧ୍ୟା ନଗରେ
କହିଲା ଦେବଙ୍କ ଦୁଃଖ ରାମଙ୍କ ଆଗରେ ।
ଭୋ ଦେବ ଅଯୋଧ୍ୟାପୁର ମଣ୍ଡନ ରାଘବ
ତୋର ସ୍ୱର୍ଗପୁର ପୁଣି ନେଲେ ଦାନବ ।
ବୁଲାଇଥିଲୁ ଭୋ ଦେବ ବିଲଙ୍କାରେ ମଇ
ପୁଣି ସେହି ହୋଇଲାଣି ଅସୁରଙ୍କ ଭୂଇଁ ।
ଗତୁଁ ଶତଗୁଣ ପୁର ହେଲାଣି ସୁନ୍ଦର
ସହସ୍ରଶିରାର ପିତା ଲକ୍ଷଶିରା ବୀର ।
ବଡ଼ ପ୍ରତାପୀ ଅଟଇ ପୁଅହୁଁ ଅଧିକ
ତା ପାଦେ ସେବା କରନ୍ତି ନିତ ଦେବଲୋକ ।
ବୋଇଲା ଭୋ ଦେବ ଯେବେ ରାମକୁ ମାରିବ
ତେବେ ସ୍ୱର୍ଗ ଭୁବନରେ ସୁଖରେ ରହିବ ।
ଯେବେ ନ ମାରିବ ତାକୁ ଧରିଦିଅ ଆଣି
ମୋର ବଂଶ ମରାଇଛି ତାର ହସ୍ତେ ପୁଣି ।
ଦେବେ କୂଟ କରି ମୋର ପୁର କଲେ ଧ୍ୱଂସ
ଏବେ ମୋ ଶତ୍ରୁକୁ ଆଣିଦିଅ ମୋର ପାଶ ।
ନୋହିଲେ ବାନ୍ଧିବ ଜାଣ ଗୋଟି ଗୋଟିକରି
ଭାଙ୍ଗିବ ଯାଇ ଦେବତାମାନଙ୍କର ପୁରୀ ।
ଦେଖିବା କେମନ୍ତେ ରଖେ କେଉଁ ବାପ ଆସି
ରାମ କି ବଇରୀ ତୁମ୍ଭେ ଅଟ ସିନା ଦୋଷୀ ।
ଏଣୁ ଇନ୍ଦ୍ର ଆଦି ଦେବେ ନ ଆସିଲେ ଡରେ
ମେଳକଲେ ବୋଲି କୋପ କରିବେ ଅସୁରେ ।
ଗୁପତରେ ପଠାଇଲେ ପାଶକୁ ତୋହର
କହି ଅଛଇଟି ଯାହା ଶୁଣ ସୁନାସୀର ।
ରାମଙ୍କୁ କହିବୁ ଯେବେ ନ ମାରିବେ ଦୈତ୍ୟ
ଦେବଗଣଙ୍କର ଜାଣ ମରଣ ନିଶ୍ଚିତ ।
ବିଷପାନ କରି ପଛେ ତେଜିବୁଁ ଜୀବନ
କେତେ ଖଟିବୁଁ ଅସୁର ପାଦେ ରାତିଦିନ ।
ମାତଳି ମୁଖୁଁ ଏମନ୍ତ ଶୁଣି ରଘୁନାଥ
ବୋଇଲେ ମାତଳି ତୁହି ଯାଅ ଯା ତୁରିତ ।
ଇନ୍ଦ୍ରକୁ କହିବୁ ରହିଥାଉ ନିର୍ଭୟରେ
ଅସୁର ବଂଶ ନିପାତ କରିବି ମୁଁ ଶରେ ।
ଲକ୍ଷମୁଖକୁ ତାହାର କାଟିବି ଅବଶ୍ୟ
ଭସ୍ମ କରିବଇଁ ପୁଣି ସେ ବିଲଙ୍କା ଦେଶ ।

ଏମନ୍ତ କହି ମେଲାଣି ଦେଲେ ମାତଳିକ
ଭରତ ଶତ୍ରୁଘନକୁ ଅଣାଇଲେ ଡାକ ।
ମାତଳି କହିବା କଥା କହିଲେ ବୁଝାଇ
ଦେଶ ବିଦେଶକୁ ଚର ଦିଅ ହେ ପଠାଇ ।
ଆସନ୍ତୁ ଯେ ରାଜାମାନେ ସୈନ୍ୟବଳ ଘେନ
ସଜ ହୁଅନ୍ତୁ ଅଯୋଧ୍ୟା ପୁରର ସଇନ୍ୟ ।
ରଥ ଗଜ ଅଶ୍ୱ ସାଜ ଆଣନ୍ତୁ ତୁରିତେ
ଏମନ୍ତ ଶୁଣି ଭରତ ଅନାଇ ଅମାତ୍ୟେ ।
ବୋଇଲେ ଘୋଷଣା ଦିଅ ଅଯୋଧ୍ୟାନଗରେ
ସଜ ହୋଇଣ ଆସନ୍ତୁ ବୀର ମହାବୀରେ ।
ରାଜ୍ୟଦ୍ୱାରକୁ ଚରେ ଚିଠି ଦୂତ ଦିଅ ପେଷି
ରାଜାଙ୍କୁ ଡାକ ଆଣନ୍ତୁ ଯୁଦ୍ଧ କଥା ଭାଷି ।
ପାତ୍ର ମନ୍ତ୍ରୀ ଶୁଣି ଦେଲେ ରାଜ୍ୟରେ ଘୋଷଣା
ବେଗେ ସଜ ହୋଇ ଆସ ରଥୀସେନା ଜେନା
ରାମ ବିଲଙ୍କାକୁ ଯିବେ ଯୁଝିବା ନିମନ୍ତେ
ଏମନ୍ତ ଶୁଣି ବିଚାର କରନ୍ତି ସମସ୍ତେ ।
ଚାଲହୋ ଯିବା ଦେଖିବା ଅସୁରଙ୍କ ରଣ
ଆନନ୍ଦ ହୋଇ ଧାଇଁଲେ ସେନାପତି ଗଣ ।
ସରସ୍ୱତୀ ଦେବୀ ଅଛି ସମସ୍ତଙ୍କୁ ମୋହି
କାହା ମୁଖରେ ନ ଯିବା ପଦ ନ ଆସଇ ।
କେ ବୋଲଇ ଚାଲ ଯିବା ବିଳମ୍ବ ନ କର
ଦେଖି ନ ପାରିଲେ ଯୁଦ୍ଧ ରାମ ରାବଣର ।
ସହସ୍ର ଶିରାକୁ ପୁଣି ମାଇଲେ ସେ ଯାଇଁ
କାହୁଁ ଦେଖିବା ଆମ୍ଭର ଭାଗ୍ୟରେତ ନାହିଁ ।
ଏତେ ଦିନେ ଫିଟିଗଲା ସୁଭାଗ୍ୟ ଆମ୍ଭର
କହିଲେଣି ଯିବା ପାଇଁ ରାମ ରଘୁବୀର ।
ଏମନ୍ତେ ବିଚାରି ଲୋକେ ଆନନ୍ଦେ ଧାମନ୍ତି
ଯାତ୍ରା ଦେଖିବାକୁ ଯେହ୍ନେ ବାଳକ ହୁଅନ୍ତି ।
ତୀର୍ଥ କରିବାକୁ ଯେହ୍ନେ ତୀର୍ଥବାସୀ ଜନ
ଅଯୋଧ୍ୟା ଜନଙ୍କ ମନ ଉଛନ୍ନ ତେସନ ।
ବାଦ୍ୟନାଦରେ ଚମକ ପଡ଼ୁଅଛି ପୁର
ରାଜଦ୍ୱାରରୁ ଅଇଲେ ଶୁଣି ନୃପବର ।
ଦେଖି ରାମ ସଜ ହୋଇ ବିଜେକଲେ ରଥେ
ଭରତକୁ ବୋଇଲେ ତୁ ରହିଥାଅ ଏଥେ ।
କର ଯୋଡ଼ି ଜଣାଇଲା ଭରତ ଭୋ ଦେବ
ମୁହିଁ ଯିବି ତୁମ୍ଭ ସଙ୍ଗେ ଏ କଥାହିଁ ଧ୍ରୁବ ।

ଲକ୍ଷ୍ମଣ ଏକାକେ ରହି ରକ୍ଷାକରୁ ପୁର
ଦେଖିବା କେଡ଼େ ପ୍ରାକର୍ମବନ୍ତ ସେ ଅସୁର ।
ଏମନ୍ତ ଶୁଣି ଶ୍ରୀରାମ ଲକ୍ଷ୍ମଣକୁ ଚାହିଁ
ବୋଇଲେ ବାବୁରେ ପୁର ରଖିଥିବୁ ତୁହି ।
ରାଣୀହଂସପୁର ବାବୁ ରଖିବୁ ଯତନେ
ଏମନ୍ତ କହି ଚଢ଼ିଲେ ପୁଷ୍ପକ ବିମାନେ ।
ସୈନ୍ୟଙ୍କୁ ବୋଇଲେ ସର୍ବେ ବସ ଏଥେଁ ଆସି
ରଥ ରଥୀଘୋଡ଼ାହାତୀ ଦେଶୀ ଯେ ବିଦେଶୀ ।
ଅସ୍ତ୍ର ଶସ୍ତ୍ର ଘେନି ରଥେ ବସ ହୋ ସମସ୍ତେ
ବସିଲେ ଯାଇଁ ସକଳେ ସେ ପୁଷ୍ପକ ରଥେ ।
ବଶିଷ୍ଠ କହିଲେ ଆସି ଶୁଭ ଅନୁକୂଳ
ଘରେ ଘରେ ପୂର୍ଣ୍ଣକୁମ୍ଭ ସ୍ଥାପିଲେ ସକଳ ।
ଅହିଅ ନାରୀଏ ମିଳି ଦେଲେ ହୁଳହୁଳି
ବାଜିଲା ଯେ ବୀରତୁର ମହୁରୀ କାହାଳୀ ।
ଯୋଡ଼ଶଙ୍ଖ ବଜାଇଲେ ଅଗ୍ରତେ ଶଙ୍ଖୁଆ
ବ୍ରାହ୍ମଣ ବେଦ ପଢ଼ିଲେ ଆଗେ ହୋଇଠିଆ ।
ମଙ୍ଗଳ ଅଷ୍ଟକ ପାଠକଲେ ଜଉତଷେ
ହାଟ ବାଟ ଘାଟ ଯାକ ପୂରେ ଜୟଘୋଷେ ।
ଦେବତାଏ ପୁଷ୍ପବୃଷ୍ଟି କଲେ ଆନନ୍ଦରେ
ପୁଷ୍ପକ ରଥକୁ ରାମ ବୋଇଲେ ସଧୀରେ ।
କିଷ୍କିନ୍ଧ୍ୟା ରାଜ୍ୟେ ମିଳିବୁ ତୁହୋ ଦେବରଥ
ଶୂନ୍ୟମାର୍ଗେ ରଥ ଗଲା ଦେଇ ବାୟୁପଥ ।
ସୁଗ୍ରୀବର ପୁରେ ଯାଇ କପିପତି ପାଶେ
ଚର ଜଣାଇଲା ଯାଇ କପିପତି ପାଶେ ।
ଶୁଣିଣ ବାନରରାଜା ଅଇଲେକ ଧାଇଁ
ଶ୍ରୀରାମ ବୋଇଲେ ଶୁଣ କିଷ୍କିନ୍ଧ୍ୟାର ସାଇଁ ।
ଲଙ୍କାକୁ ଯାଇଥିଲେ ହୋ ଋକ୍ଷ କପି ଯେତେ
ସମସ୍ତେ ଆସନ୍ତୁ ଯିବେ ମୋହର ସଙ୍ଗତେ ।
ବିଲଙ୍କା ରାଜନ ନାମ ଅଟେ ଲକ୍ଷଶିରା
ମଣ୍ଡି ସଣ୍ଡି ନ ପାରଇ ତାର ପାଦଭରା ।
ଦେବତାମାନଙ୍କୁ କଷ୍ଟ ଦେଲାଣି ବହୁତ
ପୁରନ୍ଦରଛଲେ କୋପ କରି ପ୍ରତାପୀ ଦଇତ ।
ସର୍ବଂଶେ ମାରିବି ତାହିଁ ନ ରଖିବି ଏକ
ଏମନ୍ତ ଶୁଣି ବୋଲଇ କିଷ୍କିନ୍ଧ୍ୟା ନାୟକ ।
ମୋର ପୁରେ ରାଜଦ୍ୱାର ରହନ୍ତୁ ଗୋସାଇଁ
କପିଙ୍କି ମୁଁ ଅଣାଉଛି ଦୂତ ବରଗାଇ ।

ମାଲ୍ୟବନ୍ତେ ରହିଲ ମୋ ପୁର ନ ମାଡ଼ିଲ
ରାବଣ ମାରି ପୁଷ୍ପକ ରଥେ ଶୂନ୍ୟେ ଗଲ ।
ସ୍ୱାମୀ ବିନେ ନ ପଡ଼ିଲା ଚରଣ ତୋହର
ପବିତ୍ର କର ହେ ସ୍ୱାମୀ ପୁରକୁ ମୋହର ।
ତାରି ମହାଦେଈ ସଙ୍ଗେ ଘେନି ନାରୀଗଣ
ଅର୍ଘ୍ୟ ଦେଇ ବନ୍ଦାଇଲା ଶ୍ରୀରାମ ଚରଣ ।
ଭକତି ଘେନିଣ ପ୍ରଭୁ ମିଳିଲେ ତା ପୁରେ
ସମସ୍ତଙ୍କୁ ଗଉରବ କରି କପିବରେ ।
ଉତ୍ତମ ଭୋଜନ ଦେଲା ଯାହାକୁ ଯେମନ୍ତେ
ସନ୍ତୋଷ ହୋଇ ରହିଲେ ସେଠାରେ ସମସ୍ତେ
ନୃପତିଏ ସୁଗ୍ରୀବକୁ କହିଲେ ଧନ୍ୟ ଧନ୍ୟ
ନୋହିଲେ କି ମିତ୍ରପଣେ ହୁଅନ୍ତୁ ଭଜନ ।
ଏତେ ଲୋକଙ୍କ ଚରିତ୍ର କଲୁ ମନ ଜାଣି
ରାମଙ୍କ ମନ ତୋଷିଲୁ ଭକତିରେ ପୁଣି ।
ଏମନ୍ତ ପ୍ରଶଂସା କରୁଁ ମିଳିଲେ ବାନରେ
ଏମନ୍ତ ବାନର ଆଦି ଦେଖି ନୃପବରେ
ଆଚମ୍ବିତ ହୋଇ ଦେଖୁଅଛନ୍ତି ସେ ରଥେ
ପୃଥିବୀ ଘୋଟି ଅଛନ୍ତି ରିକ୍ଷ କପି ଯୂଥେ ।
ଗିରି କନ୍ଦର ପୂରିଛି ନ ମିଳଇ ବାଟ
ଦଧିମୁଖା କାଳମୁଖା ଗୋଲାଙ୍ଗୁଡ଼ା ଆଦି ।
ଶ୍ରୀରାମ ବୋଇଲେ ମିତ ବିଳମ୍ବ ନ କର
ପୁଷ୍ପକ ରଥେ ବସନ୍ତୁ ସକଳ ବାନର ।
ଆଦି ସହିତେ ତୋହର ବସ ବେଗେ ଯାଇଁ
ଶୁଣି ଆନନ୍ଦେ କପିଏ ଅଇଲେକ ଧାଇଁ
ନଳ ନୀଳ ଜାମ୍ବବାନ ହନୁ ଆଦି ଯେତେ
ସୁଷେଣ ତାରାକ୍ଷ ତାର ଅଙ୍ଗଦ ସହିତେ ।
ତହୁଁ ରାମ ସେ ପୁଷ୍ପକ ରଥକୁ ବୋଇଲେ
ଲଙ୍କାପୁରକୁ ହୋ ଚଳ ବିଭୀଷଣ ଭୁଲେ ।
ରାକ୍ଷସ ଆଦିକୁ ଘେନି ବିଲଙ୍କାକୁ ଯିବା
ତେବେ ସିନା ଲକ୍ଷଶିରା ଦାନବ ଜିଣିବା ।
ଏମନ୍ତ ବହୁ ଶୂନ୍ୟରେ ଗଲା ରଥ ଚଳି
କହୁଁ କହୁଁ ଲଙ୍କାପୁର ମଧ୍ୟେ ଯାଇ ମିଳି ।
ପୁଷ୍ପକ ବିମାନ ଦେଖି ଅସୁର ଅସୁରୀ
ବିଚାର କରନ୍ତି ଏଥେ ବସି ଦଶଶିରୀ ।
ଚଉଦ ବ୍ରହ୍ମାଣ୍ଡ ଯାକ ବୁଲେ ନିମିଷକେ
ଏମନ୍ତ ବେଳେ ମିଳିଲା ବିଭୀଷଣ ପାଖେ ।

ରାମଙ୍କୁ ଦେଖି ରାକ୍ଷସ ରାଜନ ଉଠିଲା
ପାଦେ ପଡ଼ି ଉଠି ପୁଣି ଶିରେ କର ଦେଲା ।
ମନ୍ଦୋଦରୀ ରାଣୀ ଆସି ବନ୍ଦିଲା ଚରଣ
ଶ୍ରୀରାମ ବୋଇଲେ ଶୁ ହୋ ଶୁଣ ବିଭୀଷଣ ।
ବିଲଙ୍କାକୁ ଯିବା ତୋର ଆଦି ସଜକର
ଲକ୍ଷଶିରା ନାମେ ତହିଁ ଅଛଇ ଅସୁର ।
ଦେବଙ୍କ ପାଇଁ ତାହାକୁ କରିବା ନିଧନ
ଏମନ୍ତ ଶୁଣି ବୋଲଇ ଅସୁର ରାଜନ ।
ଆଜକ ମୋ ପୁରେ ପ୍ରଭୁ ରହି କାଲି ଯିବା
ଅପବିତ୍ର ଭୁବନକୁ ପବିତ୍ର କରିବା ।
ଏମନ୍ତ କହି ଆଦରେ ଘେନିଗଲା ପୁରେ
ସମସ୍ତଙ୍କୁ ଚରିତ୍ର ସେ କଲାକ ସମ୍ଭାରେ ।
ଗଉରବ ପାଇ ତହିଁ ରହିଲେ ସମସ୍ତେ
ଭରତ ଶତ୍ରୁଘ୍ନ ଆଦି ନରପତି ଯେତେ ।
ଲଙ୍କାପୁର ଶୋଭା ଦେଖି ଆଚମ୍ବିତ ହୋନ୍ତି
ରାମଚନ୍ଦ୍ରଙ୍କୁ ବହୁତ ପ୍ରଶଂସା କରନ୍ତି ।
ଅସୁର ଅସୁରୀ ଦେଖି ହୁଅନ୍ତି ତାଟକା
ପରଦିନ ପ୍ରଭାତରୁ ହେଲେ ଉକାହକା ।
ଆସ ଆସ ବେଗେ ଆସ ବିଳମ୍ବ ନ କର
ସଜ ହୋଇଣ ଆସିଲେ ଲଙ୍କାର ଅସୁର ।
ସମସ୍ତେ ପୁଷ୍ପକ ରଥ ଉପରେ ବସିଲେ
ବିଲଙ୍କା ପୁରରେ ଯାଇ ଶୂନ୍ୟରେ ଖସିଲେ ।
ପ୍ରଚଣ୍ଡ ପର୍ବତେ ରହି ଦେଲେ ସର୍ବେ ଦୃଷ୍ଟି
ବିଜୁଳି ପ୍ରାୟେ ଝଟକୁଅଛି ପୁର ଗୋଟି ।
ଏଥୁ ଅନନ୍ତରେ ଦେବୀ ପାର୍ବତୀ ଗୋ ଶୁଣ
ଦେବଙ୍କୁ ଗୃହିଁ କ୍ରୋଧରେ ବୋଲେ ଦୈତ୍ୟଗଣ
ରାମକୁ ଯେବେ ନ ଦେବ ମୋତେ ତୁମ୍ଭେ ଆଣି
ଗୋଟି ଗୋଟି କରି ନଷ୍ଟ ପକାଇବି ହାଣି ।
ଏମନ୍ତ ବେଳେ ଉଗ୍ର କହିଲା ବାରତା
ହେ ମଣିମା ସାବଧାନେ ଶୁଣିବା ମୋ କଥା
ସମଦଣ୍ଡ ଘେନି ରାମ ପ୍ରଚଣ୍ଡ ପର୍ବତେ
ଦେଖିଣ ଅଇଲି ତହିଁ ଥିଲେଇଁ ଗୁପତେ ।
ଅସଂଖ୍ୟ ସଇନ୍ୟ ସଙ୍ଗେ ନ ମିଳଇ ବାଟ
ପୃଥିବୀ ଘୋଟି ଅଛଇ ଶ୍ରୀରାମର ଆଦି ।
ବିଚାର କରିବା ହେଉ ଯେମନ୍ତ ଦିଶଇ
ବାନର ମାନବ ରିକ୍ଷ ରାକ୍ଷସ ଅଛଇ ।

ହାଣ୍ଡି ଘୋଡ଼ା ରଥ ରଥୀ ପାଇକ ଅଛନ୍ତି
ଶୁଣିଣ ସେ ଲକ୍ଷଶିର ବୋଲନ୍ତି ନୃପତି ।
ବୋଲଇ ସର୍ବେ କି ରାମ ଆସିଅଛି ଏଥେ
ଯାହାଲାଗି ରାତ୍ରି ଦିନ ନିଦ ନାହିଁ ମୋତେ ।
ସେ ମୋର ପରମ ଶତ୍ରୁ ଖୋଜୁଥିଲି ତାକୁ
ଜାଣିଲି ମୃତ୍ୟୁ କଢ଼ାଇ ଆଣିଲା ପାଖକୁ ।
ଦଇବହିଁ ବଡ଼ ଜଣେ ଜାଣିଲି ଏଥର
ନୋହିଲେ ରାମ କେମନ୍ତେ ଆସନ୍ତା ଏ ପୁର ।
ସିଂହ ମୁଖକୁ କି ମୃଗ ସ୍ୱଇଚ୍ଛାରେ ଆସେ
ମୃତ୍ୟୁ ଯୋଗ ଘଟିଲେ ସେ ମିଳେ ଆସି ପାଶେ
ଏମନ୍ତ କହି ଆସ୍ଥାନେ ବସିଲା ଦଇତ
ଦରଶନ କଲେ ପାତ୍ର ମିତ୍ର ଯେ ଅମାତ୍ୟ ।
ବୀର ମହାବୀର ଜେନା ରାଉତ ମାହନ୍ତ
ସେନା ସେନାପତି ତହିଁ ଅଛନ୍ତି ବହୁତ ।
ଗହ ଗହ ଶବଦ ଯେ ସିନ୍ଧୁ ଘୋଷ ଜାଣି
ଦେବତାମାନେ ଅଛନ୍ତି ସେ ସଭାରେ ପୁଣି ।
ଲକ୍ଷଶିରକୁ ହଲାଇ କହଇ ଦଇତ
ଆରେ ଇନ୍ଦ୍ର ଶୁଣୁଛୁ ତ କି କହଇ ଦୂତ ।
ତୁମ୍ଭର ଯେ ଅତି ପ୍ରିୟ ସ୍ଥିର ନର ରାମ
ପ୍ରଚଣ୍ଡ ପର୍ବତେ ଆସି କଲାଣି ବିଶ୍ରାମ ।
ସେ ମଲେ ତୁମ୍ଭର ଟାଣପଣ ଯିବ ସରି
କହୁଁ କହୁଁ କୋପଭରେ ଘୋର ମୂର୍ତ୍ତି ଧରି ।
ହୋଇଲା ସେ କାଳାନ୍ତକ ଅନଳ ସମାନ
ବେଳୁଁ ବେଳ ବଢ଼ି ଯାଇ ବ୍ୟାପିଲା ଗଗନ ।
ସୂର୍ଯ୍ୟ ରଥ ଭେଦକଲା ତାର ଶିର ଯାଇଁ
ଶୂନ୍ୟେ ଯାଇ ନ ପାରିଲେ ଗ୍ରହାଦେବୀ ସାଇଁ
ଲକ୍ଷେ ଗୋଟା ସୂର୍ଯ୍ୟ କିବା ଉଇଁଲା ଗଗନେ
ତେସନ ଦାନବ ନେତ୍ର ବିରାଜେ ବଦନେ ।
ଭୁଜଯାକ ଲମ୍ବିଗଲା ଶାଳଗଛ ପ୍ରାୟ
ଅଞ୍ଜନ ଶଇଳଠାରୁ କଳା ତାର କାୟ
ଦନ୍ତ ପାଟି ତାରାପନ୍ତି ପ୍ରାୟ ବିରାଜଇ
ମୁଣ୍ଡବାଳ ଫରଫର ହୋଇଣ ଉଡ଼ଇ ।
କୋଟି ଧୂମକେତୁ ଉଦେ ହେଲା ପ୍ରାୟ ଦିଶେ
କର୍ଣ୍ଣଯାକ ଖଣ୍ଡ ଖଣ୍ଡ ମେଘ କି ଆକାଶେ ।
ରୂପ ମହାଭୟଙ୍କର ଅତି ବିକଟାଳ
ଘୋଟିଅଛି ଦୈତ୍ୟପତି ଗଗନମଣ୍ଡଳ ।

ଘନ ଘନ ରଡ଼ଘାତେ ଘଡ଼ଘଡ଼ ପରି
କମ୍ପିଲା ତା ପାଦଭରେ ପାଇ ବସୁନ୍ଧରୀ ।
ଦେବଦାନବ ଯେତେକ ଥିଲେ ପୁଣି ତହିଁ
ଦାନବ ରୂପକୁ କେହି ନ ପାରିବେ ଚାହିଁ ।
ଆଖି ବୁଜି ପକାଇଲେ ଦେଖି ତାର ତେଜ
ବାସବ ଭାଳିଲେ ସ୍ୱର୍ଗ ନାଶଗଲା ଆଜ ।
ଯମ ଭାବେ ମୋର ପୁର ରହିବ କି ଆଉ
ଅଗ୍ନି ତୁଲ୍ୟ ଦୈତ୍ୟକୋପେ ଜଳେ ଦାଉ ଦାଉ
ପ୍ରଳୟ ହୋଇବ ବ୍ରହ୍ମା ସୃଷ୍ଟି ନ ରହିବ
ପ୍ରତାପୀ ଦୈତ୍ୟକୁ କାହୁଁ ପାରିବେ ରାଘବ ।
ଏମନ୍ତ ବିଗ୍ରହ ଦୈତ୍ୟ ଉଠିଲା ଗରଜି
ପାଖେ କେହି ନ ରହିଲେ ପକାଇଲେ ଭାଜି ।
ଧାଇଁଲା ସେ କୋପେ ଲୁହାଗଦା ଧରି କରେ
ଲକ୍ଷଭାର ଗଦା ସେହି ମହାବଳ ଧରେ ।
ବୁଲାଇଲା ତାକୁ ଧରି କୋପେ ସେ ଦଇତ
ଦୁଇଲକ୍ଷ ହାତରେ ସେ ଭ୍ରମେ ଚକ୍ରବତ ।
ତହିଁରୁ ପବନ ଜାତ ହେଲା ଘନ ଘନ
ଯେସନେ ଝଣ୍ଟିଆ ଭୂତ ଘୋଟଇ ଗଗନ ।
ଧୂଳି ପତ୍ର ଯାହା ପଡ଼େ ଆଗରେ ତାହାର
ତାହାକୁ ଉଡ଼ାଏ କରି ଚକ୍ରର ଆକାର ।
ତେସନ ଦାନବ ଗଦା ପବନ ଆଘାତେ
ଉଡ଼ିଲେ ତେତିଶ କୋଟି ଦେବତା ସମସ୍ତେ ।
ଦାନବ ଯେତେକ ଥିଲେ ଉଡ଼ିଲେ ସକଳେ
ଦେବେ ଉଡ଼ି ଉଡ଼ି ଗଲେ ଆକାଶ ମଣ୍ଡଳେ ।
ଶୂନ୍ୟପୁରୁଷ ସେମାନେ ଶୂନ୍ୟରେ ରହିଲେ
ଦାନବମାନେ ଆକାଶ ମାର୍ଗେ ଚାଲିଗଲେ ।
ଯୋଜନ ଅନ୍ତରେ କେହି ପଡ଼ିଲାକି ଯାଇ
କେହି ରାକ୍ଷସ ସତ୍ତ୍ରୁର ହାତରେ ପଡ଼ଇ ।
କେହି ବିଶାଶଏ କେହି କୋଟିଏ ହସ୍ତରେ
ଏମନ୍ତେ ଉଡ଼ିଲେ ସର୍ବେ ଦାନବ ଗଦାରେ ।
ପ୍ରଚଣ୍ଡ ପର୍ବତ ମୁଖେ ଅସୁର ଧାମଇଁ
ଶ୍ରୀରାମ ଅନାଇ ଦେଲେ ରଥପରେ ଥାଇ ।
ବୋଇଲେ ରେ ହନୁ ଦେଖ ଆସୁଛି ଅସୁର
ବିଳମ୍ବ ନ କରି ବେଗେ ଅସ୍ତ୍ରଧରି ମାର ।
ଆପେ ଧନୁଶର ଧରି ରହିଲେ ସେ ରଥେ
ଡରଡର ହୋଇ ବୀରେ ରହିଲେ ପର୍ବତେ ।

ଋକ୍ଷକପି ରାକ୍ଷସ ସେ ମାନବ ସଇନ୍ୟ
ଅସ୍ତ୍ର ଶସ୍ତ୍ର ଧରି ସର୍ବେ ଘୋଟିଲେ ମେଦିନୀ ।
ପୁଷ୍ପକ ରଥରୁ ରାମ ଅଇଲେ ଉତୁରି
ହନୁକୁ ବୋଇଲେ ବାବୁ ରକ୍ଷାକର ଗିରି ।
ନୃପତିମାନେ ବୋଲନ୍ତି କାହିଁ କାହିଁ ଦୈତ୍ୟ
ବିଭୀଷଣ ବୋଲେ ଶୁଣି ହୋଇ ଆଚମ୍ବିତ ।
କି ଯୁଦ୍ଧ କରିବ ତୁମ୍ଭେ ନ ପାରୁଛ ଦେଖି
ଗଦା ବୁଲାଇ ଧାଉଁଛି ରୁହିଁ ମେଲ ଆଖି ।
ଏକ ଦୃଷ୍ଟିରେ ସମସ୍ତେ ଅନାଇଲେ ତାକୁ
ସମସ୍ତ ଦୃଷ୍ଟି ଅଛଇ ବଲଙ୍କା ଆଡ଼କୁ ।
କେ ବୋଇଲା ପର୍ବତ ଏ କେ ବୋଲଇ ମେଘ
ସମସ୍ତଙ୍କୁ ପଛକରି ରାମ ହେଲେ ଆଗ ।
ବାମ ଡାହାଣେ ଭରତ ଶତ୍ରୁଘ୍ନ ଏ ଦୁଇ
ବିଭୀଷଣ ବୀର ତାଙ୍କ ପାର୍ଶ୍ୱେ ଅଛଇ ।
ସୁଗ୍ରୀବ ଅଙ୍ଗଦ ହନୁ ଜାମ୍ବବ ଏ ବୀର
ହସ୍ତେ ଧରି ରହିଛନ୍ତି ଗୋଟା ଗୋଟା ଗିରି ।
ପବନହୁଁ ବେଗେ ଧାଇଁ ଆସଇ ଅସୁର
କୁମ୍ଭକାର ଚକ୍ରପ୍ରାୟେ ବୁଲେ ଗଦାବର ।
ତହୁଁ ଚକ୍ରବାତ ଜାତ ହୁଏ ଘନ ଘନ
ମହାଭୟଙ୍କର ମୂର୍ତ୍ତି ଧରି ସେ ପବନ ।
ବହିଲା ପ୍ରଚଣ୍ଡ ହୋଇ ଘୋଟିଲା ଗଗନ
ସମ୍ଭାଳି ତା ନ ପାରିଲେ ଅଯୋଧ୍ୟା ରାଜନ ।
ଉଡ଼ିଲେ ଗଗନମାର୍ଗେ ସେ କୋଦଣ୍ଡଧାରୀ
ଭରତ ଶତ୍ରୁଘ୍ନ ହନୁ ସୁଗ୍ରୀ ଆଦିକରି ।
ବିଭୀଷଣ ଜାମ୍ବବାନ ନଳ ନୀଳ ଆଦି
ଋକ୍ଷ କପି ଯେତେଥିଲେ ପୃଥିବୀ ଆଚ୍ଛାଦି ।
ରାକ୍ଷସ ମାନବ ଆଦି ରଥ ଗଜ ଅଶ୍ୱ
ସମସ୍ତେ ଉଡ଼ିଲେ ପାଇ ଗଦାର ବତାସ ।
ପକ୍ଷୀପ୍ରାୟେ ଦିଶନ୍ତି ସେ ଗଗନ ମାର୍ଗରେ
ଉଡ଼ିଗଲେ ଉଠାଇ ପାରି ଯେ ପ୍ରକାରେ ।
କେ ଯାଇଁ ପଡ଼ିଲା କାହିଁ ଅସମ୍ଭାଳ ହୋଇ
ପୁଷ୍ପକ ରଥ ପଡ଼ିଲା ଅଯୋଧ୍ୟାରେ ଯାଇଁ ।
ଶ୍ରୀରାମ ପଡ଼ିଲେ ଯାଇଁ ଯୋଜନେକ ଦୂରେ
ଭରତ ଶତ୍ରୁଘ୍ନ ଦୁହେଁ ଦୁଇ ଯୋଜନରେ ।
ହନୁମାନ ସହସ୍ରେକ ହାତ ଗଲା ଉଡ଼ି
ସମ୍ଭାଳି ହୋଇଲା ବୀର ଭୂମିରେ ନପଡ଼ି ।
ବିଭୀଷଣ ଉଡ଼ି ଉଡ଼ି ଯୋଜନେକ ଗଲା
ସମ୍ଭାଳି ହୋଇଣ ବୀର ସେଠାରେ ରହିଲା ।
ରଥସବୁ ପଡ଼ି ଭଙ୍ଗି ହୋଇଗଲା ଚୂନା
ତଳେପଡ଼ି ଛେଚିହୋଇ ମଲେ କେତେ ସେନା ।
ଦାନବ ଦେଖିଲା କେହି ନାହାନ୍ତି ପର୍ବତେ
ଦୂତ ଯାଇଁ ମୋ ଆଗରେ କହିଲା କେମନ୍ତେ ।
କାହାକୁ ନ ପାଇ ବୀର କୋପ କଲା ଶାନ୍ତ
ବାହୁଡ଼ିଲା ବଲଙ୍କାକୁ ଅସୁର ନୃପତି ।
ଦେଖିଲା ଆସ୍ଥାନ ତଳେ ନାହାନ୍ତି ଗୋଟିଏ
ବସିଲା ଯାଇ ଜଗତୀ ପରେ ଦୈତ୍ୟରାୟେ ।
ଚରଗଣ ଆସି ତାର ସମ୍ମୁଖେ ମିଳିଲେ
ଏକ ଏକ କରି ତାର ଚରଣ ବନ୍ଦିଲେ ।
ପଚାରିଲା ସେ ଦୁର୍ଦ୍ଦାନ୍ତ ଅସୁର ତାହାଙ୍କୁ
ନ ଦେଖିଲି ପର୍ବତରେ ମୁହିଁ ସେ ରାମକୁ ।
ରଥ ଗଜ କିଛି ନାହିଁ ନାହିଁ ଆଦି ସୈନ୍ୟ
ଏମନ୍ତ ଶୁଣି ବୋଇଲେ ତହିଁ ଚରଗଣ ।
ହେ ଦେବ ତୁମ୍ଭର ଗଦାବାତେ ଗଲେ ଉଡ଼ି
ଅକଳିତ ଆଦି ଦେହ ହୋଇ ଭଡ଼ା ଭଡ଼ି ।
ରହିଥିଲେ ପର୍ବତରେ ଦେଖିଅଛୁ ଆମ୍ଭେ
ଅସୁର ପୁଣି ପୁଚ୍ଛିଲା କାହିଁ ଗଲେ ଦେବେ ।
ମୋର ଆଦି କାହିଁପାଇଁ ଏଥୁ ପଳାଇଲେ
ଏମନ୍ତ ଶୁଣି ସମ୍ମୁଖେ ଚରେ ଜଣାଇଲେ ।
ହେ ମହିମା ଯେତେବେଳେ ଧରି ଗଦାବର
ବୁଲାଇଲ ଉଡ଼ିଗଲେ ଆଦିଯାକ ତୋର ।
ତେତିଶ କୋଟି ଦେବତା ତା ସଙ୍ଗେ ଉଡ଼ିଲେ
ଗଗନ ମାର୍ଗରେ ଯାଇଁ କେ କାହିଁ ପଡ଼ିଲେ ।
ଶୁଣିଣ ଦାନବ ରାଜା ବୋଲଇ ରେ ଚରେ
କାହିଁ କିଏ ଅଛି ଖୋଜିଆଣ ମୋ ସମ୍ମୁଖରେ ।
ମନ୍ତ୍ରୀକି ମୋର ସମ୍ମୁଖୁ ଆଣ ଯା ହକାରି
ଶୁଣି ଦୂତମାନେ ତହୁଁ ଗଲେ ବେଗ କରି ।
ଯେ ଯହିଁ ଥିଲେ ତାହାକୁ କହିଲେକ ଯାଇ
ରାଜାର ହକାରି ତୁମ୍ଭେ ଆସ ବେଗ ହୋଇ ।
ମିଳିଲେ ଆସି ସକଳେ ନୃପତି ସମ୍ମୁଖରେ
ଦାନବର ପାଦ ବନ୍ଦି ବସିଲେ ସଭାରେ ।
ମନ୍ତ୍ରୀକି ରୁହିଁ ପୁଚ୍ଛଇ ଅସୁର ରାଜନ
କୋପେ ପ୍ରଚଣ୍ଡ ଗିରିକି କଲଇଁ ଗମନ ।

କାହାରକି ନ ଦେଖିଲି ଅଇଲି ବାହୁଡ଼ି
ଉବୁରି କି ଯାଉଥାନ୍ତେ ମୋ ମୁଖରେ ପଡ଼ି ।
ମିଛ ମୋ ସମ୍ମୁରେ ଆସି କହିଲେ ଏ ଗୃରେ
ବିସ୍ମର ଏହାଙ୍କୁ ଦଣ୍ଡଦିଅ ଏ ସଭାରେ ।
ଏମନ୍ତ ଶୁଣି କହଇ ମନ୍ତ୍ରୀ କଲ୍ମାସୁର
ମଣିମା ମିଛ ନୁହଇ କହିଲେ ଯା ଗୃର ।
ବନ ପର୍ବତ ମାଡ଼ି ଯେ ରହିଥିଲେ ଥାଟ
ପିମ୍ପୁଡ଼ି ପିବାକୁ ତହିଁ ନ ଥିଲା ତ ବାଟ ।
ବଡ଼ ପ୍ରତାପୀ ଅଟଇ ସେ ରାମ ରାଜନ
ତାହାର ହସ୍ତରେ ଯେବେ ଥିବ ଶରାସନ ।
କ୍ଷଣକରେ ତିନିପୁର ପାରିବ ସେ ଜିଣି
ବାଳୀନାମେ କିଷ୍କିନ୍ଧ୍ୟାରେ ଥିଲା କପିମଣି ।
ବଳବନ୍ତ ପଣେ ତାକୁ ନ ଥିଲେ କେ ସରି
ଲଙ୍କାର ରାବଣ ତାକୁ ଯୁଦ୍ଧରେ ନ ପାରି ।
ତା ସଙ୍ଗେ ମଇତ୍ର ହୋଇ ରଖିଲା ଜୀବନ
ସହସ୍ରଶିର ଯେ ତୋର ପ୍ରଥମ ନନ୍ଦନ ।
ବାଳୀକି ସେ ନ ପାରିଲା ଅଳପକ ହାରି
ତେତେ ବଡ଼ ବୀରଗୋଟା ରାମ ଧନୁ ଧରି ।
ଏକା ବାଣକରେ ମାରି ପକାଇଲା ଜାଣ
ସଙ୍ଗତେ ଘେନି ବହୁତ ରିକ୍ଷ କପିଗଣ ।
ସମୁଦ୍ରରେ ବନ୍ଧ ବାନ୍ଧି ଲଙ୍କା ଦେଲା ପୋଡ଼ି
ଦଶଶିର ରାବଣର ବୁକୁ ବାଣେ ଫୋଡ଼ି ।
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ଆଦି ଯେତେ ବୀର
ସମସ୍ତଙ୍କୁ ମାରି ଲଙ୍କା କଲା ଛାରଖାର ।
ବିଲଙ୍କାରେ ବୁଲଇଲା ଆସି ଲୁହାମଇ
ଅକଳିତ ଥାଟ ତାର ସଙ୍ଗରେ ଅଛଇ ।
ଆସିଥିଲା ତୋ ସଙ୍ଗତେ ଯୁଝିବା ନିମନ୍ତେ
ଉଡ଼ିଗଲେ ସେ ସମସ୍ତେ ତୋର ଗଦାବାତେ
କି କହିବୁଁ ମଣିମା ତୋ ଗଦାର ପବନେ
ଦେବତା ସହିତେ ଆମ୍ଭେ ଉଡ଼ିଲୁ ଗଗନେ ।

ଶୁଣି ଲକ୍ଷଶିର ହସେ ଟହ ଟହ ହୋଇ
ମୋହର ପ୍ରାକର୍ମ ସେହି ରାମ ନ ଜାଣଇ ।
ସହସ୍ରଶିର ଆବର ଶତଶିର ମାରି
ଦଶଶିର ତ୍ରିଶିରକୁ ସଂଗ୍ରାମେ ସଂହାରି ।
ମନେ ଗର୍ବ କରିଅଛି ମୁହିଁ ବଡ଼ବୀର
ପୃଥିବୀରେ ନ ଥୋଇବ ଗୋଟିଏ ଅସୁର ।
ନ ଜାଣଇ ଲକ୍ଷଶିର ନାମେ ଅଛି ଦୈତ୍ୟ
ଯାହାର ପ୍ରତାପ ସହି ନ ପାରେ ଆଦିତ୍ୟ ।
ବୀର ସିଂହ ଅଟଇ ସେ ବ୍ରହ୍ମାଣ୍ଡ ଭିତରେ
କାଳଯମ ବୋଲଇ ଯେ ଯମର ଉପରେ ।
ତାହାର ପାଖକୁ ଆସେ ମାରିବା ନିମନ୍ତେ
ଜାଣିଲି ମୃତ୍ୟୁ ତାହାକୁ ଆଣିଥିଲା ଏଥେ ।
ଏମନ୍ତ ଶୁଣି ବୋଇଲେ ବୀରେ ମହାବୀରେ
ହେ ମଣିମା କି କହିବୁ ଭୁମ୍ବର ସ୍ମୁରେ ।
ନନ୍ଦକୃତ୍ୟ କଲି ଦେଲି ତାହାଙ୍କୁ ଉଡ଼ାଇ
ନର ବାନରଙ୍କ ମାଂସ ସୁସ୍ୱାଦୁ ଅଟଇ ।
ବିଧାତା ଆଣି କର୍ମକୁ ଭେଟାଇଲା ବେଳେ
ମଣିମା ଉଡ଼ାଇ ଦେଲ ଗଦାବାତେ ବେଳେ ।
ରୁଧିର ପିଇ ମାଂସକୁ ଖାଇଥାନ୍ତୁ ପୋଡ଼ି
ଶୁଣି ହସିଲା ଅସୁର ହସ୍ତେ ନଖମୋଡ଼ି ।
ଜମ୍ବୁ ଭୁ ହିଙ୍ଗୁଳା ମାଗୋ ଦୁର୍ଗତି ନାଶିନୀ
ତୋହର ମହିମା ଘୋର ମହାସିନ୍ଧୁ ଜାଣି ।
ଅଥଳ ଅକୂଳ-ପୁଣି ଅଟଇ ଅପାର
କହି ନ ପାରନ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ତୋହର ଯେତେକ ରୂପ କେ ପାରିବ ଗଣି
ସମୁଦ୍ର ବୋଲି ପରାପ୍ତେ ତାହାକୁ ମୁଁ ମଣି ।
କେବଳ ତୋହର ପାଦେ ପଶିଲି ଶରଣ
ଦୀନ ଚନ୍ଦ୍ରର ଦୁଃଖ କର ନିବାରଣ ।

## ସର୍ବସୈନ୍ୟ ମୃତ୍ୟୁ ଓ ଲକ୍ଷଣଙ୍କର ଯୁଦ୍ଧେ ପରାଜୟ

ପାର୍ବତୀ ବୋଇଲେ ଚିହ୍ନି କି ହେଲା ଶଙ୍କର
ଶ୍ରୀରାମ ଯେ ଉଡିଗଲେ ଯୋଜନେକ ଦୂର ।
କି ବିସ୍ତର କଲେ ଚିହ୍ନି କହ ଶୂଳପାଣି
ବଡ କଉତୁକ ଲାଗେ ଶୁଣିବାକୁ ପୁଣି ।

ଏମନ୍ତ ଶୁଣି ବୋଇଲେ ଦେବ ଦେବ ହର
ପ୍ରଚଣ୍ଡ ପର୍ବତେ ଆସି ମିଳ ହନୁବୀର ।
ଦେଖିଲା ଯେ ରଥ ଗଜ କିଛି ଚିହ୍ନି ନାହିଁ
ଆଶ୍ଚର୍ଯ୍ୟ ହୋଇଲା ବୀର ବଳଙ୍କାକୁ ଚାହିଁ ।



ଧନ୍ୟରେ ଅସୁର ଚୋର ବଳ ପରାକ୍ରମ
କାହିଁଗଲା ବିଭୀଷଣ କାହିଁଗଲେ ରାମ ।
କାହିଁଗଲେ କପିଆଦି ସୁଗ୍ରୀବ ଅଙ୍ଗଦ

କାହିଁଗଲେ ଲଙ୍କାଆଦି ନରପତି ବୃନ୍ଦ ।
କାହିଁଗଲେ ଶ୍ରୀରାମର ଭାଇ ଯେ ଭରତ
ଏମନ୍ତ ବୋଲି କପାଳେ ମାଇଲାକ ହସ୍ତ ।

କାହାକୁ ନ ପାଇ ବୀର କରୁଛୁ ବେଦନ
ଏମନ୍ତ ବେଳେ ମିଳିଲା ଆସି ବିଭୀଷଣ ।
ହନୁ ବୋଇଲା ହେ ଲଙ୍କପତି ଥିଲୁ କାହିଁ
ଦାନବର ଗଦାବାତେ ଉଡ଼ିଗଲି ମୁହିଁ ।
ବିଭୀଷଣ ବୋଇଲା ମୁଁ ଉଡ଼ିଗଲି ହନୁ
ବଡ଼ ପ୍ରତାପୀ ଅସୁର କୁଳର ଏ ଭାନୁ ।
ଯେଉଁ ରାମ ଘୋଟିଥିଲ ପୃଥିବୀକି ପୂର
ଧନ୍ୟରେ ଅସୁର ଧନ୍ୟ ତୋର ଗର୍ଭାଶ୍ରା ।
ଗଦାବାତେ ଉଡ଼ାଇଲୁ ଏଡ଼େ ବଡ଼ ରାମ
ଲଙ୍କାପୁର ବିଧ୍ୱଂସିଲେ ଯେବଣ ମର୍କଟ ।
ସେ ତୋହର ଗଦାବାତେ ଉଡ଼ିଗଲେ ପୁଣି
ତ୍ରଇଲୋକ୍ୟ ଠାକୁର ସେ ରଘୁକୁଳମଣି ।
କୋଟି କୋଟି ବ୍ରହ୍ମାଣ୍ଡ ଯା ଲୋମେ ବିରାଜଇ
ତାହାଙ୍କୁ ତୁ ଗଦାଘାତେ ଦେଲୁରେ ଉଡ଼ାଇ ।
ଏମନ୍ତେ ପ୍ରଶଂସା କଲେ ଦୈତ୍ୟକୁ ବହୁତ
ଏମନ୍ତବେଳେ ମିଳିଲା ଆସି କପିନାଥ ।
ସଂଗେ ଅଛନ୍ତି ତାହାର ଯୂଥପତିମାନେ
ଋକ୍ଷ କପିରାଜ ରୁଣ୍ଡ ହେଲେ ସେହି ସ୍ଥାନେ ।
ଭରତ ଶତ୍ରୁଘ୍ନ ଆସି ହୋଇଲେ ପ୍ରବେଶ
ମିଳିଲେ ଆସି ସେଠାରେ ଲଙ୍କାର ରାକ୍ଷସ ।
ନରପତିମାନେ ଆସି ମିଳିଲେକ ତହିଁ
ଋକ୍ଷକପିରାଜେ ପୂର୍ଣ୍ଣହେଲା ପୁଣି ମହୀ ।
କୋଦଣ୍ଡଧର ପ୍ରବେଶ ହୋଇଲେ ପର୍ବତେ
ହିମବନ୍ତ ଦୁଲଣୀ ଗୋ ଶୁଣ ଏଥୁଅନ୍ତେ ।
ଚର ଯାଇଁ ଜଣାଇଲା ଶିରେ ଯୋଡ଼ି କର
ହେ ଦେବ ଶ୍ୱେତଲଙ୍କାଧିପ ଅସୁର ଈଶ୍ୱର ।
ପୁଣି ରାମ ରାଜା ଯେତେ ବିଜୟ ପର୍ବତେ
ଲାଗିଛନ୍ତି କପିବଳ ସିନ୍ଧୁ ପରାଯନ୍ତେ ।
ବୃକ୍ଷଗିରି ବନସ୍ତରେ ନାହିଁ ଟିକେ ସ୍ଥାନ
ବିଚାର କରିବା କାର୍ଯ୍ୟ ଶ୍ୱେତଲଙ୍କା ରାଜନ ।
ଚରଗଣ ମୁଖୁ ଶୁଣି ଅସୁରାଧିରାଯ଼
ମନ୍ତ୍ରୀକି ଚାହିଁ ବୋଲଇ କହ କି ଉପାୟ ।
ମନ୍ତ୍ରୀ ବୋଲେ ରାଜା ଯେତେ ଯିବା ଚଳି ଆମ୍ଭେ
ଗୋଡ଼ାଇ ମାରିବା ଛାଡ଼ି ନ ଦେବା ଟି କେଭେ
ଯଦ୍ୟପି ସେ ଆସି ଆମ୍ଭପୁରେ ପ୍ରବେଶିବେ
ଆମ୍ଭର ଯେ ଭେଦମୁଦ୍ରା ସବୁ ଜାଣିଯିବେ ।
ଆଗହୁଁ ଶତ୍ରୁକୁ ବାଟ ନ ଦେବା ଟି ଛାଡ଼ି
ଗୋଟି ଗୋଟି ଧରି ଦେବା ପର୍ବତେ କଚାଡ଼ି ।
ମନ୍ତ୍ରୀର କଥା ନୃପତି ମନକୁ ଅଇଲା
ରାଜ ସଜଙ୍କର ବୋଲି କୋପେ ଆଜ୍ଞାଦେଲା ।
ଅଇଲେ କୁଜଙ୍ଗ ଜଙ୍ଘା ବୀରବେଶ ହୋଇ
ପାତାଳକେତୁ ଜୀମୂତକେତୁ ଦୁଇ ଭାଇ ।
କାଳକେତୁ ଫାଲକେତୁ ସୁନଖା କୁନଖା
ରଶ୍ମିକେତୁ ହୟଗ୍ରୀବ ସୁମୁଖା ଦୁର୍ମୁଖା ।
ହୟମୁଖ ଗଜମୁଖ ହେନ୍ତାଳ ବେତାଳ
ଶୋଣିତକେତୁ ପିଣ୍ଡିକେତୁ କେତୁମାଳ ।
ଧୂର୍ଦ୍ଧଦନ୍ତ ବହୁଦନ୍ତ ଉନ୍ମତ୍ତ ପ୍ରମତ୍ତ
ଶିବାମୁଖ ସିଂହମୁଖ ମତ୍ତ ମହାମତ୍ତ ।
ଯୁଗାନ୍ତକ ରୋଗାନ୍ତକ ବୀର ଗିରିକାୟ
ମଙ୍ଗଳକେତୁ ଶିଙ୍ଖଳକେତୁ ମାୟାକାୟ ।
ଜମ୍ଭ କୁଜମ୍ଭ ଶୋଣିତକେତୁ ନିଶାଚର
ଜଳୋଦ୍ଭବ ଆଦି ଏ ଯେ ମହା ମହା ବୀର ।
ଜପା ଅଜପା କୁଜପା ସୁଜପା ଏ ଚାରି
ଯୁଦ୍ଧମୁରେ ଆସି ମିଳିଲେ ଅସ୍ତ୍ର ଶସ୍ତ୍ର ଧରି ।
ସାଜିଲେ ଅସୁର ରାଜ ଶ୍ୱେତଲଙ୍କା ନଗରେ
ଲକ୍ଷଶିରା ବୋଲଇ ସେ ଡାକି ଉଚ୍ଚସ୍ୱରେ ।
ଶ୍ରୀରାମ ରାଜାକୁ ମୋର ରାଜ୍ୟ ଯିବ ବଳି
ଆହେ ପାତ୍ରମିତ୍ର ତୁମ୍ଭେ ବେଗେ ଯାଅ ଚଳି ।
ଶ୍ୱେତଲଙ୍କାରେ ନ ରହିବେ ଗୋଟିଏ ଅସୁର
ଅସୁରୀ ମାତ୍ର ଜଗିବେ ଏ ଶ୍ୱେତଲଙ୍କାପୁର ।
ସମସ୍ତେ ଆସନ୍ତୁ ସଜ ହୋଇ ଆମ୍ଭେ ଯିବା
ଶ୍ରୀରାମର ରାଜ୍ୟ ମାରି ଆହାର କରିବା ।
ମଦ ପିଇ ଆସିଥିବେ କହିବ ତାହାଙ୍କୁ
ନର ବାନରଙ୍କ ମାଂସ ମାରି ଖାଇବାକୁ ।
ରୁଧିର ପିଇ ସନ୍ତୋଷ ହୋଇବେ ଯେ ଆଜି
ମିଳିବ ତାଙ୍କୁ ଉତ୍ତମ ମଦ ମାଂସ ଭୋଜି ।
ଏମନ୍ତ ଘୋଷଣା ଦିଅ ପୁରଯାକ ବୁଲି
ରାମକୁ ମାରିବା ପାଇଁ ଯିବା ଆମ୍ଭେ କାଲି ।
ଏମନ୍ତ ଶୁଣି ନଗରୀ ପୁରେ ପୁରେ ପଶି
ନାଗରୀ ଦେଲା ଶୁଣିଣ ଦୈତ୍ୟ ହୋଇ ଖୁସି ।
ସଜହୋଇ ବାହାରିଲେ ଘରଦ୍ୱାର ଛାଡ଼ି
ମଦ ଖାଇ ମତ୍ତ ହୋଇ ଛୁଟିଛନ୍ତି ରଡ଼ି ।

ଧର ଧର ମାର ମାର ପଡ଼ୁଛି ଚହଳ
ଆସ ଆସ ଚାଲ ଚାଲ ଶୁଭେ ମହାଗୋଳ ।
ବାଜଇ ଯେ ବଜଘୋଷ ନିଶାଣ କାହାଳ
ବୀରତୂର ବାଦ୍ୟେ ପୁର ପଡ଼ଇ ଉଚ୍ଛୁଳ ।
ପର୍ବତ ଉପରେ ଥାଇଁ ଶୁଣିଲେ ଶ୍ରୀରାମ
ବୋଇଲେ ଅସୁରେ କାଲି କରିବେ ସଂଗ୍ରାମ ।
ବାଦ୍ୟ ନାଦରେ କମ୍ପଇ ବିଲଙ୍କା ନଗର
ବଡ଼ ପ୍ରତାପୀ ଅଟଇ ବଳିଷ୍ଠ ଅସୁର ।
ଆହେ ବିଭୀଷଣ କହ ଏଥିର ବିଚାର
ହନୁ ଆଦି ଅଛ ତୁମ୍ଭେ ମହା ମହା ବୀର ।
କି ବୁଦ୍ଧି କରିବା ଏବେ ବିଚାର ତା କହ
ଏମନ୍ତ ଶୁଣି ବୋଲଇ ପବନର ପୁଅ ।
ମାରିବା ରାକ୍ଷସବଳ ଏକ ନ ଥୋଇବା
ବିଲଙ୍କା ନଗରଯାକ ପୁଣି ପୋଡ଼ିଦେବା ।
ବିଭୀଷଣ ବୋଲେ ଦେବ ପ୍ରତାପୀ ଅଟନ୍ତି
କୁମ୍ଭକର୍ଣ୍ଣ ରାବଣହୁଁ ମହା ବଳବନ୍ତ ।
ସହସ୍ରଶିରା ଆବର ବୀର ଇନ୍ଦ୍ରଜିତ
ଅତିକାୟ ଆଦି ଥିଲେ ଯେତେକ ଦୁର୍ଦ୍ଦାନ୍ତ ।
ବଳିଷ୍ଠପଣେ ଏହାକୁ ନୋହିବେକ ସରି
ମହା ବଳବନ୍ତ ବାଳି ବାନରକେଶରୀ ।
ସବୁହୁଁ ସେ ମହାବଳୀ ଜାଣ ତିନିପୁରେ
ଯେ ସରି ନୋହିବ ପୁଣି ଏହାକୁ ସମରେ ।
ଗଦାଘାତେ ଉଡ଼ାଇଲା ଏଡ଼େ ବଡ଼ ଥାଟ
ସେ ବୀର ସଙ୍ଗତେ ଯୁଦ୍ଧ କରିଲେ ମର୍କଟ ।୯୨।
ଅକାରଣେ ମରିବେ ଏ ପଶୁଜୀବଗୁଡ଼ା
କେବଳ ବନ ପର୍ବତେ ପୂରିଯିବେ ମଡ଼ା ।
ଅଯୋଧ୍ୟାରୁ ଆସିଛନ୍ତି ଯେତେ ଥାଟ ତୋର
ଦେଖିଲା ମାତ୍ରକେ ଯିବେ କାଳଯମ ପୁର ।
ଲଙ୍କା ରାକ୍ଷସେ ଏହାକୁ ନ ହୋଇବେ ସରି
ବିଚାର କାର୍ଯ୍ୟ କରିବା ହେଉ ଚାପଧାରୀ ।
ଅକାରଣ ମରାଇବା କମ୍ପାଇଁ ଏହାଙ୍କୁ
ସେମାନେ କି ସାହାହେବେ ଯୁଦ୍ଧରେ ତୁମ୍ଭଙ୍କୁ ।
ବାଛି ବାଛି ରଖି ସୈନ୍ୟ ଦିଅ ପଠିଆଇ
ଏମନ୍ତ ଶୁଣି ବୋଇଲେ ରଘୁକୁଳସାଇଁ ।
ଆହେ ଲଙ୍କପତି ଯାହା କହିଲ ତା ସତ
ଏମାନଙ୍କୁ ସୁମରିଲେ ପ୍ରଭୁ ରଘୁନାଥ ।୯୩।
ଜାଣି ସେ ପୁଷ୍ପକ ଯାନ ଶୂନ୍ୟରେ ଅଇଲା
ପ୍ରଚଣ୍ଡ ପର୍ବତେ ରାମ ପାରୁଶେ ମିଳିଲା ।
ବୋଇଲେ ମୋ ଥାଟଯାକ ଚଢ଼ି ଏ ବିମାନେ
କାଲିକ ଯୁଦ୍ଧ ଦେଖିବ ରହି ତୁମ୍ଭେ ଶୂନ୍ୟେ ।
ତହୁଁ ଯେ ଯାହା ପୁରକୁ ଯିବ ସର୍ବେ ଚଳି
ଅଟନ୍ତି ତ ଏ ଅସୁରେ ଜାଣ ମହାବଳି ।
ଏହାଙ୍କ ସଙ୍ଗେ ସଂଗ୍ରାମେ ନ ପାରିବ ତୁମ୍ଭେ
ଏକାକେ ଯୁଦ୍ଧ କରିବୁଁ ରହି ଏଥେ ଆମ୍ଭେ ।
ଆମ୍ଭର ତୁଲେ ରହିବେ ଭରତ ଶତ୍ରୁଘ୍ନ
ବିଭୀଷଣ ଜାମ୍ବବାନ ବୀର ହନୁମାନ ।
ନଳ ନୀଳ ଅଙ୍ଗଦ ଯେ ତାରାର କୁମର
ଆବର ରହିବେ ଏଥେ ମଇନ୍ଦ ଆମ୍ଭର ।
ଏହାଙ୍କ ଭିନ୍ନ ସମସ୍ତେ ବସ ଚଢ଼ି ବିମାନେ
ସମସ୍ତେ ରଥେ ବସିଲେ ରାମଙ୍କ ବଚନେ ।
ରହିଲା ପୁଷ୍ପକ ଯାନ ଆକାଶ ମାର୍ଗରେ
ରାମଚନ୍ଦ୍ର ରହିଲେ ସେ ପର୍ବତ ଉପରେ ।
ହନୁମାନ ଆଦି ବୀର ଜଗିଲେ ନିର୍ବନ୍ଧେ
ଶ୍ରୀରାମଚନ୍ଦ୍ର ଶୋଇଲେ ନିଶ୍ଚିନ୍ତରେ ନିଦେ ।
ରଜନୀ ପାହିଲା ଦିଗ ବିରଳ ଦିଶିଲା
ବିଲଙ୍କା ନୃପତି ରାତି ଥାଉ ଯେ ଉଠିଲା ।
ଲକ୍ଷଶିରେ ଲକ୍ଷଗୋଟା ବାନ୍ଧିଲା ମୁକୁଟ
ସୂର୍ଯ୍ୟକିରଣେ ଦୁରକୁ ଦିଶେ ଝଟ ଝଟ ।
ବାହୁରେ ଯେ ବୀରନେତ ଉଡ଼େ ଫରଫର
ବସିଲା ସେ ବୀର ଯାଇଁ ରଥର ଉପର ।
ବାହାରିଲେ ପୂର୍ବଦ୍ୱାରେ ବିଲଙ୍କାରୁ ଥାଟ
ଅସଂଖ୍ୟ ଅସୁର ସୈନ୍ୟ ନ ମିଳଇ ବାଟ ।
ବୋଇଲାକ ଦୈତ୍ୟପତି ମନ୍ତ୍ରୀଙ୍କ ଅନାଇଁ
ରହିଲ ବିଲଙ୍କାପୁର ଜଗୁଆଳ ହୋଇ ।
ଶାଳକଗଣ ଆବର ରହିବେ ଶ୍ୱଶୁର
ଜପା ଅଜପା ଆଦି ଏ ଚାରିଗୋଟି ବୀର ।
ଏମାନେ ଜଗିବେ କରେ ଅସ୍ତ୍ର ଶସ୍ତ୍ର ଧରି
ନିର୍ବନ୍ଧରେ ରଖିଥିବେ ପୁରକୁ ମୋହରି ।
ଜମ୍ବୁ କୁଜମ୍ବୁ ଆଦି ଯେ ବୀର ସେନାପତି
ଚାରିଦ୍ୱାରେ ଜଗିଥିବେ ଜାଣ ଦିବାରାତି ।
ଅନ୍ତଃପୁର ହାଟ ବାଟ ବଜାର ଯେତେକ
ଯତ୍ନକରି ରଖିଥିବେ ମୋହର ଶାଳକ ।

ଭଣ୍ଡାର ଘରକୁ ଜଗିଥିବ ତୁମ୍ଭେ ମୋର
ରାଣୀହଂସପୁର ଜଗି ରହିବେ ଶ୍ୱଶୁର ।
ଏମନ୍ତ କହି ରଥକୁ ଚଳାଇଲା ଆଗେ
ଅସୁର ଥାଟ ଗମନ୍ତ ତାର ପଛଭାଗେ ।
ଦଶନ୍ତ ସେ ଗିରି ପ୍ରାୟ ମହାଭୟଙ୍କର
ପାଦଭରେ ପୃଥିବୀ ଯେ ହୁଏ ଥରହର ।
ଅଠର ଯୋଜନ ମାଡ଼ି ଗଳୁଛନ୍ତି ଦୈତ୍ୟ
ମଦଖାଇ ମତ୍ତହୋଇ ମାତିଛନ୍ତି ନୃତ୍ୟେ ।
କୁଦନ୍ତି ଧାମନ୍ତି କେହି ଗର୍ଜନ ଛାଡ଼ନ୍ତି
ବାହାସ୍ଫୋଟ ମାରି କେହି ଶୂନ୍ୟରେ ଉଠନ୍ତି ।
ନିର୍ଭୟ ସେ ନିରପେକ୍ଷ ନିଦାରୁଣ ଅତି
ନିଶାଚର ଥାଟ ଦେଖି କହେ ଲଙ୍କପତି ।
ହେ ପ୍ରଭୁ ଦେଖ ଆସନ୍ତି ଅସୁରେ ନିର୍ଭୟା
ବଢ଼ାଇ ଅଛନ୍ତି ଦେଖ ଗିରି ପ୍ରାୟ କାୟା ।
ବିକଟାଳ ମୁଖ ଦେଖ ଦିଶେ ଭୟଙ୍କର
ବେଗେ ଉଠ ଧନୁ ଧର ବିଳମ୍ବ ନ କର ।
ବୃହିଁଦେଲେ ଗିରି ଶିଖେ ରହି ରୂପଧାରୀ
ମାଡ଼ି ଆସୁଛନ୍ତି ଯେସନେ ସମୁଦ୍ର ଲହରୀ ।
ଅକଳିତ ବଳ ତାର ନ ଯାଇ କଳନା
କୋଦଣ୍ଡରେ ଗୁଣ ଦେଲେ ରୁହିଁ ଦୈତ୍ୟସେନା ।
ବିଭୀଷଣ ଧନୁଶର ଧଇଲେକ ବେଗେ
ଭରତ ଶତ୍ରୁଘ୍ନ ଧନୁ ଧଇଲେକ ରାଗେ ।
ଲକ୍ଷଣୀରା ରଥ ଚଢ଼ି ହୋଇଅଛି ଆଗ
ପର୍ବତୁ ଓହ୍ଲାଇ ରାମ ଗଲେ ହୋଇ ବେଗ ।
ତାହାଙ୍କ ପଛେ ଅଛନ୍ତି ହନୁ ଆଦି ବୀରେ
ଶ୍ରୀରାମ ପ୍ରବେଶ ହେଲେ ଦାନବ ସମ୍ମୁଖରେ ।
କୋଦଣ୍ଡ ଟଙ୍କାର ପ୍ରଭୁ ଚଢ଼ାଇଲେ ଗୁଣ
ସେ ଧନୁ ଟଙ୍କାର ଧ୍ୱନି ଉଠେ ଘନ ଘନ ।
ଆକାଶ ପାତାଳ ପୃଥୀ ଘୋଟିଲା ସେ ଧ୍ୱନି
ଥରହର ହୋଇ ଭୟେ କମ୍ପିଲା ମେଦିନୀ ।
ଲହରୀ ପ୍ରମାଣେ ମାଡ଼ି ଆସୁଥିଲେ ଥାଟ
ବନ୍ଧ ଦେଲେ ପାଣି ଯେସନେ ନ ପାଇଣ ବାଟ ।
ରହିଯାଏ ସ୍ଥିର ହୋଇ ରହିଲେ ତେସନ
ଘୃତ କାଷ୍ଠ ପାଇ ଜଳୁଥିବା ହୁତାଶନ ।
ପାଣି ପକାଇଲେ ଯେସନେ ଶିଖା ପଡ଼େ ଲଇଁ
ଟଙ୍କାର ଶବଦ ଶୁଣି ମହାଭୟ ପାଇ ।

ଚମକ ପଡ଼ିଲେ ଦେହ ଶୀତେଇ ପଡ଼ିଲା
ଛାତି ଦକ ଦକ ହେଲା ସର୍ବାଙ୍ଗ ଥରିଲା ।
ଅସ୍ତ୍ର ଶସ୍ତ୍ର ହସ୍ତୁ ଖସି ପଡ଼ିଲାକ ତଳେ
ନି ଶବଦ ହୋଇ କହି ରହିଲେ ସକଳେ ।
ରଥେ ବସି ଆସୁଥିଲା ବୀର ଲକ୍ଷଣୀରା
ଘନ ଘନ କମ୍ପିଲାକ ଯହିଁ ବସୁନ୍ଧରା !
ନ ଚଳିଲା ରଥଗୋଟି ପଡ଼ିଲା ଦୋହଲି
ରଥର ଉପରେ ଥାଇଁ ଦୈତ୍ୟ ଗଲା ହଲି ।
ଟଙ୍କାର ଶବଦ ଯାଇଁ ପଶିଲା ତା କର୍ଣ୍ଣେ
ବଧିର ପରାୟ ହୋଇ ରହି କେତେକ୍ଷଣେ ।
ଚାହିଁଦେଲା ଆଗେ ବିଜେ ରାମ ଧନୁର୍ଦ୍ଧର
କୋଦଣ୍ଡକୁ ଟଙ୍କାରନ୍ତି ଧରି ବାରମ୍ବାର ।
ରଥରେ ଥାଇ ବୋଇଲା ପ୍ରତାପୀ ଦଇତ
ଆରେ ରେ ମାନବ ତୋର ମରଣ ନିୟତ ।
ତେଣୁ କାଳ ତୋତେ ଏଥେ ଆଣିଛି କଡ଼ାଇ
ତୋ ନିମନ୍ତେ ବନରାତି ନିଦ ମୋତେ ନାହିଁ
ଖୋଜୁଥିଲି ଦଇବ ତା ଭେଟାଇଲା ଆଣି
ପଡ଼ିଲୁଣି ମୋର ମୁଖେ ଯିବୁ କାହିଁ ପୁଣି ।
ସିଂହ ଆଗୁଁ ଶଶା ଅବା ପଳାଇ ପାରଇ
ମାର୍ଜାର ମୁଖରୁ ଅବା ମୂଷା ଉବୁରଇ ।
ବାଘ ହାବୁଡ଼ରୁ ଅବା ଯାଇପାରେ ଛେଳି
ସାପ ହାବୁଡ଼ରୁ ଯାଇ ପାରଇ ବେଙ୍ଗୁଲି ।
ନେଉଳ ଆଗରୁ ଅବା ଯାଇପାରେ ସାପ
ମୋ ମୁଖୁ ରଖିବ ଆଜ ଆସି କେଉଁ ବାପ ।
ମୁଁ ଘରେ ନଥିଲି ତୁହି ପଶି ମୋର ପୁରେ
ପୁତ୍ର ନାତି ସହିତରେ ମାରି ସବଂଶରେ ।
ବୁଲିଲୁ ଏ ଲଙ୍କା ପୁରେ ଲୁହାମଇ
ଏମନ୍ତ ବୋଲିଣ କୋପେ ଦାନବ ଗର୍ଜଇ ।
ଶ୍ରୀରାମ ବୋଇଲେ କମ୍ପା ଗର୍ଜୁରେ ଦାନବ
ଏହିକ୍ଷଣି ଯମ ତୋତେ ବାନ୍ଧି ନେଇଯିବ ।
ଗର୍ଜିବେ ଦେବତାମାନେ କ୍ଷଣେ ହୁଅ ସ୍ଥିର
ଗର୍ବ କରୁ ବକ୍ଷ ସିନା ଲକ୍ଷେ ଗୋଟା ଶିର ।
ତୋ ମୁଣ୍ଡ ଛାରପଲକୁ ମୋ ନାରାଚ ବାଘ
ରୁଧିର ପିଇବ ମାରି ମନେ ଅଛି ରାଗ ।
ଏମନ୍ତ ଶୁଣି ଦାନବ କୋପେ ପରଜ୍ୱଳି
ଲକ୍ଷ ହସ୍ତେ ଲକ୍ଷ ଧନୁ ଧରି ମହାବଳୀ ।

ଛାଇଦେଲା ଗଗନକୁ ନାରାଚର ଜାଲେ
ଯେସନେକ ଜଳଧାରା ପଡ଼େ ବୃଷ୍ଟିକାଳେ ।
ଅତ୍ୟନ୍ତ ଘୋରେ ସମର ଦେଇଁ ବେଳ ହେଲା
ବାଣଘାତେ ପୃଥିବୀ ଯେ କମ୍ପନ ଲଭିଲା ।
କହି ନୁହେଁ ସେ ସମର କଥା ବଦନରେ
ଶ୍ରୀରାମ ଯୁଝନ୍ତି ଲକ୍ଷଣୀରର ସଙ୍ଗରେ ।

ଆଦିତ୍ୟକୁ ମେଘ ଯେହ୍ନେ ଢାଇ ଘୋଡ଼ାଇ
ତେସନ ଅଦୃଶ୍ୟ ହେଲେ ପ୍ରଭୁ ରଘୁସାଇଁ ।
ଦେଖି ହାହାକାର କଲେ ହନୁ ଆଦି ବୀରେ
ଦେବେ ଦେଖି ଆଚମ୍ବିତ ରହି ଆକାଶରେ ।
ରୋମେ ରୋମେ ଶ୍ରୀରାମଙ୍କ ଅଙ୍ଗେଭେଦେ ବା...
ଦେଖି ମହାକୋପ କଲେ ରଘୁକୁଳ ରାଣ ।



ସେହୁଁ ସେହୁଁ ବିଶ୍ୱମୂର୍ତ୍ତି ଧଇଲେକ ପ୍ରଭୁ
ମସ୍ତକରେ ବିରାଜନ୍ତି ମହାଦେବ ଶମ୍ଭୁ ।
କୋଟି କୋଟି ସୂର୍ଯ୍ୟ ଚନ୍ଦ୍ର ଅସଂଖ୍ୟ ନୟନ
ଅସଂଖ୍ୟ ଯେ ଶିର ବାହୁ ଅସଂଖ୍ୟ ଚରଣ ।
ଚଉଦବ୍ରହ୍ମାଣ୍ଡ ଘୋଟିଅଛି ରୂପ ଗୋଟି
ମହାଭୟଙ୍କର ରୂପ ଭୟଙ୍କର ପାଟି ।
ଦେଖି ଦାନବର କରୁ ଖସିପଡ଼େ ଧନୁ
ବିଶ୍ୱରୂପ ଦେଖି ମନେ ବିଚାରଇ ହନୁ ।
ଧନ୍ୟ ମୋର ପିତା ମାତା ଧନ୍ୟ ମୋର ଜନ୍ମ
ଧନ୍ୟ ମୋର ହେଲା ଆଜ ଏ ବେନି ନୟନ ।
ଦେଖିଲି ମୁଁ ପ୍ରଭୁଙ୍କର ବିରାଟ ମୁରତି
ଏହା କହି କରଯୋଡ଼ି କରଇ ଯେ ସ୍ତୁତି ।
ହନୁ ବିନା କାହାରିକି ନ ଦିଶଇ ରୂପ
ଦେଖି ଦେବେ ଭୟକଲେ ଶ୍ରୀରାମଙ୍କ କୋପ ।
ନିଶ୍ଚୟ ପ୍ରଳୟ ହେବ ନ ରହିବ ମହୀ
ଲକ୍ଷଣୀରା ରଥପରେ ପଡ଼େ ମୂର୍ଚ୍ଛା ଯାଇ ।
ପୁଣି ସୌମ୍ୟରୂପ ପ୍ରଭୁ ଧଇଲେ ତକ୍ଷଣେ
ଚେତାପାଇ ଦାନବ ଯେ ମନେ ମନେ ଗୁଣେ
ନୁହଇ ଏ ସାନ ପୁଣି ନୁହଇ ଇତର
ଏହାକୁ ଯେ ଜିଣିବ ସେ ବୋଲାଇବ ବୀର ।

ଏମନ୍ତ ଭାଳିବା ବେଳେ ରଘୁକୁଳମଣି
ଗୁଣେ ବସାଇଲେ ଏକ ବାଣ ବାଛି ଆଣି ।
ଛାଡ଼ିଦେଲେ ବିଶ୍ୱାମିତ୍ର ଗୁରୁଙ୍କୁ ସୁମରି
କହିଲେ ପ୍ରଭୁ ପୁଣି ସେ ବାଣକୁ ତିଆରି ।
ଦାନବ ରାଜାର ଆଠ ନ ରଖିବୁ ଏକ
ଏମନ୍ତ ପ୍ରଭୁଙ୍କ ମୁଖୁ ଶୁଣି ସେ ଶାୟକ ।
ଚଳିଲା ଗର୍ଜନ କରି ପବନରୁଁ ବେଗେ
କାଟିଗଲା ଅସୁରଙ୍କ ମୁଣ୍ଡ ମହାରାଗେ ।
ପଡ଼ିଲେ ସେ ଛିନ୍ନଛିନ୍ନ ହୋଇ ଏଣେତେଣେ
ବୃକ୍ଷ ଶାଖା ଛିଡ଼ିଗଲେ ଯେସନେକ ବନେ
ଦିଶନ୍ତି ତେସନ ଶୋଭା ପାଇ ରଣ ଭୂଇଁ
କେହି କେହି ନାଚୁଛନ୍ତି ଥେଇ ଥେଇ ହୋଇ
କେଉଁ ମୁଣ୍ଡ ତଳେ ପଡ଼ି ହୁଏ ଠହ ଠହ
ଘଡ଼କେ ଅସୁର ଆଠ ଗଲେ ଯମଗୃହ ।
ବହିଲା ରୁଧିର ନଈ ବାରୟୁଣ ମାଡ଼ି
ସୋତେ ଭାସିଯାଉଛନ୍ତି ମଡ଼ା ସବୁ ପଡ଼ି ।
ସାତତାଳ ଉତ୍ସର୍ଗ ଯେ ରକ୍ତନଦୀ ଗୋଟି
ଲହରୀମାନ ତହିଁରୁ ଗିରି ପ୍ରାୟ ଉଠି ।
ଯେତେ ଘୋଡ଼ା ହାତୀ ରଥୀ ପଦାତି ପାଇକ
ଛାଡ଼ି ଯାଇଅଛି ରଣେ ସମସ୍ତଙ୍କ ବେକ ।

ଭସୁଛନ୍ତି ଶିରପ୍ରାପ୍ତ ମଡ଼ା କୋଟି କୋଟି
ଭସି ଭସି ଆସି ପୁଣି ହୁଅନ୍ତି ଏକାଠି ।
ଶୂନ୍ୟେ ଦେବତାଏ ଦେଖି ହେଲେ ଆଚମ୍ବିତ
ବୋଇଲେକ ଧନ୍ୟ ଧନ୍ୟ ବୀର ରଘୁନାଥ ।
କେନେ ଦେଖି ନାହୁଁ ଆମ୍ଭେ ଏମନ୍ତ ସମର
ସତ୍ୟଯୁଗେ ଥିଲା ବୀର ମହିଷା ଅସୁର ।
ଶୁମ୍ଭ ନିଶୁମ୍ଭ ଆବର ଚଣ୍ଡ ମୁଣ୍ଡ ବେନି
ରକ୍ତବୀର୍ଯ୍ୟ ଦନୁଜର ଦେଖିଛୁ ସଇନ ।
ମହାମାୟୀଙ୍କର ସଙ୍ଗେ କଲେ ସେହି ରଣ
ଏ ଯୁଗରେ ମହାବୀର ବୋଲାଇ ରାବଣ ।
ତୋର ସମାନ ନ ଥିଲେ ଧନୁର୍ଦ୍ଧର କେହି
ଏକବାଣେ ଏତେ ସେନା କାଟିଲୁ ହୋ ତୁହି ।
ଦଶକୋଟି ପଦାତିକ ପାଞ୍ଚକୋଟି ଜେନା
ଅପୂଚେକ ରଥ ରଥୀ ବାରପଦ୍ମ ସେନା ।
ପାଞ୍ଚଲକ୍ଷ ହସ୍ତି ମତ୍ତଗଜ ସହସ୍ରେକ
ଖଙ୍ଗ ଖଙ୍ଗ ଗଉଡ ଯେ ମାହୁନ୍ତ ପାଇକ ।
ଶାର୍ଦ୍ଦୂଳ ବରାହ ଓଟ କେ ପାରିବ ଗଣି
ଏକବାଣ ଯାଇ ସବୁ ପକାଇଲା ହାଣି ।
ବିଭୀଷଣ ଆଦି ବୀରେ ଦେଖି ଏ ଅଦ୍ଭୁତ
ବୋଇଲେ ଧନ୍ୟ ହୋ ତୁହି ରାଜା ଦଶରଥ ।
ଧନ୍ୟ ଧନ୍ୟ କଉଶଲ୍ୟା ରାମ ଗର୍ଭଧାରୀ
ଧନ୍ୟ ଧନ୍ୟ ଧନୁର୍ଦ୍ଧର ଜାନକୀ ବିହାରୀ ।
ଲକ୍ଷଶିରା ରଥେ ଥାଇଁ ଦେଖି ଏ ସମର
ମନେ ବିଚାରିଲା ଏତ ମହାଧନୁର୍ଦ୍ଧର ।
ଏକାବାଣେ ଏତେ ସୈନ୍ୟ ପକାଇଲା ମାରି
ସାରଥି ତ ନାହିଁ ପୁଣି ରଥରେ ମୋହର ।
କି ବୁଦ୍ଧି କରିବି ମୋର ମଲେ ସବୁ ସୈନ୍ୟ
କି ହେବ ଥାଇ ମୋହର ଲକ୍ଷେକ ବଦନ ।
ଦୁଇଲକ୍ଷ ଭୁଜଥାଇଁ ରଖି ନ ପାରିଲି
ଅକାରଣେ ଅସୁରଙ୍କୁ ଆଣି ମରାଇଲି ।
ବିଲଙ୍କାରେ ଅସୁର ତ ନାହାନ୍ତି ଗୋଟିଏ
ଅସୁରୀ ଅଛନ୍ତି ପୁରେ କୋଟିଏ କୋଟିଏ ।
ବାଳ ବୃଦ୍ଧ ଅଛନ୍ତି ଯେ ବାରପଦ୍ମ ତହିଁ
ମୁଖ ଦେଖାଇବି ଯାଇଁ କାହାକୁ ଯେ ମୁହିଁ ।
କି ବୋଲିବେ ମୋତେ ପୁଣି ବିଲଙ୍କା ନଗରେ
ଲାଜ ପାଇଲିଇଁ ଏକା ମାନବ ଆଗରେ ।

ଜାଣିଥିଲି ସିନା ନର ଆମ୍ଭର ଆହାର
ଆହାର ଆମ୍ଭଙ୍କୁ ଗିଳେ ଏ ତ ଚମତ୍କାର ।
ଶଶାଗୋଠା ଆସି ସିଂହ ପଲ ଦେଲା ଖାଇ
ଏ ବଚନ କାହା ଆଗେ କହିବି ମୁଁ ଯାଇ ।
ଶୁଣି ଏ କଥାକୁ କେହି ନ ସିବେ ପରତେ
ହସରେ ଉଡ଼ାଇ ଦେବେ ଶଳାମାନେ ମୋତେ
ଏମନ୍ତ ସେ ଭକ୍ତୁ ଭକ୍ତୁ ଉଦେ ହେଲା କ୍ରୋଧ
ଧନୁଧର ସେ ପ୍ରତାପୀ ଦୈତ୍ୟ କଲା ଯୁଦ୍ଧ ।
ଶ୍ରୀରାମ ତା ହସ୍ତୁ ଧନୁ କାଟି ପକାଇଲେ
ଛତ୍ର ଚାମର ଯେତେକ ଥିଲା ତା କାଟିଲେ ।
ଲକ୍ଷଗୋଟା ମୁକୁଟ ଯେ ଥିଲା ତାର ଶିରେ
କାଟି ପକାଇଲେ ରାମ ତାହା ତୀକ୍ଷ୍ଣ ଶରେ
ଗଦା କରେ ଧରି ବୀର ପଡ଼ିଲାକ ଡେଇଁ
ଚକ୍ର ଆକାର ବୁଲାଇ କ୍ରୋଧରେ ଧାଇଁ
ତା ଦେଖି ପବନ ସୁତ ବୀର ହନୁମାନ
ଲାଞ୍ଜରେ ଟେକିଲା ତାର ଗଦାକୁ ବହନ ।
ଛଡ଼ାଇଣ ଫିଙ୍ଗିଦେଲା ପଡ଼ିଲା ସାଗରେ
ନିସତ ହୋଇଲା ଶସ୍ତ୍ର ନ ଥିବାରୁ କରେ ।
ଡେଇଁ ଯାଇ ହନୁ ତାର କାନ୍ଧରେ ବସିଲା
ଜାମ୍ବବାନ ଯାଇ ତାର ପାଦକୁ ଧଇଲା ।
ସୁଗ୍ରୀବ ଅଙ୍ଗଦ ନଳ ନୀଳ ଗଲେ ଧାଇଁ
ମସ୍ତକ ଉପରେ ଡେଇଁ ବସିଲେକ ଯାଇଁ ।
ଦେଖି କୋପେ ସେ ଦୁର୍ଦ୍ଦାନ୍ତ ଦୈତ୍ୟ ଗଲା ଡେଇଁ
ପଡ଼ିଲେ ଏ ସବୁ ବୀରେ ଖଣ୍ଡେ ଦୂରେ ଯାଇ ।
ଦେଖି ରାମ ଧନୁର୍ଧର ବିନ୍ଧିଲେକ ଶର
କୋଟି କୋଟି ଲକ୍ଷ ଲକ୍ଷ କଙ୍କମୁନା ତାର ।
ଶତ୍ରୁଘ୍ନ ବିଭୀଷଣ କରେ ଧନୁ ଧରି
ବାଣ ବିନ୍ଧୁଛନ୍ତି ଅସୁରକୁ ଲକ୍ଷ୍ୟ କରି
ବଜ୍ରଗିରି ପ୍ରାପ୍ତ ଉଭା ହୋଇଛି ଦନୁଜ
ଉପୁଡ଼ି ପଡ଼ନ୍ତି ଦେହେ ପଡ଼ିଣ ନାରାଜ ।
ରହିଛି ସେ ରଣରଙ୍ଗୀ ମନେ ନାହିଁ ଶଙ୍କା
ନାରାଚମାନଙ୍କ ମୂନ ହୋଇଲାଣି ବଙ୍କା ।
ଭରତ ଶତ୍ରୁଘ୍ନ ଯେତେ ନାରାଚ ବିନ୍ଧିଲେ
ବିଭୀଷଣ ତାଙ୍କ ସଙ୍ଗେ ବାଣ ଯେ ସନ୍ଧିଲେ
ସବୁ ଦାନବର ଦେହେ ପଡ଼ି ହୁଏ ଚୂନା
ଅସୁରର ଦେହଗୋଟା ଅଟେ ବଜ୍ରସେହ୍ନା ।

ଫୁଟିଣ ରହିଲେ ବନ୍ଧ ବନ୍ଧ ଗୃହ ବୀରେ
ସୁଗ୍ରୀବ ଗଜନ ଯାଇ ଅସୁରକୁ ଧରେ ।
ସୂଚମୂନେ ମେରୁଗିରି ପଡ଼ଇ କ ଟଳ
ଗୃପୋଡ଼ା ମାଇଲା ତାକୁ କୋପେମହାବଳୀ ।
ଖଣ୍ଡେ ଦୂରେ ପଡ଼ିଲା ସେ ମୁଣ୍ଡକୁ ଘୂରାଇ
ଖୁଡ଼ୁ ତାର ଦଶା ଦେଖି ଅଙ୍ଗଦ ଯେ ଧାଇଁ ।
ଦାନବକୁ ପକାଇଲା ବଜ୍ରସମ ବାଧା
ଗର୍ଜିଲା ଦାନବସିଂହ ପାଇ ମହାବାଧା ।
ଅଙ୍ଗଦକୁ ଧଇଲା ସେ ବଢ଼ାଇଣ କର
ଏମନ୍ତ ଦେଖିଣ କୋପେ ଗଲା ନଳବୀର ।
ବସିଣ ତା ଶିରେ ଯାଇ ମୋଡ଼ନ୍ତେ ତା ବେକ
କରକୁ ବଢ଼ାଇଦେଲା ଅସୁର ନାୟକ ।
ଏ ମୁଣ୍ଡରୁ ସେ ମୁଣ୍ଡକୁ ଡେଇଁ ଯାଏ ନଳ
ଦେଖୁଛନ୍ତି ଦେବଗଣେ ଯୁଦ୍ଧ କୁତୂହଳ ।
ଅସୁର ଧରିବା ପାଇଁ ବଢ଼ାଉଛି କର
ଡେଇଁଯାଇ ବସେ ଆର ମୁଣ୍ଡରେ ତାହାର ।
ଦୁଇଲକ୍ଷ ହସ୍ତ ଦୈତ୍ୟ ବଢ଼ାଇଣ ଦେଲା
ଅଙ୍ଗଦକୁ ଛାଡ଼ି ନଳ କପିକି ଧରିଲା ।
କାଖତଳେ ଦୃଢ଼େ ଯାକି ଧରି ମହାବଳୀ
ଶ୍ରୀରାମଙ୍କ ନିକଟକୁ ଧାମଇ କୁରୁଳି ।
ଦେଖିଣ ଜାମ୍ବବ ବୁଢ଼ା ଗଲା ଧୀରେ ଧୀରେ
ଦନୁଜ ଜାନୁକୁ ଯାଇ ପଛଆଡ଼ୁ ଧରେ ।
ଗୋଡ଼େ ଗୋଡ଼ ଛନ୍ଦିଦେଇ ପକାଇଲା ଫାଶ
ଚଳି ନ ପାରିଲା ସେହି ପ୍ରତାପୀ ରାକ୍ଷସ ।
ମୂଳ ଛିଡ଼ିଗଲେ ତରୁ ପଡ଼େ ଯେଉଁପରି
ଭୂମିରେ ପଡ଼ିଲା ତେହ୍ନେ ଦାନବ କେଶରୀ ।
ନଳ କ୍ଷୁଦ୍ରରୂପେ କାଖତଳୁ ବାହାରିଲା
ଦାନବ ଛାତିରେ ବସି ବିଧାଏ ମାଇଲା ।
କ୍ଷଣେ ମୂର୍ଚ୍ଛାଗଲା ତେଡ଼େ ବଡ଼ ବୀର ଗୋଟା
ଜାମ୍ବବ ମାଇଲା ଦୈତ୍ୟ ନାକରେ ଗୋଇଠା
ହ୍ରଦଠାରୁ ଦୈତ୍ୟ ନାଭି ଅଧିକ ଗଭୀର
ପାଦ ନ ପାଇଲା ଗଲା ପଡ଼େ ଋକ୍ଷବୀର ।
ଥଳ କୂଳ ନ ପାଇଣ ଅଇଲା ବାହାରି
ଉଠିଲା ଦାନବ ବୀର ଗରଜନ କରି ।
ଦେଖି ଡରେ ନଳ କପି ଡେଇଁ ପଳାଇଲା
ନଳ ପଛେ ପଛେ ଉଠି ଦୈତ୍ୟ ଗୋଡ଼ାଇଲା

ପଳାଉଛି ନଳବୀର ପବନହୁଁ ବେଗେ
ଗୋଡ଼ାଇଛି ପଛେପଛେ ଦୈତ୍ୟରାଜ ରାଗେ ।
ଦେଖି ନୀଳ କପି ଗଲା ଗରୁଡ଼ ପରାୟେ
ବସିଲା ଦାନବ କାନ୍ଧେ ବଢ଼ାଇଣ କାୟେ ।
ନୃତ୍ୟକଲା ତାଳମାରି ତା ଦେଖି ଅସୁର
ନୀଳକୁ ଧରିଲା କରେ ହୋଇକୋପଭର ।
ନୀଳ ଧରାପଡ଼ିବାର ଦେଖି ହନୁମାନ
ଲାଞ୍ଜକୁ ବଢ଼ାଇ ଦେଲା ସହସ୍ରେ ଯୋଜନ ।
ଦାନବକୁ ନିବଡ଼ରେ ପକାଇଲା ବାନ୍ଧି
ନ ଚଳି ପାରିଲା ଦୈତ୍ୟ ହୋଇଲାକ ବନ୍ଦୀ ।
ନୀଳକୁ ସେ ଛାଡ଼ିଦେଇ ଧଇଲା ଲାଙ୍ଗୁଡ଼
ଫିଟଉ ଫିଟଉ ହନୁ ମାଇଲା ଗୃପୋଡ଼ ।
କ୍ଷୁଦ୍ରରୂପ ଧରି ତହୁଁ ଶୂନ୍ୟମାର୍ଗେ ଗଲା
ଦେଖି ଦାନବର ମହାକୋପ ଜାତହେଲା ।
ରାମଙ୍କ ପାଖକୁ ବେଗେ ଆସିଲାକ ଧାଇଁ
ତାହା ଦେଖି ହନୁମାନ ବେଗେ ଧାଇଁଯାଇଁ ।
ପର୍ବତେକ ଆଣି ତାର ମୁଣ୍ଡେ କଚାଡ଼ିଲା
ମନ୍ଦର ଗିରିରେ ଟେକା ଖଣ୍ଡେ କ ପଡ଼ିଲା ।
ହସିଲାକ ଟହ ଟହ ହୋଇ ବୀରମଣି
ଶ୍ରୀରାମଙ୍କ ମୁଖରୁହିଁ ବୋଲେ ଶିର ଟୁଣି ।
ଆରେ ମାନବା ତୋର ପୂରିଲାଟି କାଳ
ଆରେରେ ମାନବା ଯମକରେ ତୋର ବାଳ
ଆରେରେ ମାନବା ତୋର ପିଇବି ରୁଧିର
ଆରେରେ ମାନବା ଫେରି ଯିବୁକି ତୁ ଘର ।
ନୁହଇ ମୁଁ ସପ୍ତଶିର ତ୍ରିଶିରା ଆବର
ସହସ୍ରଶିରା ପରାୟେ ମଣୁକି ପାମର ।
ମୁହିଁ ତ ନିଶସ୍ତ୍ର ତୁହି ଅଟୁ ଶସ୍ତ୍ରଧାରୀ
ବନ୍ଧୁଜନ ବନବାସୀ ତୁ ନାରୀଚ ଧରି ।
ଯେତେ ତୋତେ ଶିଖାଇଛି ଗୁରୁଯେ ତୋହର
କରୁ କି ନା ତାହାସବୁ ମୋ ଦେହେ ପ୍ରହାର ।
ତୁମ୍ଭେ ଦଶଜଣ ମୁହିଁ ଅଟେ ଏକା ଜଣେ
ପରଖିବା ତୁମ୍ଭ ଆମ୍ଭ ବଳ ଆଜ ରଣେ ।
ଧାଇଁଲା ଏମନ୍ତ କହି ବଦନ ବିସ୍ତାରି
ବାଣେ ଏକ ଟେଣିଲେ ଲକ୍ଷ ଗୁହା ଥିଲାପରି ।
ଗରଜନ ଘାତେ ସୁର ଥରକୁଛନ୍ତି ଭାଙ୍ଗି
ଶ୍ରୀରାମ ମାରନ୍ତି ଶର ବେଳକୁ ବେଳ ରାଗି ।

କକଡ଼ା ମାସରେ ଜଳ ବରଷିଲା ପରି
ଶରବୃଷ୍ଟି କରୁଛନ୍ତି ପ୍ରଭୁ ଶ୍ରୀପଧାରୀ ।
ବିଭୀଷଣ ଶତ୍ରୁଘ୍ନ ଭରତ ଏ ତିନି
ବିନ୍ଧୁଛନ୍ତି ଧନୁ ଧରି ମେଘବୃଷ୍ଟି ଜାଣି ।
ଅନୁକ୍ଷଣେ ବାଣ ପଡ଼େ ଦାନବ ଉପରେ
ଯେସନେ କରକା ପଡ଼େ ଶଇଳ ଶିଖରେ ।
ସାତଦିନ ସାତରାତ୍ତି ନାହିଁ ନା ବିଶ୍ରାମ
ମୀଳବାଣ ଭୁଜବାଣ ମାଇଲେ ଶ୍ରୀରାମ ।
ପାଶୁପତ ବ୍ରହ୍ମଶର ବ୍ରହ୍ମଶୀର ପୁଣ
ବାବଲ ଯେ ମନଭେଦୀ ସମ୍ମୋହନ ବାଣ ।
କାଳାନ୍ତକ ଯୁଗାନ୍ତକ ଇନ୍ଦ୍ର ଅଗ୍ନିଶର
ଶୂଳ ଶକତି ମୂଷଳ ତୋମର ମୁଦ୍‌ଗର ।
ପବନାସ୍ତ୍ର ବରୁଣାସ୍ତ୍ର ଅସ୍ତ୍ର କୃତାନ୍ତକ
ବଇଷ୍ଣବୀଚକ୍ର ଚନ୍ଦ୍ର ସୂର୍ଯ୍ୟ ଆବର୍ତ୍ତିକ ।
କୁନ୍ତ ଯଷ୍ଟି ଏକମୁନା ଦ୍ଵିମୁନା ତ୍ରିମୁନା
ନାଗପାଶ କାଳପାଶ ବଜ୍ର ସୂଚିମୁନା ।
ଦେବଶର ନାଗଶର ଗନ୍ଧର୍ବଙ୍କ ଶର
ମାରୁଛନ୍ତି ଅନୁକ୍ଷଣେ ପ୍ରଭୁ ରଘୁବୀର ।
ଦାନବ ରହିଛି ଯୁଦ୍ଧେ ମହାଗିରି ପ୍ରାୟେ
ଶୂର ବୀର ଧନୁର୍ଦ୍ଧର ଜଗତେ ଅଜେୟ ।
ସାତଦିନ ସାତରାତି ବାଣ ବିନ୍ଧି ବିନ୍ଧି
ହାତ ନ ଚଳିଲା ଶର ନ ପାରି ସେ ସନ୍ଧି ।
କପିବୀରେ ତରୁ ଶିଳା ବରଷନ୍ତି ଆଣି
କରକା ପଡ଼ି ପର୍ବତେ ହୁଏ ଯେହ୍ନେ ପାଣି ।
ତେସନ ଦାନବ ଦେହେ ପଡ଼ି ହୁଏ ଚୂନା
ବଜ୍ରହୁଁ କଠିନ ଅଟେ ଦନୁଜର ସେହ୍ନା ।
ଆଶ୍ଚର୍ଯ୍ୟ ହୋଇଲେ ଦେଖି ଶୂନ୍ୟେ ଦେବଗଣ
ବୋଇଲେ ତ ହୀରାଠାରୁ ଏ ଅସୁର ଟାଣ
କେମନ୍ତେ ମରିବ ଏହି ଦୈତ୍ୟ ମହାବଳୀ
ଏମନ୍ତ ଭାବନ୍ତି ସ୍ଵର୍ଗେ ଦେବତାଏ ମିଳି ।
ଦେଖି ମହାଭୟ କଲେ ହନୁ ଆଦି ବୀରେ
ମହାବଳବନ୍ତ ଦୈତ୍ୟ ଗୋଟାଏ ମହୀରେ ।
ଏହା ସମ ବୀର ଜଣେ ଦେଖିନାହୁଁ କାହିଁ
କେମନ୍ତେ ମରିବ ଦୈତ୍ୟ ବୁଦ୍ଧି ବିଶୁନାହିଁ ।
ବୋଇଲେକ ଲକ୍ଷଣବୀର ଉଚ୍ଚେ ହସି ହସି
ନଳଠାପଣରେ ତୁମ୍ଭେ ଯୁଦ୍ଧକର ଆସି ।
ଯେଉଁବୀର ଗଦାବାତେ ଉଡ଼ାଇଣ ଦେଲା
ତାର ବଳ ତୁମ୍ଭଙ୍କୁରେ ଜଣା କି ନ ଗଲା ।
ଶୁଣ ନର ବାନର ତ ଅଟ ମାଟି ଜାତି
ମେରୁ ପର୍ବତକୁ ଠେଲା ମାରୁଛ ଦୁର୍ମତି ।
ଚନ୍ଦ୍ରମାକୁ ଧରିବାକୁ ବଢ଼ାଉଛ ହାତ
ସୂଚିମୁନେ ଟାକୁଛରେ ମହତ ପର୍ବତ ।
ସାମାନ୍ୟ ରାକ୍ଷସ ରଣେ ମାରି ଗୋଟା କେତେ
ମନ ବଢ଼ିଯାଇଅଛି ଆକାଶ ପର୍ଯ୍ୟନ୍ତେ ।
ସାହସ ବଳିବା ହେତୁ ମୋ ସଙ୍ଗତେ ଯୁଝ
ମୋହର ବିକ୍ରମ ବଳ କେତେ ଏବେ ବୁଝ ।
ଏହା କହି ଧାଇଁଲା ସେ କରି ଗରଜନ
ଗୃପୋଡ଼କେ ସୁଗ୍ରୀବକୁ କଲା ଅଚେତନ ।
ଅଙ୍ଗଦକୁ ଗୋଇଠାଏ ମାଇଲା ନଠାଇ
ତାରାର ନନ୍ଦନ ପଡ଼େ ଅଚେତନ ହୋଇ ।
ନଳକୁ ନୀଳ ଉପରେ ନେଇ କଚାଡ଼ିଲା
ଜାମ୍ବବ ଉପରେ କୋପେ ବିଧାଏ ମାରିଲା ।
ଚେତା ବୁଡ଼ିଗଲା ପାଇ ବିଷମ ଆଘାତ
ଦେଖିଲା ଯେ ଆଗେ ଅଛି ବୀର ହନୁମନ୍ତ ।
ତାହାକୁ ଧରିବା ପାଇଁ ଧାମନ୍ତେ ଅସୁର
ଭଏ ପଛଘୁଞ୍ଚା ଦେଲେ ପବନ କୁମର ।
ରାମଙ୍କ ପାଖକୁ ଗଲା ଦନୁଜ ଯେ ଧାଇଁ
ପଛଘୁଞ୍ଚା ଦେଲେ ଡରେ ପ୍ରଭୁ ରଘୁସାଇଁ ।
ରାମଙ୍କ ହନୁ ହଟିବାର ଦେଖି ବିଭୀଷଣ
ପଳାଇଲା ଧନୁଶର ଧରି ଛାଡ଼ି ରଣ ।
ଶତ୍ରୁଘ୍ନ ଭରତ ଏ ଦୁହେଁ ଗଲେ ହଟି
ପଳାନ୍ତି ଏ ପାଛେ ଦୈତ୍ୟ ଯାଉଛି ପାଗୋଟି ।
ସହସ୍ର ଯୋଜନ ଯାଏ ଗୋଡ଼ାଇଲା ଦୈତ୍ୟ
ଦେଖି ମହା କୋପଭରେ କୈକେୟୀର ସୁତ ।
ଲେଉଟି ଧନୁକୁ ଧରି ବିନ୍ଧିଲେକ ବାଣ
ରହ ରହ ବୋଲି ଉଚ୍ଚେ ଡାକିକରି ପୁଣ ।
କେଣିକି ଯାଉଛୁ କର ମୋ ସଙ୍ଗେ ମସର
ପଠାଇବି ଏହିକ୍ଷଣି ତୋତେ ଯମଘର ।
ଏହାକହି ଟଙ୍କାରିଲେ ବାର ବାର ଧନୁ
ଶୁଣିଣ ଏମନ୍ତ ବାଣୀ ବହୁଗିରି ସୁନୁ
ଯଷ୍ଟି ପ୍ରହାରିଲେ ଯେହ୍ନେ ଲେଉଟଇ ଅହି
ତେସନ ସେ ଲେଉଟିଲା ନ ପାରି ସହି ।

ଭରତ ରହିବା ଦେଖି ରହିଲେ ସମସ୍ତେ
ବିଶ୍ୱମୂର୍ତ୍ତି ଧରି ହନୁ ଅଇଲା ଭୁଇଁରେ ।
ଶତଯୋଜନ ଯାଏ ତାର ବଢ଼ିଅଛି କାୟ
ଦିଶନ୍ତି ସେ ଭୟଙ୍କର ମହାଗିରି ପ୍ରାୟ ।
ବେକରେ ପର୍ବତେକ ବାନ୍ଧି ଆସେ ଘେନ
ମହାବିଶ୍ୱମୂର୍ତ୍ତି ଧରି ଅଛଇ ପାବନ ।
ରାକ୍ଷସଙ୍କୁ ପର୍ବତରେ ପକାଇଲା ପୋତି
ହନୁମାନର ଏ କର୍ମ ଦେଖି ଦୈତ୍ୟପତି ।
ବୋଇଲା ବାନର ଧନ୍ୟ ତୋର ପିତାମାତା
ଧନ୍ୟ ଧନ୍ୟ ବୀର ତୁରେ ଅଟୁ ବଳବନ୍ତା ।
ଏହା କହି ଶିରସାକ ଛାଞ୍ଚାଡ଼ି ପକାଇ
ଦୁଇଲକ୍ଷ ହସ୍ତେ ଧରେ ହନୁକୁ ସେ ଯାଇ ।
ଦୁଇହସ୍ତେ ହନୁ ତାକୁ ଧଇଲା ସାଉଁଟି
ଦୁହେଁଯାକ ହେଲେ ମୁଣ୍ଡେ ମୁଣ୍ଡ ପିଟାପିଟି ।
ଧରାଧରି ହୋଇ ତଳେ ଗଲେ ଦୁହେଁ ପଡ଼ି
ଘଡ଼ିଏ ପର୍ଯ୍ୟନ୍ତେ ଦୁହେଁ ହେଲେ ଗଡ଼ାଗଡ଼ି ।
ରାକ୍ଷସଙ୍କୁ ତଳେ ପାରି ମାଡ଼ିବସେ ହନୁ
ଉଦୟଗିରିରେ ଉଦେ ହେଲେ କିବା ଭାନୁ
ତେସନ ପବନସୁତ ତେଜ ବିରାଜଇ
ଦାନବ ଛାତିରେ ବସି ବିଧା ପ୍ରହାରଇ ।
ଦନ୍ତରେ ବଜ୍ରାଘାତ ପ୍ରାୟ ଉଠେ ଧ୍ୱନି
ଦେଖି ରାମ ପ୍ରଶଂସନ୍ତି ଧନ୍ୟ ତୁ ପାବନ ।
ଦେବତାଏ ବୋଲନ୍ତି ଯେ ଶୂନ୍ୟମାର୍ଗେ ଥାଇ
ଧନ୍ୟ ଧନ୍ୟ ମାରୁତି ତୋ ସମ ବୀର ନାହିଁ ।
ଦେବକାର୍ଯ୍ୟ କରି ବାବୁ ଅସୁରକୁ ମାରି
ଉଶ୍ୱାସ ହୋଇବ ବାବୁ ପୃଥିବୀର ଭାରି ।
ହନୁର ବିଷମ ଘାତ ପାଇଣ ଦୁରନ୍ତ
ପ୍ରହରେକ ଯାଏ ତହିଁ ହୋଇଲା ଅଚେତ ।
ମୁଣ୍ଡକୁ ମୋଡ଼ଇ ହନୁ କରି ଗରଜନ
ନ ଛାଡ଼ଇ ବଜ୍ରଠାରୁ ଅଟଇ କଠିନ
ପ୍ରହରକଯାଏ ହନୁ ମାଇଲାକ ଯେତେ
ସର୍ପ ଶ୍ରେଷ୍ଠ ବ୍ୟର୍ଥ ଯେହ୍ନେ ଗରୁଡ଼ର ମାଥେ
ତେସନ ତହିଁରେ କିଛି ନୋହିଲା ତାହାର
ଚେତନା ପାଇ ଦେଖିଲା ବଳିଷ୍ଠ ଅସୁର ।
ଲେଉଟାଇ ହନୁକୁ ସେ ବସିଲାକ ମାଡ଼ି
ମୁଖେ ରାମ ରାମ କହି ହନୁ ତଳେ ପଡ଼ି ।

ଦେଖିଣ ଶ୍ରୀରାମ ଧନୁ ଧଇଲେକ କରେ
ବାନ୍ଧିଲେ ହାବୋଡ଼ା ବାଣ ଚଳିଗଲା ଖରେ ।
ଦାନବକୁ ଲେଉଟାଇ ପକାଇଲା ତଳେ
ହନୁ ଉଠି ଦାନବକୁ ଧରେ ପୁଣି ବଳେ ।
ଦୁଇପାଦ ଧରି ତାକୁ କଚାଡ଼ିଲା ନେଇ
ତାର ଦେହବାଜି ଗିଡ଼ି ଗଲା ଚୂର୍ଣ୍ଣହୋଇ ।
ନ ମଲା ଦନୁଜ ଦେଖି ଆଚମ୍ଭିତ ହନୁ
ସମୁଦ୍ରରେ ପକାଇଲା ପୁଣି ବାତସୂନୁ ।
ଜଳରେ ନ ମଲା ସେହି ଅଇଲା ପହଁରି
ଦେଖିଲା କୂଳରେ ଅଛି ବଳବନ୍ତ ହରି ।
ଧାଇଁଲା ସେ ଧରିବାକୁ ମହାକୋପଭରେ
ପଳାଇଲା ହନୁମାନ ତା ଆଗରୁ ଡରେ ।
ପଳାଉଛି ହନୁ ପଛେ ଧାଉଁଛି ଅସୁର
ଦେହ ପବନରେ ଗିରି ବୃକ୍ଷ ହୋଇ ଚୂର ।
କୋପେଣ ଭରତ ପଞ୍ଚ ମାଇଲେ ବାଟୁଳି
ପକ୍ଷୀପ୍ରାୟ ଗଗନରେ ସେହୁ ଗଲା ଚଳି ।
ବଜ୍ରପ୍ରାୟ ବାଜିଲା ସେ ଅସୁରର କର୍ଣ୍ଣେ
ଭ୍ରମିଲା ଅସୁର ଚକ୍ର ଭ୍ରମଇ ଯେସନେ ।
କର୍ଣ୍ଣମୂଳେ ହାତଦେଇ ପଳାଇଲା ତହୁଁ
ଫୁଟିଯାଇ କର୍ଣ୍ଣମୂଳୁଁ ବହିପଡ଼େ ଲହୁ ।
ମହାବ୍ୟଥା ପାଇ ଦୈତ୍ୟ ବାହୁଡ଼ି ଆସଇ
ଏକାକେ ଯାଇ ବିଲଙ୍କା ଭୁବନେ ପଶଇ ।
କାହାକୁ କିଛି ନ କହି ଗଲା ଅନ୍ତଃପୁରେ
ଝୁରଣସି ରାଣୀ ଆସି ମିଳିଲା ପାଶରେ ।
ବୋଇଲା ହେ ନାଥ ଏକା ସୈନ୍ୟଗଲେକାହିଁ
ଦୁଇଲକ୍ଷ ନୟନରୁ ଲୁହ ପଡ଼େ ବହି ।
ଶିରେ କରମାରି ବୋଲେ ଆହାରେ ଦଇବ
ଅପମାନ ଦେଲେ ଛାର ବାନର ମାନବ ।
ଏମନ୍ତ ଭାଳି ସେ କିଛି ନ କହି ରାଣୀକି
ଭାବନାରେ ବସିଅଛି ଚାହିଁ ପୃଥିବୀକି ।
ପିଠିକି ଆଉଁଷିଦେଇ ପଚାରଇ ରାଣୀ
ମଉନ ହୋଇ ଘଡ଼ିଏ ଯାଏ ନୃପମଣି ।
କହଇ ମୁଁ କି କହିବି ରାଣୀ ଗୋ ତୋ ଆଗେ
ଯୁଦ୍ଧ କରିବାକୁ ଗଲି ମାନବର ସଙ୍ଗେ
ହାତୀ ଘୋଡ଼ା ରଥରଥୀ ନାହିଁ ତାର କିଛି
ପ୍ରଚଣ୍ଡ ପର୍ବତ ପରେ ଆସି ରହିଅଛି ।

ପ୍ରଥମେ ଥିଲା ତାହାର ବହୁତ ଗୋ ଥାଟ
ପୃଥିବୀକ ଘୋଟି ରହିଥିଲେ ଗୋ ମର୍କଟ ।
ମୋର ଗନ୍ଧାବାତେ ସବୁଯାକ ଗଲେ ଉଡ଼ି
କାହାକୁ ନ ପାଇ ମୁହିଁ ଅଇଲି ବାହୁଡ଼ି ।
ପୁଣି ଥାଟ ସାଜ ହୋଇଥିବାର ପଟ୍ଟରେ
ମୋ ଆଗରେ ଜଣାଇଲେ ଆସି ମୋର ଦୂତେ
ଶାଳକଗଣ ମନ୍ତ୍ରୀକ ଜଗାଇ ଏ ପୁର
ବଡ଼ ବଡ଼ ସେନାପତି ରଖିଣ ଆବର ।
ଦୁଇ ହଜାର ଅସୁର ତାଙ୍କ ସଙ୍ଗେ ଦେଇ
ସାଜିଲି ମୁଁ ଥାଟ ଗୋଟା ଆଗୋ ମହାଦେଈ
ନ ରଖିଲି ଏ ଲଙ୍କା ନଗରେ ପୁରୁଷ
ସମସ୍ତଙ୍କୁ ବୋଇଲି ମୁଁ ସଜ ହୋଇ ଆସ ।
ଅଇଲେ ଅସୁରବଳ ଘୋଟିଲେକ ମହୀ
ତାହାଙ୍କ ପ୍ରତାପ ସୂର୍ଯ୍ୟ ନ ପାରିଲା ସହି ।
ଚଳିଲେ ଥାଟ ଅଠର ଯୋଜନ ଯେ ମାଡ଼ି
ଯେସନେ ସମୁଦ୍ର ମଧ୍ୟେ ଉଠଇ ଲହଡ଼ି ।
ଥାଟ ଦେଖି ଭୟ ପାଇ ସେ ରାମର ଥାଟ
ପଳାଇଲେ ରହିଲେ ଗୋ ପାଞ୍ଚୋଟି ମର୍କଟ ।
ଗୋଟିଏ ରାକ୍ଷସ ପୁଣି ଗୋଟିଏ ଯେ ଋକ୍ଷ
ତିନିଗୋଟି ମାନବ ଯେ ଇନ୍ଦ୍ର ସମକକ୍ଷ ।
ତାହାଙ୍କ ମଧ୍ୟରେ ରାମ ବଡ଼ ଧନୁର୍ଦ୍ଧର
କୋଟି ସୂର୍ଯ୍ୟଠାରୁ ବଳ ତେଜ ଗୋ ତାହାର
ଏକା ବାଣକରେ ମୋର ଥାଟ ଦେଲା ମାରି
ମୁହିଁ ଏକାକେ ତହିଁରୁ ଅଇଲି ଉବୁରି ।
ଆଉ ଏକ ନ ରହିଲେ ଗଲେ ଯମଘର
ସାତତାଳ ଉଚ୍ଚରେ ଗୋ ବହିଲା ରୁଧିର ।
ମୁହିଁ କୋପେ ସଂଗ୍ରାମ ଗୋ କଲଇଁ ବହୁତ
ପାଞ୍ଚଜଣ ମୋ ଆଘାତେ ହୋଇଲେ ମୋହିତ
ଧନୁର୍ଦ୍ଧାରୀ ସୁରବୀର ଗୋଟିଏ ବାନର
ଏମାନେ କଲେ ମୋ ସଙ୍ଗେ ବହୁତ ସମର ।
ସାତଦିନ ସାତରାତି ଯୁଝି ମୋର ସଙ୍ଗେ
ନ ପାରି ସଂଗ୍ରାମ ତେଜି ଗଲେ ପୃଷ୍ଠଭଙ୍ଗେ ।
ଗୋଡ଼ାଇଗଲି ମୁଁ ତାଙ୍କୁ ଯୋଜନେକ ଯାଏ
ଶ୍ରୀରାମ ଭାଇ ମାଇଲା ବାଟୁଳି ଗୋଟାଏ ।
ବଜ୍ରଠାରୁ ଆଣ୍ଠୁ ପୁଣି ବାଟୁଳି ତାହାର
କର୍ଣ୍ଣମୂଳେ ବାଜି ବହି ପଡ଼ିଲା ରୁଧିର ।

ମହାବ୍ୟଥା ପାଇ ରାଣୀ ଅସମ୍ଭାଳ ହୋଇ
ଲଙ୍କାପୁରକୁ ଚେଇଁ ଅଇଲି ପଳାଇ ।
କି କହିବି ଏତେବେଳ ଯାଏ ପୋଡ଼ୁ ଅଛି
ତେଣୁ ମୁଁ ଘଡ଼ିଏ ଯାଏ ନ କହିଲି କିଛି ।
ଶୁଣି ମହାଦେଈ ଧାଇ ବହୁତ ବିକଳ
ବୋଇଲା ହେ ନାଥ କିଛି ମନରେ ନ ଘେନ ।
ଜୟ ପରାଜୟ ଜାଣ ସଂଗ୍ରାମର ରୀତି
କେତେବେଳେ ହାରହୁଏ କେତେବେଳେ ଜିତି
ଏବେ ଆଉ ରାମ ସଙ୍ଗେ ଯୁଦ୍ଧ ନ କରିବା
ଚାଲ ଯାଇଁ ତାର ପାଦେ ଶରଣ ପଶିବା ।
ଶୁଣିଛି ସେ ରାମ ଅଟେ ଜଗତ ଠାକୁର
ଅସୁର ମାରିବା ପାଇଁ ଜନମ ତାହାର ।
ଲଙ୍କାପୁରେ ପଶି ଏକା ମାଇଲା ରାବଣ
ମୋର ପୁତ୍ରଙ୍କୁ ମାଇଲା ସେହି ଏକା ଜାଣ
ଲଙ୍କାକୁ ପୋଡ଼ିଦେଇ ବୁଲାଇଲା ମଇ
ଦେଖିଲଟି ସାକ୍ଷାତରେ ଏବେ ଯୁଦ୍ଧେ ଯାଇଁ
ଏକ ବାଣକେ ଲଙ୍କାପୁର କଲା ଶୂନ୍ୟ
ଏଣୁ କହୁଛି ପଶିବା ତା ପାଦେ ଶରଣ ।
ରାଣୀର ମୁଖୁ ଏମନ୍ତ ଶୁଣି ହସେ ଦୈତ୍ୟ
ଛାର ନର ବାନରଙ୍କୁ ଡରିଲୁ କି ଭୂତ ।
ବଇରୀ ପାଦରେ ଯାଇଁ ପଶିବି ଶରଣ
ଏଥିରୁ ଭଲ ତ ଜାଣ ଯୁଦ୍ଧରେ ମରଣ ।
ପୁତ୍ର ନାତି ମଲେ ମୋର ମୁହିଁ ଅଛି ଏକା
ଅସୁର ଶୂନ୍ୟ ହେଲାଣି ଏ ମୋର ଲଙ୍କା
ଅମ୍ବର ଯେ ଭକ୍ଷ ସେହି ହୋଇଛି ବଇରୀ
ଶରଣ ପଶିବି ରାଣୀ କହୁଛୁ କପରି ।
ରଣ ଯଜ୍ଞ କରି ପଛେ ଲଭିବି ମରଣ
କିଛି ନ କହିଣ ରାଣୀ ହୋଇଲା ମଉନ ।
ମଣୋହି କରି ନିଶ୍ଚିନ୍ତେ ଶୋଇଲା ସେ ରାତି
ପରଦିନ ପ୍ରଭାତରୁ ଉଠି ଦୈତ୍ୟପତି ।
ଆସ୍ଥାନେ ବସିଲା ଯାଇ ପାତ୍ର ମନ୍ତ୍ରୀ ଆସି
ଛାମୁରେ ଦର୍ଶନ କରି ଆସନରେ ବସି ।
ବୋଇଲେ ହେ ଦେବ କୁହ ସମର ବିଧାନ
ଶୁଣିଣ ବୋଇଲା ତାଙ୍କୁ ଲଙ୍କା ରାଜନ ।
ପାତ୍ର ମିତ୍ର ମନ୍ତ୍ରୀଯାକ ବିଚାରିଲେ ବସି
ଲଙ୍କା ନାଶିଲେ ନର ବାନର ତ ଆସି ।

ଶରଣ ପଶିବା ଯେବେ ନ ଘୁଡ଼ିବ କେଭେ
ଅଣାଇ ଅଚିନ୍ତ୍ୟ ତାକୁ କହିକର ଦେବେ ।
ଆସିଅଛି ଅସୁରକୁ ମାରିବା ନିମନ୍ତେ
ବିଚାର କରନ୍ତି ବସି ମନ୍ତ୍ରୀଏ ଏମନ୍ତେ ।
ସେନାପତିମାନେ ଶୁଣି ବୋଇଲେ କିମ୍ପାଇଁ
ଏମନ୍ତ ବିଚାର କର ଲାଜ ମାଡ଼ୁ ନାହିଁ ।
ଘୋର ନର ବାନରଙ୍କୁ ଏତେ କିମ୍ପା ଡର
ଆଜ୍ଞାଦେଲେ ଧରିଆଣି ଦେବୁ ଯେ ଘୁମୁର ।
ଏକେ ଏକେ ପାରୁଁ ଆମ୍ଭେ ତିନିପୁର ଜିଣି
ଇନ୍ଦ୍ର ଚନ୍ଦ୍ର ବରୁଣକୁ ସଂଗ୍ରାମେ ନ ଗଣି ।
ବୀରଙ୍କ ମଉଡ଼ମଣି ଆମ୍ଭର ରାଜନ
ଯାହାର ଆଜ୍ଞାରେ ସୂର୍ଯ୍ୟ କରଇ ଗମନ ।
ତେତିଶକୋଟି ଦେବତା ତାର ଆଜ୍ଞାକାରୀ
ସେ ଶରଣ ଯିବ ନର ବାନରଙ୍କୁ ଡରି ।
ହେ ଦେବ ବିଲଙ୍କାଧିପ ଅସୁରାଧିରାୟ
ବିଳମ୍ବ କିମ୍ପାଇଁ କର ବେଗେ ଆଜ୍ଞାଦିଅ ।
ନର ବାନରଙ୍କ ମୁଣ୍ଡ ହାଣି ଦେବୁ ଆଣି
ଶୁଣି ସାନନ୍ଦ ହୋଇଲା ଦୁଇଲକ୍ଷପାଣି ।

ବୋଲଇ ମୁଁ ଜାଣେ ତୁମ୍ଭେ ମହା ମହା ବୀର
ତୁମ୍ଭେ ଥାଉଁ ଥାଉଁ ମୋର କାହାକୁ ରେ ଡର
ଯାଇଁ କାଲି ଆଣିଦିଅ ଶତ୍ରୁ ମୁଣ୍ଡ ମୋତେ
ଏ ବିଲଙ୍କାପୁର ଭୋଗ କରରେ ନିଶ୍ଚିନ୍ତେ ।
ଏମନ୍ତ ବୋଲି ଆସ୍ଥାନୁ ଆପେ ଉଠିଯାଇ
ଗଳରବ କରି ଶିରେ ଶାଢ଼ୀ ଦେଲା ନେଇ ।
ଜଗତଜନ ଜନନୀ ମାତା ଗୋ କାଳିକା
ଖପର ପାତି ସଂହାର କରୁ ମାଗୋ ଏକା ।
ତୋହର ଦାଉରୁ କେହି ନ ଯିବ ଗୋ ବର୍ତ୍ତି
ଚନ୍ଦ୍ରଧର ତୋ ପୟର ଭଜେ ଦିବାରାତି ।
ନ ଗଲା ମୋହର ଦୁଃଖ କହିବି କାହାଗେ
ଦୁଃଖ ଭୋଗୁଅଛି ମନ୍ଦ କର୍ମଫଳ ଯୋଗେ ।
ତୁ ବେଗେ ଉଦ୍ଧାର ତାକୁ କରିବୁ ନା ମାତ
ଶରଣ ପଶିଛି ତୋର ପାଦେ ଦିବାରାତ୍ର ।
ତୁହି ନ ରଖିଲେ ମୁହିଁ ହୋଇଲି ଅରକ୍ଷ
ଜଗତ ଜନନୀ ମୋତେ ହୁଅ ସାହାପକ୍ଷ ।

—*—

## ଜମ୍ବୁ କୁଜମ୍ବୁ ଆଦି ସେନାପତିଙ୍କର ଯୁଦ୍ଧ ଓ ମୃତ୍ୟୁ

ଏଥୁ ଅନନ୍ତରେ ପୁଣି ବୋଇଲେ ପାର୍ବତୀ
ଶ୍ରୀରାମ କି କରିଲେ କୁହ ପଶୁପତି ।
ଶଙ୍କର କହନ୍ତି ଶୁଣ ଶଇଳ ଦୁଲାଳୀ
ପ୍ରତାପୀ ଦଇତ ଖାଇ ଭରତ ବାଟୁଳ ।
ପଳାଇଲା ପଛକୁ ସେ ନ ରହିଲା ଆଉ
ସାନନ୍ଦ ହୋଇଲେ ତାହା ଦେଖି ମହାବାହୁ ।
ଭରତକୁ ସ୍ନେହଭରେ କଲେ ଆଲିଙ୍ଗନ
ବିଭୀଷଣ ବୋଲେ ଶୁଣ କମଳଲୋଚନ ।

ଦେଖିବା ସୁଗ୍ରୀବ ଆଦି କପି କେଣେ ଗଲେ
ଅସୁର ବିଷମ ଘାତେ ମୋହେ ପଡ଼ିଥିଲେ ।
ଶୁଣିଣ ଶ୍ରୀରାମ ତହୁଁ ଗଲେ ତରତରେ
ଭରତ ଶତ୍ରୁଘ୍ନ ହନୁ ଘେନି ସଙ୍ଗତରେ ।
ରଣଭୂଇଁରେ ଦେଖିଲେ ପଡ଼ିଛନ୍ତି ମୋହେ
ପଞ୍ଚଗୋଟି ବୀର ଯୋଗୁଁ ମହୀଦେବୀ ଶୋହେ
ଦେଖିଣ ଶ୍ରୀରାମ ପ୍ରଭୁ ଆକାଶକୁ ଚାହିଁ
ବୋଇଲେ ଅମୃତ ବୃଷ୍ଟି କର ସୁରସାଇଁ ।

ତକ୍ଷଣେ ଅମୃତ ଆଣି ସିଞ୍ଚିଲା ବାସବ
ଉଠିଲେ ଅଙ୍ଗଦ ନଳ ନୀଳ ଯେ ଜାମ୍ବବ ।
ସୁଗ୍ରୀବ ରାଜନ ଉଠି ବସିଲାକ ତହିଁ
ଯୁଦ୍ଧର କଥା ଶ୍ରୀରାମଚନ୍ଦ୍ର ତାଙ୍କୁ କହି ।
କି ବୁଦ୍ଧି କରିବା ଦୈତ୍ୟ ମରିବ କେମନ୍ତେ
ଏହା ତୁଲ୍ୟ ବୀର ନାହିଁ ଏ ତିନି ଜଗତେ ।
ଭାଗ୍ୟେ ସିନା ଭରତର ବାଟୁଲିକ ଖାଇ
ପଳାଇଲୁ ଆମ୍ଭ ପାଞ୍ଚଜଣେ ଗୁଡ଼ ଦେଇ ।
ନୋହିଲେ ତାହାର ମୁଖୁ ଆମ୍ଭେ କି ଉବୁରି
ଯାଇଥାନ୍ତୁ ଅଯୋଧ୍ୟାକୁ ଏହି ଦେହ ଧରି ।
ବଦନ ବିସ୍ତାରି ଧାଏଁ ଯେ କାଳେ ଦଇତ
ଗିରିଗୁହା ପ୍ରାୟେ ଦିଶେ ବଡ଼ ବଡ଼ ଦାନ୍ତ ।
ସେକାଳେ ବିକଟ ମୁଖ ବିକରାଳ ମୂର୍ତ୍ତି
ଦେଖିଲେ ଯମ ଦେବତା ପାଇବେ ଯେ ଭୀତି
ମାନବ କି ତାହା ଦେଖି ରଖିବ ଜୀବନ
କି କରିବା କହ ମିତ ବାନର ରାଜନ ।
ଆହେ ବିଭୀଷଣ ତୁ ଯେ ଲଙ୍କାର ଈଶ୍ୱର
ଜାମ୍ବବାନ ଅଟନ୍ତି ତ ବୁଦ୍ଧିର ସାଗର ।
ବିଚାରି କହ କେମନ୍ତେ ମରିବ ଦଇତ
ହନୁମାନ ବୋଲେ ପ୍ରଭୁ ନ ହୁଅ ଆରତ ।
ଅବଶ୍ୟ ମାରିବା ତାକୁ ବଳେ ଅବା କଳେ
ଏକାଳେ ବିଲଙ୍କାପୁର ବାଦ୍ୟରେ ଉଚ୍ଛୁଳେ ।
ବୀରତୁର ବାଦ୍ୟନାଦ ଶୁଣି ବୋଲେ ହନୁ
ଆସିବ ଅସୁର ପ୍ରଭୁ ବେଗେ ଧର ଧନୁ ।
ଏମନ୍ତ କହୁ ଅସୁରେ ହୋଇଲେ ବାହାର
ସହସ୍ରଶିରା ଦୈତ୍ୟ ହୋଇଅଛି ଆଗଭର ।
ଲକ୍ଷଶିରାର ଅଟଇ ସେହି ଅଣନାତି
ଶତଶିରାର ନନ୍ଦନ ଦୁରନ୍ତ ସେ ଅତି ।
ତାର ପଛେ ଛନ୍ତି ଜମ୍ଭ କୁଜମ୍ଭ ଏ ଦୁଇ
ତାରପଛେ ଜଳୋଦ୍ଭବ ଦାନବ ଅଛଇ ।
ତା ପଛରେ କେତୁମାଳ ହେନ୍ତାଳ ବେତାଳ
ତାଳକେତୁ ଫାଳକେତୁ ଅସୁର ସେଫାଳ ।
ଜୀମୁତକେତୁ ଆବର ଦୈତ୍ୟ ଧୂମ୍ରକେତୁ
ମହାକାୟୁ ଗିରିକାୟୁ ମହା କାଳକେତୁ ।
ଯୁଗାନ୍ତକ ଖଗାନ୍ତକ ନାଗାନ୍ତକ ତିନି
ରଶ୍ମିକେତୁ ଭସ୍ମକେତୁ ସୁଜପାକୁ ଘେନି ।
ଜପା ଅଜପା କୁଜପା ସୁନଖା କୁନଖା
ଧୂମ୍ରକେତୁ ବ୍ୟୋମକେତୁ ସୁମୁଖା ଦୁର୍ମୁଖା ।
ଏମନ୍ତେ ଏ ମହାବୀରେ ବୀରେ ଚଢ଼ି ଗଜ
କେହି ରଥେ ବସି ହୁଏ ଯୁଝିବାକୁ ସଜ ।
କେହି କେହି ଅଶ୍ୱପୃଷ୍ଠେ ଆୟୁଧ ହସ୍ତରେ
ଗର୍ଜ୍ଜନ ତର୍ଜ୍ଜନ କରି ଧାଆନ୍ତି ସମରେ ।
ଦୁଇ ସହସ୍ର ପାଇକ ପଦାତି ସଇନ
ତାଙ୍କ ପଛେ ଅସ୍ତ୍ରଧରି କରନ୍ତି ଗମନ ।
ଢୋଲ ଦମା ଦମକ ଯେ ବାଜଇ ମହୁରୀ
ଦେଖିଲେ ପର୍ବତେ ଥାଇ ପ୍ରଭୁ ଚାପଧାରୀ ।
ହନୁକୁ ବୋଇଲେ ବାବୁ ଅଇଲେ ଅସୁରେ
ପର୍ବତ ଉପରୁ ଚାଲ ଯାଇଁ ଖଣ୍ଡେ ଦୂରେ ।
ସଂଗ୍ରାମ କରିବା ଗୁଡ଼ ନ ଦେବା ତାହାଙ୍କୁ
ଏହା କହି ଆଗଭର ହେଲେ ଯୁଝିବାକୁ ।
ବିଭୀଷଣ ଶତ୍ରୁଘ୍ନ ଭରତ ଏ ତିନି
ସୁଗ୍ରୀବ ଅଙ୍ଗଦ ନଳ ନୀଳ ଯେ ପାବନି ।
ଋକ୍ଷକପି ଜାମ୍ବବାନ ଆଦି ନବବୀରେ
ଯାଉଛନ୍ତି ସଜ ହୋଇ ରାମଙ୍କ ପଛରେ ।
ବାଟେ ଭେଟ ହୋଇ ଯୁଦ୍ଧକଲେ ଘୋରତର
ସହସ୍ରଶିରା ସଙ୍ଗେ ଯୁଦ୍ଧକଲେ ରଘୁବୀର ।
କୁଜମ୍ଭ ଦାନବ ସଙ୍ଗେ ଯୁଝେ ଶତ୍ରୁଘ୍ନ
ଜମ୍ଭ ସଙ୍ଗେ ଯୁଦ୍ଧକଲେ କୈକେୟୀ ନନ୍ଦନ ।
ବିଭୀଷଣ ସଙ୍ଗତରେ ଯୁଗାନ୍ତକ ଯୁଝ
ନାଗାନ୍ତକ ସଙ୍ଗେ ଭେଟ ପଡ଼ିଲେ ଅଙ୍ଗଦ ।
ରଶ୍ମିକେତୁ ସୁଗ୍ରୀବର ଯୁଦ୍ଧ ଘୋରତର
କାଳକେତୁ ସଙ୍ଗେ ନଳ କଲାକ ସମର ।
ଧୂମ୍ରକେତୁ ଦାନବର ନୀଳସଙ୍ଗେ ଭେଟ
ଗିରିକାୟୁ ସଙ୍ଗେ ଯୁଝେ ପବନର ଝିଟ ।
ମହାକାୟୁ ଜାମ୍ବବର ଲାଗିଲା ସଂଗ୍ରାମ
ସହସ୍ରଶିରା ସଙ୍ଗେ ଯୁଦ୍ଧ କରନ୍ତି ଶ୍ରୀରାମ ।
ସହସ୍ରହସ୍ତେ ସହସ୍ରଧନୁ ଧରି କଉଣପ
ରାମଙ୍କ ଉପରେ ବାଣ ବରଷେ ଅମାପ ।
ଅସୁର ବାଣକୁ ରାମ କାଟନ୍ତି ନାରାଚେ
ରଥରେ ଥାଇ ଅସୁର ମନେ ମନେ ପାଞ୍ଚେ ।
ପିତୃ ବଇରୀ ମୋହର ଅଟଇ ଏ ରାମ
ଜାଣଇ ଏ ବୀର ଗୋଟା ବିଷମ ସଂଗ୍ରାମ ।

ଏହାଙ୍କୁ ଆଜ ମୁଁ ରଣେ ପାରେ ଯେବେ ଜିଣି
ତେବେ ବୋଲାଇବି ସିନା ବୀରଙ୍କ ଅଗ୍ରଣୀ ।
ଏମନ୍ତ ବିଚାରି ଦୈତ୍ୟ ବିନ୍ଧୁ ଅଛି ଶର
ତ୍ରିଶିରେ କାଟନ୍ତି ତା ପ୍ରଭୁ ରଘୁବୀର ।
ନାରାଚ ବିଅର୍ଥ ହେବା ଦେଖି କଉଣପ
ବ୍ରହ୍ମଶର ପ୍ରହାରିଲା କରି ମହାକୋପ ।
ଦେଖି ରଘୁନାଥ ବ୍ରହ୍ମଶିରା ଶର ମାରି
ଗଗନ ମାର୍ଗରେ ବ୍ରହ୍ମଶରକୁ ନିବାରି ।
ତହୁଁ କୋପେ ନାଗପାଶ ବିନ୍ଧିଲା ଅସୁର
ଗରୁଡ଼ାସ୍ତ୍ରେ ନିବାରିଲେ ରାମ ଧନୁର୍ଦ୍ଧର ।
ପର୍ବତାସ୍ତ୍ର ପ୍ରହାରିଲା ବଂଶଶିରା କୋପେ
ଦେଖି ବଜ୍ରଶର ରାମ ବସାଇଲେ ଚାପେ ।
ଲକ୍ଷ ଲକ୍ଷ ଗିରି ଘୋଟି ଆସୁଥିଲେ ଶୂନ୍ୟେ
ବଜ୍ରଶର ଯାଇଁ ଚୂନାକଲା ସେ ଗଗନେ ।
ମେଘାଶର ପ୍ରହାରିଲା କୋପେ ସେ ଦନୁଜ
ପବନାସ୍ତ୍ରେ ଉଡ଼ାଇଲେ ତାକୁ ରାମରାଜ ।
ଏମନ୍ତେ ସେ ଯେତେମାରେ ନିବାରନ୍ତି ସବୁ
ଦାନବର ଧନୁ ଯାକ କାଟିଲେକ ପ୍ରଭୁ ।
ଦଶବାଣେ ସାରଥିର ପ୍ରାଣ ନେଲେ ହରି
ଚାରିବାଣେ ଛେଦିଲେକ ରଥ ଅଶ୍ୱ ଚାରି ।
ବିରଥ ନିରସ୍ତ୍ର ହୋଇ ପ୍ରଚଣ୍ଡ ଦାନବ
ଶକତିଏ ପ୍ରହାରିଲା ତା ଦେଖି ରାଘବ ।
ବାବଲ ଶରେ ତା କାଟି କଲେ ଖଣ୍ଡ ଖଣ୍ଡ
ଦେଖି ଦୈତ୍ୟ ଧାଇଁଲାକ ଧରି ରଥ ଦଣ୍ଡ ।
ଇନ୍ଦ୍ର ଅସ୍ତ୍ରେ କାଟିଲେ ତା ଅସୁର ହସ୍ତରୁ
ମୁଷ୍ଟି ଉଞ୍ଚାଇ ଧାଇଁଲା ଦେଖି ରାମ ଦୂରୁ ।
ବଇଷ୍ଣବୀ ଚକ୍ରେ କାଟି ପକାଇଲେ ଶିର
ଗରଜନ କରି ତଳେ ପଡ଼ିଲା ଅସୁର ।
କୁଜମ୍ଭ ଦାନବ ମଲା ଶତ୍ରୁଘ୍ନ ହସ୍ତେ
ଜମ୍ଭ ଦାନବ ଯୁଝଇ ଭରତ ସଙ୍ଗତେ ।
ନାରାୟଣ ଶର ମାରି କୈକେୟୀ ନନ୍ଦନ
ଜମ୍ଭ ଦାନବର ଶିର କଲେକ ଛେଦନ ।
ବିଭୀଷଣ ହସ୍ତେ ଦେଲା ଯୁଗାନ୍ତକ ପ୍ରାଣ
ଅଙ୍ଗଦ ସଙ୍ଗତେ କରେ ନାଗାନ୍ତକ ରଣ ।
ଦୁହେଁ ମହାକ୍ଷତ୍ରୀ ପାଦେ ନ ଘୁଞ୍ଚନ୍ତି କେହି
ଅଙ୍ଗଦ ଧରିଲା କୋପେ ଦୈତ୍ୟ ପାଦ ଦୁଇ ।
ଦୁଇଫାଳ କରି ତାକୁ ପକାଇଲା ଚିରି ।
ରଶ୍ମିକେତୁକୁ ସୁଗ୍ରୀବ ଦୁଇ ହସ୍ତେ ଧରି ।
ଭୂମିରେ ପକାଇ ତାର ବିଦାରିଲା ଛାତି
ମଲା ସେ ଦାନବ ଗୋଟା କରି ରକ୍ତବାନ୍ତି ।
କାଳକେତୁ ସଙ୍ଗତରେ ଯୁଝୁଥିଲା ନଳ
କୋପେ ଯାଇଁ ଧଇଲାକ ଦନୁଜର ବାଳ ।
ଖଡ଼ଗ ଗୋଟାଏ ମାରି ଛେଦିଲା ତା ଶିର
ଧୂମ୍ରକେତୁ ସଙ୍ଗେ ନୀଳ ଯୁଦ୍ଧ ଗୁରୁତର ।
ମାଲଯୁଦ୍ଧ କରନ୍ତି ସେ ଗଡ଼ା ଗଡ଼ି ହୋଇ
ଅସୁର ଛାତିରେ ନୀଳ ବସିଲାକ ଯାଇଁ ।
ବିଧାଏ ମାଇଲା କୋପେ ଗର୍ଜିଲା ଦଇତ
ଦଶଦ୍ୱାରେ ଦେଇ ତାର ବହିଲା ଶୋଣିତ ।
ମଲା ସେ ଦନୁଜ ଗୋଟା ବିଧାର ଆଘାତେ
ଗିରିକାୟ ଯୁଦ୍ଧ କରେ ହନୁର ସଙ୍ଗତେ ।
ମହାବଳବନ୍ତ ଅଟେ ସେ ଦାନବ ଗୋଟା
ଗିରି ପ୍ରାୟ ଅଟଇ ତା ଦେହ ଅତି ମୋଟା ।
ତାହାର ଚରଣ ଦୁଇ ଧରି ହନୁମାନ
ବୁଲାଇ ପିଟନ୍ତେ ମଲେ ରାକ୍ଷସ ସଇନ ।
ଥୋକାଏ ମଲେ ଥୋକାଏ ଗଲେକ ପଳାଇ
ନୀଳସୁନ୍ଦର ପର୍ବତେ ପିଟିଲାକ ନେଇ ।
ପର୍ବତ ଫାଟିଲା ଦୈତ୍ୟ କପାଳ ଫାଟିଲା
ଘୋର ଗରଜନ କରି ପରାଣ ଛାଡ଼ିଲା ।
ମହାକାୟ ଜାମ୍ବବର ହେଲା ଘୋର ରଣ
ଦନୁଜ ଯେ ଧନୁ ଧରି ବିନ୍ଧୁ ଅଛି ବାଣ ।
କୁଦିଯାଇ ଜାମ୍ବବାନ ବସିଲା ତା ରଥେ
ଧନୁକୁ ଛଡ଼ାଇ ଭାଙ୍ଗିଦେଲା ତାର ହସ୍ତେ ।
ଚପୋଡ଼େ ମାଇଲା ତାର ଛିଡ଼ିଗଲା ମୁଣ୍ଡ
ଆଉ ଦାନବେ ତା ଦେଖି ହେଲେ ଲଣ୍ଡଭଣ୍ଡ ।
ଭରତ ଶତ୍ରୁଘ୍ନ ବାଣେ ଗଲେ ଯମପୁର
ଆସିଥିଲେ ସଂଗ୍ରାମକୁ ଯେତେକ ଅସୁର ।
ସମସ୍ତେ ମଲେ ଗୋଟିଏ ନ ଗଲେ ବାହୁଡ଼ି
ଦୂତ ରାଜାର ଛାମୁରେ କହେ କରଯୋଡ଼ି ।
ହେ ବୀର ମଉଡ଼ମଣି ଅସୁରାଧୀରାୟ
ତୋର ସେନାପତିଯାକ ରଣେ ଗଲେ କ୍ଷୟ ।
ସମସ୍ତେ ମଲେ ଉତ୍ତର ନ ଆସିଲେ କେହି
ବଂଶଶିରା ମଲା ତୋର କି କହିବି ମୁହିଁ ।

ଶୁଣି ଲକ୍ଷଣିରା ଢଳି ପଡ଼ିଲା ଭୂମିରେ
କଳପା ସିଞ୍ଚିଲା ନୀର ଆଣି ତା ମୁଖରେ ।
ଘଡ଼ିକେ ଚେତନା ପାଇ ବୋଲଇରେ ବାବୁ
ତୁମ୍ଭ ଏକା ଥିଲୁ ପୁତ୍ର ନାତି ମଲେ ସବୁ ।
ଶୋକ ସମୁଦ୍ରରେ କୂଳ ବୁଡ଼ିଲା ମୋହର
ନରହସ୍ତେ ପ୍ରାଣ ଦେଲୁ ହୋଇ ଏଡ଼େ ବୀର
ବହୁତ ପ୍ରତିଜ୍ଞା କରି ଯାଇଥିଲୁ ବାବୁ
ବୁଦ୍ଧିବଳ ପରାକ୍ରମ ହରାଇଲୁ ସବୁ ।
ତୁମ୍ଭ ସିନା ବାବୁ ମୋର ପିଣ୍ଡର କାରଣ
ତୋତେ ହରାଇ ରହିଛି ଏ ନର୍ଲଜ ପ୍ରାଣ ।
ଏମନ୍ତେ ବହୁତ ଶୋକ କଲା ଦୈତ୍ୟପତି
ପାତାଳକେତୁ ନାମରେ ଅସୁର ଦୁର୍ମତି ।
ବୋଇଲା କମ୍ପାଇ ଶୋକ କର ଅକାରଣେ
ସମ୍ମୁଖ ସଂଗ୍ରାମେ ପ୍ରାଣ ଦେଲେ ବୀରଗଣେ ।
ଏଥିପାଇଁ କମ୍ପା ଶୋକ କରିବା ରାଜନ
କାଲି ମୁହିଁ ସଂଗ୍ରାମକୁ କରିବି ଗମନ ।
ନର ବାନରଙ୍କୁ ମାରି ରଖିବଇଁ କଥା
ମୋ ବଂଶ ନାଶିଲା ତାର କାଟିବଇଁ ମଥା ।
ମୋର ଶତ ପୁତ୍ର ଥିଲେ ମହା ମହା ବୀର
ତାହାଙ୍କୁ ମାଇଲା ସେହି ଶୂର ହୋଇ ନର ।
ପୁତ୍ର ଶୋକ ନିବାରିବି ତା ରୁଧିର ପିଇ
ଏମନ୍ତ ଶୁଣି କଳପା ଅସୁର ବୋଲଇ ।
ମୁହିଁ ଯିବି ତୋର ସଙ୍ଗେ କରିବି ସମର
ଶୁଣି ସାନନ୍ଦ ହୋଇଲା ବଳଙ୍କା ଈଶ୍ୱର ।
ଦୁହିଁଙ୍କର ଶିରେ ନେଇ ବାନ୍ଧିଦେଲା ପାଟ
ଦୁହେଁ ତ ମନ୍ତ୍ରୀ ଜାଣନ୍ତି ବହୁତ କପଟ ।
କୁଟ ମାୟାରେ ନିପୁଣ ଅଟନ୍ତି ସେ ଦୁଇ
ମାୟା ବିସ୍ତାରିଲେ ସେହି ପୁର ମଧ୍ୟେ ଥାଇ
ମାୟାରଥ ଚଢ଼ି ଦୁହେଁ କରନ୍ତି ଗମନ ।
ମାୟାରେ ସେ ଭିଆଇଲେ ବହୁତ ସଇନ
ବିଚାର କରନ୍ତି ଦୁହେଁ ଚାଲ ଆମ୍ଭେ ଯିବା
ରାମର ସଙ୍ଗତରେ ଯେ ସମର କରିବା ।
ବୋଲଇ ପାତାଳକେତୁ କଳପାକୁ ଚାହିଁ
ମାୟାସୈନ୍ୟ ଘେନି ଯୁଦ୍ଧ କରୁଥିବୁ ତୁହି ।
ମୁଁ କପଟେ ଘେନିଯିବି ରାମକୁ ପାତାଳେ
ଅନ୍ଧକୂପେ ପକାଇଣ ଆସିବି ଭୂତଳେ ।
ତୁମ୍ଭ ଅଙ୍ଗଲୁଚି ଦେଇ କରୁଥିବୁ ରଣ
ମାୟାଥାଟ ଗୋଟାକୁ ତୁ ଆଗେ ଚଳାଇଣ ।
ଏମନ୍ତ ବିଚାରି ଦୁହେଁ ହୋଇଲେ ବାହାର
ଗଜ ଅଶ୍ୱ ରଥ ରଥୀ ଅପାରୁ ଅପାର ।
ଜୟ ଜୟ ରାମଚନ୍ଦ୍ର ଜୟ ଚାପଧାରୀ
ଏ ଭବଜଳରୁ ମୋତେ କର ବେଗେ ପାରି
ବୀର ମହାବୀର କେତେ କେ ପାରିବ ଗଣି
ରାମ ପାଦେ ମନ ରଖି ଚନ୍ଦ୍ରଧର ଭଣି ।

—*—

## ପାତାଳକେତୁ ଓ କଳପାସୁର ମାୟାଯୁଦ୍ଧ, ରାମ ଭରତ, ଶତ୍ରୁଘ୍ନ ଓ ସୁଗ୍ରୀବର କୂପେ ପଡ଼ିବା ଏବଂ ବିଭୀଷଣ ପ୍ରଭୃତିଙ୍କ ମୋହ

ଏଥୁଅନ୍ତେ ଯାହାହେଲା ଶୁଣ ଶାକମ୍ଭରୀ
ପ୍ରଚଣ୍ଡ ପର୍ବତେ ଥିଲେ ପ୍ରଭୁ ଚାପଧାରୀ ।
ଚାହିଁଲେ ଦାନବ ଥାଟେ ନ ଦିଶଇ ଦିଗ
ପାତାଳକେତୁର ରଥ ହୋଇଅଛି ଆଗ ।
ମାୟାରଥ ଗୋଟି ଦିଶେ ଅତ୍ୟନ୍ତ ସୁନ୍ଦର
ପଛରେ ଦିଶନ୍ତି ଥାଟ ଅପାରୁ ଅପାର ।
ଦେଖିଣ ହନୁକୁ ଚାହିଁ ବୋଇଲେ ତୁ ଚାହାଁ
ବହୁତ ଅସୁର ଥାଟେ ନାହିଁ ପୁଣି ରାହା ।

ଆଗ ହୋଇଅଛୁ ଦେଖ ଏକ ମହାବୀର
ନ ଦିଶଇ ଆଖିରେ ତ ଅସୁର ଈଶ୍ୱର ।
ଗର୍ଜ୍ଜିଁଦେଲା ହନୁମାନ ଦାନବ ଆଖିକୁ
ବେଗହୋଇ ଯିବା ଚାଲ ବୋଇଲା ରାମଙ୍କୁ ।
ସମସ୍ତେ ମରିବେ କେହି ନ ଯିବେ ଉବୁରି
ତୋହର ଯେତେକି ଦୟା ଥିବ ରୂପଧାରୀ ।
ଘଣ୍ଟକରେ ମାରି ସବୁ କରିଦେବ ପଦା
ଏମନ୍ତ କହିଣ ହନୁ ମାଇଲାକ କୁଦା ।
କରେ ଏକ ଶାଳବୃକ୍ଷ ଧରି ଧାଏଁ ହନୁ
ଧାଇଁଲା ପର୍ବତ ଧରି ବାଳିରାଜା ସୂନୁ ।
ନଳ ନୀଳ ଦୁହେଁ ଦୁଇବୃକ୍ଷ ଧରି ହାତେ
ଡେଇଁ ଡେଇଁ ଗଲେ ହନୁମାନର ପାଶ୍ୱାତେ ।
ଜାମ୍ବବାନ ବୁଢ଼ା କରେ ଧରିଅଛୁ ଗିରି
ଦିଶଇ ପ୍ରଳୟକାଳେ ଭଇରବ ପରି ।
ମନ୍ଥିଲେ ଅସୁର ସୈନ୍ୟ ନ କରି ବିସ୍ମର
ଯେସନେ ସାଗର ପୂର୍ବେ ମନ୍ଥିଲା ମନ୍ଦର ।
ପବନ ଯେସନେ ଭାଙ୍ଗେ କଦଳୀ ବନକୁ
ତେସନେ ମାଇଲେ ଯାଇ କୋପେ ଅସୁରଙ୍କୁ ।
ବିଭୀଷଣ ଶତ୍ରୁଘ୍ନ ଭରତ ଏ ତିନ
ଅନୁକ୍ଷଣେ ବିନ୍ଧୁଛନ୍ତି କରେ ଧନୁ ଘେନ ।
ପାତାଳକେତୁ ଶ୍ରୀରାମ ସଙ୍ଗେ କଲା ରଣ
ଧନୁଧରି ଅନୁକ୍ଷଣେ ବିନ୍ଧୁ ଅଛୁ ବାଣ ।
ଶ୍ରୀରାମ କଭୁରିବାଣେ କାଟିଲେ ତା ଧନୁ
ହାବଡ଼ାବାଣରେ ପୁଣି ଦଶରଥ ସୂନୁ ।
ମାୟାରଥ ଘୋଡା ତାର କରିଦେଲେ ଚୂନା
ଧଇଲା ଦଇତ କୋପେ ବାଣ ସ୍ୱଚମୁନା ।
ଆନ ଧନୁ ଧରି ବନ୍ଧେ ଉଭା ହୋଇ ତଳେ
ସେ ଧନୁଗୋଟାକୁ ରାମ କାଟିଦେଲେ ହେଳେ
ଧଇଲା ଶୂକର ରୂପ ମାୟାବୀ ଦନୁଜ
ବାବଲ ବାଣ ଧଇଲେ ପ୍ରଭୁ ରଘୁରାଜ ।
ପଳାଇଲା ସେ ଦନୁଜ ରାମ ଆଗେ ଆଗେ
ଶ୍ରୀରାମ ଗୋଡ଼ାଇଗଲେ ତାକୁ ଅତିବେଗେ ।
ପଳାଏ ଶୂକର ପଛେ ଗୋଡ଼ାନ୍ତି ଶ୍ରୀରାମ
ଧାଇଁଛନ୍ତି ପ୍ରଭୁ ବେଗେ ହୋଇ ଚମ ଚମ ।
ଖଣ୍ଡେ ଦୂର ଯାଇ ଦୈତ୍ୟ କରେ ଧନୁଧରି
ଉଭା ହେଲା ସେ ଶୂକର ରୂପ ଛାଡ଼ିକରି ।
ଗୁଣ୍ଡବାଣ ପ୍ରହାରିଲା ରାମଙ୍କ ଉପରେ
ଶ୍ରୀରାମ କାଟିଲେ ତାହା ଆଦ୍ରାବଳ ଶରେ ।
ତା ଦେଖି ବଂଶତି ବାଣ ମାଇଲା ଅସୁର
ପାଞ୍ଚବାଣେ ଛେଦିଲେ ତା ପ୍ରଭୁ ରଘୁବୀର
ଦଶବାଣେ ଧନୁ କାଟି କଲେ ଛିନ୍ନ ଭିନ୍ନ
ଶୂକର ରୂପରେ ଦୈତ୍ୟ ଛାଡ଼ିଲା ଗର୍ଜନ ।
ଶ୍ରୀରାମ ବୋଇଲେ କୋପେ ଯିବୁ ଆଜ କାହିଁ
ତିନ ଭୁବନରେ ତୋତେ ରଖିବାକୁ ନାହିଁ ।
ଶୂକରରୂପେ ଦାନବ ଗଲା ଖଣ୍ଡେ ଦୂର
ଗୋଡ଼ାନ୍ତି ଅସୁର ପଛେ ପଛେ ରଘୁବୀର ।
ସେ ରୂପକୁ ଛାଡ଼ି ପୁଣି ଦୈତ୍ୟ ରୂପ ଧରି
ଗଦା ଏକ ବୁଲାଇଲା ଚକ୍ରପ୍ରାୟ କରି ।
ଦାନବ ଗଦାକୁ ରାମ କାଟିଦେଲେ ବାଣେ
ଧଇଲା ଶୂକର ରୂପ ଦୈତ୍ୟ ତତକ୍ଷଣେ ।
ପଳାଇଲା ଶ୍ରୀରାମଙ୍କ ଆଗେ ଆଗେ ପୁଣି
ଗୋଡ଼ାଇଲେ ତାହାକୁ ଯେ ପ୍ରଭୁ ରଘୁମଣି ।
ବହୁତ ବନ ପର୍ବତ ବୁଲାଇଲା ଦୈତ୍ୟ
ଭ୍ରମନ୍ତି ମାୟାରେ ପଡ଼ି ପ୍ରଭୁ ରଘୁନାଥ ।
କ୍ଷଣକେ ଶୂକର ହୁଏ କ୍ଷଣକେ ଅସୁର
ଧନୁ ଧରି ରାମ ସଙ୍ଗେ କରଇ ସମର ।
ଏମନ୍ତେ ରାମଙ୍କୁ ନେଲା ବହୁ ଦୂରଯାଏ
ଜାଣି ନ ପାରନ୍ତି ଦୈତ୍ୟ ମାୟା ରାମରାୟେ ।
ପଶିଲା ଶୂକର ରୂପେ ପାତାଳ ବିବରେ
ଗର୍ତ୍ତ ମଧ୍ୟେ ପଶିଗଲେ ରାମ କୋପଭରେ ।
ଘୋର ଅନ୍ଧକାର ତହିଁ ନ ଦିଶଇ ପଥ
ଆଗରେ ଦଇତଯାଏ ପଛେ ରଘୁନାଥ ।
ଗର୍ଜନ ତର୍ଜନ କରି ଯାଉଛି ଅସୁର
ଶବଦ ବାରି ଧାମନ୍ତି ରାମ ଧନୁର୍ଦ୍ଧର ।
ଏମନ୍ତେ ପ୍ରଭୁଙ୍କୁ ନେଇ ଦୈତ୍ୟ ମାୟାରୂପେ
ପକାଇଦେଲା ପାତାଳପୁରେ ଅନ୍ଧକୂପେ ।
ମହାଭୟଙ୍କର କୂପ ଯୋଜନେ ଗମ୍ଭୀର
ସୂର୍ଯ୍ୟଙ୍କର ବାସ ନାହିଁ ମହା ଅନ୍ଧକାର ।
ଜଳ ପବନହିଁ ନାହିଁ ସେ କୂପ ଭିତରେ
ପଡ଼ିଲେକ ପ୍ରଭୁ ତହିଁ ଅସୁର ମାୟାରେ ।
ସେ କୂପ ଭିତରେ ଅଛି ଏକ ମହା ନାଗ
ମିଳିଲା ସେ ସର୍ପ ଆସି ଶ୍ରୀରାମଙ୍କ ଆଗ ।

ଦେଖିଣ ସେ ଦୁର୍ବାଦଳ ଶ୍ୟାମଳ ମୂରତି
କମଳନୟନ ଦୀର୍ଘବାହୁ ଦୀର୍ଘ ଗ୍ରୀବ ।
ମନେ ବିଚାରିଲା ଏତ ପରମ ପୁରୁଷ
ଏ କୂପ ମଧ୍ୟେ କେମନ୍ତେ କଲେ ଆସି ବାସ ।
ଯୋଗବଳେ ଜାଣିଲା ସେ ମହାଯୋଗୀ ନାଗ
ଭାଳିଲା ମୋହର ଆସି ଉଦେ ହେଲା ଭାଗ୍ୟ ।
ରାମ ରୂପୀ ବିଷ୍ଣୁଙ୍କୁ ମୁଁ କଲି ଦରଶନ
ପାପତୁଳା ରାଶିକି ଯେ ପ୍ରଭୁ ହୁତାଶନ ।
ପାମର ରାକ୍ଷସ ଆଣି ପକାଇଲା ଏଥେ
ଏହାଙ୍କୁ ଏଠାରେ ମୁହିଁ ରଖିବି କେମନ୍ତେ ।
ଏମନ୍ତ ବିଚାରି ସେହି ନାଗରାଜ ନେଇ
ସେ କୂପ ମଧ୍ୟରେ ତାଙ୍କୁ ଯତନେ ରଖଇ ।
ରାକ୍ଷସ ମାୟାରେ ଜ୍ଞାନ ଯାଇଅଛି ହଜି
କାହିଁ ସେ ଅଛନ୍ତି କିଛି ନ ପାରନ୍ତି ବୁଝି ।
ପ୍ରଭୁଙ୍କୁ ଅନ୍ଧକୂପରେ ପକାଇ ଅସୁର
ପାତାଳପୁରୁ ସେ ପୁଣି ହୋଇଲା ବାହାର ।
ମାୟାବୀ କଳପାସୁର କରିଅଛି ମାୟା
ଲୁଚାଇ ରଖିଛି ତହିଁ ଆପଣାର କାୟା ।
ଭରତ ଶତ୍ରୁଘ୍ନ ବାଣେ ମୁଣ୍ଡ ପଡ଼େ ଛିଡ଼ି
କପିବୀରେ କାହାକୁ ବା ମାରନ୍ତି କଚାଡ଼ି ।
ବିଭୀଷଣ ବାଣେ ଛିଡ଼ି ପଡ଼ନ୍ତି ବା କେତେ
ବହୁତ ମରି ପଡ଼ନ୍ତି ହନୁମାନ ହାତେ ।
ଲକ୍ଷ ଲକ୍ଷ କୋଟି କୋଟି ମରନ୍ତି ଅସୁର
ଶୁଣନ୍ତି ପାର୍ବତୀ ଦେବୀ କହନ୍ତି ଶଙ୍କର ।
ଅପୂର୍ବ ଉତ୍ତରକାଣ୍ଡ ବିଲଙ୍କାର ବାଣୀ
ମନଦେଇ ଶୁଣ ହିମବନ୍ତର ଦୁଲଣୀ ।
ସୁଗ୍ରୀବ ଅଙ୍ଗଦ ନଳ ନୀଳ ଜାମ୍ବବାନ
ତରୁଶିଳା ଧରି କୋପେ କରିଣ ଗର୍ଜ୍ଜନ ।
ମାରନ୍ତି ଅସୁରବଳ କୋଟି କୋଟି ରଣେ
ମଡ଼ାର ଉପରେ ମଡ଼ା ପଡ଼େ ଅନୁକ୍ଷଣେ ।
ଯେତେ ମରୁଛନ୍ତି ତେତେ ଆସୁଛନ୍ତି ମାଡ଼ି
ପବନର ଘାତେ ଯେହ୍ନେ ଉଠଇ ଲହରି ।
ଅସୁର ମାୟାରେ ହୋଇଛନ୍ତି ହତଜ୍ଞାନ
ଜାଣି ନ ପାରନ୍ତି କେହି ଏ ମାୟା ସଇନ୍ୟ ।
ପାତାଳକେଭୁ ଯେ ଆସି ମିଳିଲା ସମରେ
ଧନୁ ଶର ଧରି ଯାଇଁ ଭରତ ଆଗରେ ।
ମାୟାରଥେ ବସି ବୋଲେ ଆରେରେ ମାନବା
ଏହିକ୍ଷଣି ତୋତେ ଯମଘର ଦେଖାଇବା ।
ଏହା କହି କୋଟି କୋଟି ବାଣ ବିନ୍ଧେ ସନ୍ଧି
କାଟିଲେ ଭରତ ତୀକ୍ଷ୍ଣ ତୀକ୍ଷ୍ଣ ଶର ବିନ୍ଧି ।
ଏମନ୍ତେ ସେ ଦୁହିଁଙ୍କର ଘୋରଯୁଦ୍ଧ ହେଲା
ମହାକୋପେ ଭରତ ତା ଧନୁକୁ କାଟିଲା ।
ଦଶଗୋଟା ବାଣେ ତାର ରଥକଲା ଚୂନା
କୋପେଣ ଦାନବ କରି ବହୁତ ଭର୍ତ୍ସନା ।
ପରିଘ ବୁଲାଇ ଧାଇଁ ଆସେ ମହାବଳୀ
ଭରତ ମାଇଲେ କୋପେ ବାଣ ଜ୍ୱାଳାବଳି ।
ଦାନବର ପରିଘକୁ କଲେ ଖଣ୍ଡ ଖଣ୍ଡ
ଦେଖିଣ ଦଇତ ଭୟେ ହେଲା ଲଣ୍ଡଭଣ୍ଡ ।
ଏ ସମୟେ ପାଞ୍ଚବାଣ ମାଇଲେ ଭରତ
ଅସୁର ଶରୀରେ ପଶି ପିଇଲେ ରକତ ।
ତତକ୍ଷଣେ ପାତାଳକେଭୁ ଶୂକର ହୋଇଲା
ଭରତର ଆଗେ ଆଗେ ଦୈତ୍ୟ ପଳାଇଲା ।
ଦେଖି କୋପେ ଧନୁ ଧରି କୈକେୟୀ ନନ୍ଦନ
ଦାନବର ପଛେ ପଛେ କରନ୍ତି ଗମନ ।
କେତେବେଳେ ଦୃଶ୍ୟ ପୁଣି ଅଦୃଶ୍ୟ ହୁଅଇ
ଅସୁର ରୂପରେ ପୁଣି ପାଖକୁ ଆସଇ ।
ଅସ୍ତ୍ରଧରି କେତେବେଳେ କରଇ ସମର
ପଳାଇଯାଏ ସେ ପୁଣି ହୋଇଣ ଶୂକର ।
ଅସୁର ପଛକୁ ଧରି ଗୋଡ଼ାନ୍ତି ଭରତ
ଏମନ୍ତେ ସେ ଲଙ୍ଘିଗଲେ ବନ ପରବତ ।
ବୁଲାଇ ବୁଲାଇ ନେଇ ପଶିଲା ବିବରେ
ଭରତହିଁ ପଶିଗଲେ ଦାନବ ପଛରେ ।
ଘୋର ଅନ୍ଧକାର ବାଟ ଘାଟ ନ ଦିଶଇ
ଶୂକର ରୂପରେ ଦୈତ୍ୟ ଗର୍ଜ୍ଜନ ଛାଡ଼ଇ ।
ଆରେରେ ମାନବା ବୋଲି ଦେଉଅଛି ଗାଳି
ଶୁଣି ଭରତ ଧାମନ୍ତି କୋପେ ପରଜ୍ୱଳି ।
ଏମନ୍ତେ ସେ ଭରତଙ୍କୁ ନେଇ ବହୁଦୂର
ବିଷକୂପେ ପକାଇଲା ପାମର ଅସୁର ।
ଜଳ ନାହିଁ କୂପଯାକ କାଳକୂଟ ବିଷ
ପଡ଼ିଲେ ସେ କୂପେ ଯାଇ କୈକେୟୀର ଶିଷ
ଗରଳ ଭେଦିଲା ଦଶଦ୍ୱାରକୁ ନିରୋଧି
ଦ ରୁଣ ବିଷର ଜ୍ୱାଳା ବ୍ରହ୍ମ ରନ୍ଧ୍ର ଭେଦି ।

ଚେତା ହାରିନେଲା ଶିର ପଡ଼ିଲେକ ତଳ
ଦେଖିଣ ତକ୍ଷକ ନାଗ ରଜାର ଦୁଲାଳୀ ।
ପିତାକୁ କହିଲା ଯାଇଁ କାଲି ଏକ ନର
ଆମ୍ଭର ଯେ ବିଷକୂପ ମହାଭୟଙ୍କର ।
ତହିଁରେ ପଡ଼ିଛି ତାର ଦେହେ ନାହିଁ ଜୀବ
ରୂପରେ ତାହାକୁ ସରି ନୋହିବେ ଗନ୍ଧର୍ବ ।
ଦେବତାଙ୍କଠାରୁ ସେହି ଅଧିକ ସୁନ୍ଦର
କରେ ଧନୁ ବେନିକନ୍ଧେ ଝୁଲଇ ତୂଣୀର ।
ଦୁହିତାର ମୁଖୁ ଶୁଣି ଏମନ୍ତ ଅଦ୍ଭୁତ
ବୋଇଲା ଲେ ଅସମ୍ଭବ କଥା କହୁ ସୁତ ।
ଯେ ବାରୁଣି ବିଷକୂପେ ନ ପଶଇ ଯମ
ବାସବକୁ ଅଗୋଚର ଏ ଗୁପତ ସ୍ଥାନ ।
ଏମନ୍ତ କହି ତୁରିତେ ଅଇଲା ସେ ଧାଇଁ
ଭରତକୁ ଚାହିଁଲା ସେ ଖଣ୍ଡେ ଦୂରେ ଥାଇଁ ।
ବିରାଜଇ ଦେବଚିହ୍ନମାନ ତାର ଅଙ୍ଗେ
ଦେଖିଣ ସେ ନାଗରାଜ ବସିଲାକ ଯୋଗେ ।
ଯୋଗବଳେ ଜାଣିଲେ ଏ ଦଶରଥ ସୁତ
ଶ୍ରୀବିଷ୍ଣୁ ଦେବଙ୍କ ଅଂଶେ ହୋଇଅଛି ଜାତ ।
ଚଣ୍ଡାଳ ପାତାଳକେତୁ ମାୟାବଳେ ଆଣି
ବିଷକୂପେ ପକାଇଣ ଗଲା ଏହିକ୍ଷଣି ।
ଏହାଙ୍କୁ ଯେବେ ମୁଁ ପୁରେ ନ ରଖିବି ନେଇ
ମୋହର ଜୀବନ ଆସି ନେବ ଖଗସାଇଁ ।
ଆମ୍ଭପାଇଁ ସିନା ବିଷ୍ଣୁ ପାଉଛନ୍ତି କଷ୍ଟ
ଏ ମଲେ ଅମର ହେବ ପାମର ଦର୍ପିଷ୍ଟ ।
ଏମନ୍ତ ଭାଳି ଯେ ନେଲା ଭରତକୁ ପୁରେ
ରଖିଲା ଯତନ କରି ଆପଣା ମନ୍ଦିରେ ।
ଏଥୁ ଅନନ୍ତରେ ତୁଗୋ ଶୁଣ ଭଗବତୀ
ପୁଣି ସେ ପାତାଳ ପୁରୁ ଆସିଣ ଦୁର୍ମତି ।
ମାୟାରଥେ ବସି କରେ ଧରି ଧନୁଶର
ଶତ୍ରୁଘନ ମୁଖ ଚାହିଁ ବୋଲେ ରେ ପାମର ।
ବିନା ଦୋଷେ କହ କିମ୍ପା ଆମ୍ଭପୁରେ ପଶି
ମାରୁଅଛ ଅସୁରଙ୍କୁ ବାର ବାର ଆସି ।
ଆମ୍ଭେ କି ତୁମ୍ଭର ବାଡ଼ି ବୃତ୍ତି ନେଲୁ ହରି
ଏହିକ୍ଷଣି ପଠାଇବି ତୋତେ ଯମପୁରୀ ।
ତୋତେମାରି ମାରିବି ତୋ ଜ୍ୟେଷ୍ଠ ସହୋଦର
ପୃଥିବୀରେ ନ ଥୋଇବି ଗୋଟିଏ ବାନର ।

ତିନିପୁରେ ଆଜି କିଏ ଦେଖିବା ରଖିବ
ଯେ ପଡ଼ିବ ମୋ ଆଗେ ସେ ଯମପୁର ଯିବ ।
ଏମନ୍ତ କହି ଦାନବ କରଇ ଗର୍ଜନ
ବୋଇଲେକ ଦାନବଙ୍କୁ ଚାହିଁ ଶତ୍ରୁଘନ ।
କାହିଁପାଇଁ ଗରଜୁଛୁ ପୂରିଲାଣି କାଳ
ତୁମ୍ଭେ ମଲେ ସୁଖୀ ହେବେ ଦଶଦିଗପାଳ ।
ଆମ୍ଭ ସ୍ୱର୍ଗପୁର କିମ୍ପା ନେଲ ତୁମ୍ଭେ ବଳେ
ଆମ୍ଭ ଦଇତାରି ବାନା ଉଡ଼େ କାଳେ କାଳେ
ନ ଥୋଇବୁ ପୃଥିବୀରେ ଗୋଟିଏ ଅସୁର
ଖୋଜି ଖୋଜି ପଠାଇବୁ ଶମନ ମନ୍ଦିର ।
ଏମନ୍ତ କହି ଧନୁରେ ନାରାଚ ଯୋଚିଲେ
ଅସୁର ହସ୍ତରୁ ଧନୁ କାଟି ପକାଇଲେ ।
ଆନ ଧନୁ ଧରି କୋପେ ଦୈତ୍ୟ ଦୁରାଚାରୀ
ସହସ୍ରେ ନାରାଚ ଦେଲା ଏକାବେଳେ ମାରି ।
ଦଶବାଣେ ଶତ୍ରୁଘ୍ନ ତା କଲେ ନିବାରଣ
ଏମନ୍ତେ ଘଡ଼ିକ ଯାଏ ଦୁହିଁଙ୍କର ରଣ ।
ଦୁହେ ଦୁହିଁଙ୍କର ବାଣ ନିବାରନ୍ତି ଶରେ
ମାଇଲା ଅସୁର ବାଣ ଦୈତ୍ୟ କୋପଭରେ ।
ବାଜିଲା ସେ ବାଣ ଯାଇ ଶତ୍ରୁଘ୍ନ ଲଲାଟେ
କାଳସର୍ପ ଲାଙ୍ଗୁଡ଼ରେ ପିଟିଦେଲେ ଚଟେ ।
ଯେସନ ଗର୍ଜନ କରି ଫଣାଦିଏ ଟେକି
ତେସନ ଗରଜି କୋପେ ଶତ୍ରୁଘ୍ନ ଧାନୁକୀ ।
ଏକବାଣେ ଦାନବର ଭାଙ୍ଗିଦେଲେ ରଥ
ଚାରିବାଣେ ଦାନବକୁ କଲେ ଜର୍ଜ୍ଜରିତ ।
ପାଞ୍ଚବାଣେ ଧନୁ ଗୁଣ କାଟିଲେ ତାହାର
ଭୟରେ ପାତାଳକେତୁ ହୋଇଲା ଶୂକର ।
ଶତ୍ରୁଘନ ଆଗେ ଆଗେ ଗଲାକ ପଳାଇ
ଅସୁରକୁ ଶତ୍ରୁଘନ ଗଲେକ ଗୋଡ଼ାଇ ।
ବନେ ଯେହ୍ନେ ମୃଗପଛେ ଧାଇଁଥାଏ ବ୍ୟାଧ
ନ ମାନଇ ତରୁ ଲତା ଗିରି କଣ୍ଟାବନ୍ଧ ।
ତେସନ ଧାମନ୍ତି ପଛେ ପଛେ ଶତ୍ରୁଘନ
ଶୂକର ରୂପରେ ଦୈତ୍ୟ କରଇ ଗମନ ।
ପଶିଲା ସେ ବେଗେ ଯାଇଁ ପାତାଳ ବିବରେ
ଶତ୍ରୁଘନ ପଶିଗଲେ ତାହାର ପଛରେ ।
ଘୋର ଅନ୍ଧକାର ପଥ କିଛି ନ ଦିଶଇ
ତର୍ଜ୍ଜନ ଗର୍ଜ୍ଜନ କରି ଅସୁର ଡାକଇ ।

ଆରେରେ ମାନବ ଆଜ କାଟିବି ତୋ ଶିର
ଦାନବ ଶବଦ ବାର ଗଲେ ତହୁଁ ବୀର ।
କିଛିଦୂରେ ଜ୍ୟୋତିର୍ମୟ ପୁରକୁ ଦେଖିଲେ
ଅସୁର କେଣିକି ଗଲା ଖୋଜି ନ ପାଇଲେ ।
ମନେ ବିଚାରିଲେ ଦୈତ୍ୟ ଅଛଇ ଏ ପୁରେ
ଏତେ ଭାଳି ଶତ୍ରୁଘ୍ନ ପଶିଲେ ଭିତରେ ।
ଦେଖିଲେ ସେ ପୁର ଗୋଟା ଦିଶଇ ଉଜ୍ଜ୍ୱଳ
ଶୋଭାରେ ସେ ନିନ୍ଦୁଅଛି ଗଗନମଣ୍ଡଳ ।
ହୀରା ନୀଳା ବଇଡ଼ୂର୍ଯ୍ୟ ପ୍ରବାଳ କାଞ୍ଚନ
ଗୋମେଧ ରଜତ ମୋତି ମାଣିକ୍ୟ ରତନ ।
ବିରାଜନ୍ତି ଗଗନର ତାରାଠାରୁ ଝଳି
ବସି ଅଛଇ ସେ ପୁର ମଧ୍ୟେ ଏକ ବାଳୀ ।
କୋଟିଚନ୍ଦ୍ର ନୋହିବ ତା ବଦନକୁ ସରି
ଗଣ୍ଡେ ହସ୍ତଦେଇ ଦୁଃଖେ ବସିଛି ସୁନ୍ଦରୀ ।
ନୟନ କମଳଠାରୁ ଅଧିକ ସୁନ୍ଦର
ଦର୍ଶନପନ୍ତି କି ତାର ମୁକୁତାର ହାର ।
ଧୀରେ ଧୀରେ ଝୁଲୁଅଛି ନାସାମଣି ଗୋଟି
ବିମ୍ବୂଲି ଅଧରୀ ସେହି ବାଳା ବିମ୍ବଓଷ୍ଠୀ ।
ଅଷ୍ଟରତନର ହାର ପଡ଼ିଅଛି ଉରେ
ଅନୁପମ ରୂପ ତାର ନାହିଁ ତିନିପୁରେ ।
ସାକ୍ଷାତେ ସେ ହେମଲତା ଅଟଇ ସୁନ୍ଦରୀ
ଶତ୍ରୁଘ୍ନ ତାହାକୁ ଦେଖି ମନରେ ବିଚାରି ।
ଅସୁର ତ ନାହିଁ ଏଥେ ଏ କାହାର ପୁର
କେବଣ ଦେବୀର ଅବା ଅଟଇ ମନ୍ଦିର ।
ଏକ ମାତ୍ର ଅଛି ଏହି ପୁରେ ଏ ସୁନ୍ଦରୀ
ନାଗ କନ୍ୟା କିବା ସ୍ୱର୍ଗପୁର ଅପସରୀ ।
କେମନ୍ତେ ଏହାକୁ କଥା କହିବି ଏକାନ୍ତେ
ନ କହିଲେ ଆଉ କେହି ନାହାନ୍ତି ତ ଏଥେ ।
ଏତେ ଭାଳି ପଚାରିଲେ କହ ଗୋ ସୁନ୍ଦରୀ
କାହାର ଦୁହିତା ତୁମ୍ଭେ କାହାର ଗୋ ନାରୀ ।
ଏ ସୁନ୍ଦର ପୁର ଗୋଟି ଅଟଇ କାହାର
କ୍ଷୁଧା ତୃଷା ହରଇ ଏ ଅପୂର୍ବ ମନ୍ଦିର ।
ଦେବୀ କି ଦାନବୀ ତୁମ୍ଭେ ମାନବୀ କି କହ
ମୁହିଁତ ଶତ୍ରୁଘ୍ନ ଦଶରଥ ରାଜା ପୁଅ ।
ଶ୍ରୀରାମଙ୍କ ସାନଭାଇ ଥିଲି ବିଲଙ୍କାରେ
ଯୁଦ୍ଧ ଥିଲି ମୁଁ ପାତାଳକେତୁ ସଙ୍ଗତରେ ।

ଶୂକର ରୂପରେ ସେହି ପଳାଇ ଅଇଲା
ଏ ପୁରେ ପଶିଲା ଦୈତ୍ୟ ତହୁଁ କେଉଁଣେ ଗଲା
ଜାଣିଥିଲେ କହ ମୋତେ ଅନୁଗ୍ରହ କରି
ଧୀରେ ଧୀରେ କହେ ପିକଭାଷୀ ସେ ସୁନ୍ଦରୀ ।
ଆହେ ରାଜପୁତ୍ର ଶୁଣ ମୋହର ଯେ ଦୁଃଖ
ଶୁଣିଲେ ନୟନ ନୀରେ ତିନ୍ତାଇବ ମୁଖ ।
ମୁହିଁ ଯେ ଗନ୍ଧର୍ବକନ୍ୟା ନାମ ରତ୍ନାବତୀ
ବିଶ୍ୱାବସୁ ଗନ୍ଧର୍ବ ଯେ ମୋର ନିଜ ପିତା ।
ମାୟାବୀ ପାତାଳକେତୁ ଜାଣେ କେତେମାୟା
ଚଣ୍ଡାଳ ଦାନବ ଚିତ୍ତେ ନାହିଁ ଟିକେ ଦୟା ।
ତାହାର ମାୟାରେ କେହି ନ ପାରିଲେ ପଶି
ଇନ୍ଦ୍ର ଆଦି ଦେବତାଙ୍କୁ ଜିଣିଲା ସେ ଦୋଷୀ ।
ମାୟାଧର ବିଷ୍ଣୁ ଜିଣି ପାରଇ ମାୟାରେ
ରହିଥାଇ ସେ ଦାନବ ଏ ପାତାଳପୁରେ ।
ଧଇଲେ ଶୂକର ରୂପ ମୋହିବ ସଂସାର
ପଡ଼ିଯିବେ ତାର ମାୟାଜାଲେ ବ୍ରହ୍ମା ହର ।
କି କହିବି ମାୟାବଳେ ହରି ଆଣି ମୋତେ
ରଖିଅଛି ଏହି ଠାରେ ଅଷ୍ଟମୀ ପର୍ଯ୍ୟନ୍ତେ ।
ଆଜକୁ ଅଛଇ ଆଉ ପନ୍ଦର ଦିବସ
ବଳାତ୍କାରେ ମୋତେ ଧରି ହରିବ ରାକ୍ଷସ ।
ଭଣ୍ଡାଇ ମୁଁ ଦାନବକୁ ରଖିଛି ମହତ
କହିଛି ଅଛଇ ମୋର ଏକମାସ ବ୍ରତ ।
ତେଣୁ ମୋର ସତୀ ପଣ ଅଛି ଆହେ ବୀର
ପନ୍ଦର ଦିବସ ହେଲା ଆଣିଲା ଅସୁର ।
ପ୍ରାଣ ରଖି ନ ଥାନ୍ତି ମୁଁ କହୁଅଛି ସତ
ନାରଦ ମୁନିଙ୍କ ଯୋଗୁଁ ଅଛି ମୁଁ ଜୀବିତ ।
ସେ ଆସି ଦିନେ ମୋ ପାଶେକହିଲେ ଏକାନ୍ତେ
ଆଗୋ ରତ୍ନାବତୀ ପ୍ରାଣ ରଖ ଦିନା କେତେ ।
ମରିବ ଅଳପ ଦିନେ ମାୟାବୀ ଅସୁର
ସର୍ବଂଶେ ମାରିବେ ତାକୁ ରାମ ରଘୁବୀର ।
ଯେ ଦିନ ଭେଟିବୁ ତୁହି ଶ୍ରୀରାମଙ୍କ ଭାଇ
ଯତନେ ଏ ପୁରମଧ୍ୟେ ଥିବୁ ତାଙ୍କୁ ଥୋଇ ।
କେହି ନ ଦେଖିବେ ତାକୁ ଆଣିବୁ ଗୁପତେ
ନ ଜାଣନ୍ତି ଜଗିଥିବା ଅସୁରୀ ଯେମନ୍ତେ ।
ଦାନବର ମାୟାମୟ ପୁର ଏହି ଜାଣ
ଏଥେ ପଶି ନ ପାରଇ କେବେ ଜନ୍ତୁଗଣ ।

ଇନ୍ଦ୍ର ଚନ୍ଦ୍ର ବରୁଣ ବା କୁବେର ପବନ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସୂର୍ଯ୍ୟ ହୁତାଶନ ।
ଏହିକ୍ଷଣି ଦେଖୁଅଛ ନ ଦେଖିବ ଏଥେ
ଗୃହଁ ଗୃହଁ ଅଦୃଶ୍ୟ ଏ ହେବ ଦୃଷ୍ଟିପଥେ ।
ଅଦ୍ଭୁତ ମାୟା ଜାଣଇ ଦୁର୍ଦ୍ଦାନ୍ତ ଦାନବ
ପଶିଲେ କଦାପି ଏଥୁ ବାହାର ନ ଯିବ ।
ବଳେ ଅବା ଯିବାପାଇଁ କରିବ ଯେ ମନ
ମାୟାଜାଲ ତା ପାଦକୁ କରିବ ବନ୍ଧନ ।
ଯାଇ ନ ପାରିବ ସେହି ରହିବ ଏ ପୁରେ
ମରିବ ସେ ଜାଣୁ ଦୁଷ୍ଟ ଦାନବ ହସ୍ତରେ ।
ଏବେ ମୋର ବୋଲ ମାନି ରହିଥା ଗୁପତେ
ଚଣ୍ଡାଳ ଅସୁର ଗୋଷ୍ଠୀ ମରିବା ପର୍ଯ୍ୟନ୍ତେ ।
ଶତ୍ରୁଘ୍ନ ତା କଥାରେ କଲେ ସନମତ
ପୁର ମଧ୍ୟେ କଲା ତାକୁ ଗନ୍ଧର୍ବୀ ଗୁପତ ।
ଏଥୁଅନନ୍ତରେ ଭୃଗୋ ଗିରିଜେମା ଶୁଣ
ପାତାଳକେତୁ ପାତାଳପୁରୁ ଗଲା ପୁଣ । ୧୫୬
ଦେଖିଲା ସୁଗ୍ରୀବ ରାଜା କରଇ ସମର
ତାହାର ଆଗରେ ଯାଇଁ ମିଳିଲା ପାମର ।
ଧନୁର୍ଧର ବାଣବୃଷ୍ଟି କଲା ତା ଉପରେ
ଯେସନେ ଶ୍ରାବଣ ମାସେ ମେଘ ବୃଷ୍ଟି କରେ ।
ତା ଦେଖି ବାନରରାଜ କୋପେ ଗୁରୁତର
ପାଦେ ଭାଙ୍ଗିଦେଲା ମାୟା ରଥଗୋଟା ତାର ।
ଅସୁର ହାତରୁ ଧନୁ ଛଡ଼ାଇ ଆଣିଲା
ବେନିଖଣ୍ଡ କରି ତାକୁ ଭାଙ୍ଗି ପକାଇଲା ।
ମୁଟିପୋଡ଼େ ମାଇଲା କୋପେ ଅସୁର ଗାଲରେ
ତା ଆଗେ ଶୂକର ରୂପ ଧଇଲା ସତ୍ୱରେ ।
ଆଗେ ଆଗେ ପଳାଇଲା ସୁଗ୍ରୀବ ତା ଦେଖି
ପଛେ ପଛେ ଗୋଡ଼ାଇଲା ସମର ଉପେକ୍ଷି ।
ଯେତେ ବେଗ ହୋଇ ଯାଏ ସୁଗ୍ରୀବ ବାନର
ତହିଁରୁ ଦ୍ୱିଗୁଣ ବେଗେ ଧାମଇଁ ଅସୁର ।
ପଶିଲା ପାତାଳପୁର ବିବରେ ସେ ଯାଇଁ
କପିରାଜ ଗଲା ତାର ପଛେ ଧାଇଁ ଧାଇଁ ।
ଘୋର ଅନ୍ଧକାର ତହିଁ ନ ଦିଶଇ ବାଟ
ଅସୁର ଗର୍ଜ୍ଜନ କରି ବୋଲେ ରେ ମର୍କଟ ।
ମରିବୁ ଏଥର ତୋର ପୂରିଲାଣି କାଳ
ଯମରାଜ ଧଇଲାଣି ହସ୍ତେ ତୋର ବାଳ । ୧୬୬

ଅସୁର ଶବଦ ବାରି ଧାମଇଁ ସୁଗ୍ରୀବ
ତପ୍ତକୂପେ ପକାଇଲା ଦୁରନ୍ତ ଦାନବ ।
ସୂର୍ଯ୍ୟଦେବଙ୍କର ତେଜ ଅଛି ସେହି କୂପେ
ସୁଗ୍ରୀବ ପଡ଼ିଲା ଡେଇଁଯାଇଁ ଆପେ ଆପେ ।
ଅସୁର ମାୟାକୁ ସେହି ଜାଣି ନ ପାରିଲା
ତପ୍ତକୂପ ମଧ୍ୟେ ପଡ଼ି ବୁଡ଼ି ବୁଡ଼ି ଗଲା ।
ସହସ୍ର ଯୋଜନ ଜାଣ ସେ କୂପ ଗଭୀର
ତାତିଯାଇ ଫୁଟୁଥାଇ ଜଳ ନିରନ୍ତର ।
ପାର୍ବତୀ ବୋଇଲେ ଦେବଦେବ ଶୂଳପାଣି
ଏକଥା ଗୋଟିକ ଅସମ୍ଭବ ପ୍ରାୟ ମଣି ।
କେମନ୍ତେ ରହିଲା ତହିଁ ସୂର୍ଯ୍ୟତେଜ ଯାଇଁ
ତପ୍ତକୂପ ନାମ ତାର ହେଲା କାହିଁପାଇଁ ।
ଶଙ୍କର ବୋଇଲେ ପୂର୍ବେ ଆଦିତ୍ୟ ଦେବତା
ତେଜ ନ ସହିଲା ବିଶ୍ୱକର୍ମାର ଦୁହିତା ।
ଛାୟା ନାମେ ଦାସୀ ତାର ଥିଲା ଗୋ ପାର୍ବତୀ
ତାହାକୁ ଆପଣାରୂପ ଦେଇ ମହାସତୀ ।
ପିତା ଘରେ ରହିବାର ଜାଣି ଦିବାକର
ସଜ୍ଞାକୁ ଯାଇ ବୁଝାଇ କହିଲେ ଅପାର ।
ସେ ବୋଇଲେ ତୁମ୍ଭ ତେଜ ନ ପାରଇ ସହି
ତେଣୁ ନାଥ ପିତା ଘରେ ଲୁଚିଅଛି ରହି ।
ଭାରିଯାର ମୁଖୁଁ ଶୁଣି ଏମନ୍ତ ବଚନ
ଆପଣାର ତେଜ କ୍ଷୟ କଲେକ ତପନ ।
ପକାଇଦିଅନ୍ତେ ଫୁଟି ପାତାଳକୁ ଗଲା
ସେହିଦିନୁ ତପ୍ତକୂପ ନାମ ତାର ହେଲା ।
ଫୁଟିଥାଇ ସବୁବେଳେ ସେ କୂପର ପାଣି
ତହିଁରେ ବୁଡ଼ନ୍ତେ ତାହା ଦିନକର ଜାଣି ।
ପୂର୍ବଠାରେ ସ୍ନେହ ରଖି ହରିନେଲେ ତେଜ
ଶୀତଳ ଯୋଗୁଁ ନ ମଲା ତହିଁ କପିରାଜ ।
ସୂର୍ଯ୍ୟଙ୍କ ଆଜ୍ଞାରେ ମଣିନାଗ ନେଲା ହରି
ରଖିଲା ତାହାକୁ ପୁରେ ଅତି ଯତ୍ନ କରି ।
ଏଥୁଅନନ୍ତରେ ଭୃଗୋ ଶୁଣ ହୈମବତି !
ବିଭୀଷଣ ଯାଇଁ ଯାଇଁ ଭେଟିଲା ମାରୁତି ।
ବୋଇଲା ରାମଙ୍କୁ ତୁହି ଦେଖିଛୁ କି ରଣେ
ହନୁ ବୋଇଲା ମୁଁ ଦେଖିନାହିଁ ଗଲେ କେଣେ
ବିଭୀଷଣ ବୋଇଲା ଏ ମାୟାପ୍ରାୟ ଲାଗେ
ସମ୍ଭାଳି ସମର ବାବୁ କରି ତାଙ୍କ ସଙ୍ଗେ । ୧୪୫

ଏମନ୍ତ ବେଳେ ମିଳିଲା ପ୍ରତାପୀ ଅସୁର
କଳପାସୁରକୁ କହେ ସର୍ବ ସମାଚାର ।
ଜାଣିଲାଣି ବିଭୀଷଣ ଆମ୍ଭ ମାୟାଯାକ
ଏହାଙ୍କୁ ମାଇଲେ ଯିବ ଆମ୍ଭର କଳଙ୍କ ।
ଏ ଷଡ଼ବୀରଙ୍କୁ ବାଣେ ପକାଇବା ମାରି
ବଳହୀନ ହୋଇଲାଣି ଯୁଦ୍ଧ କରି କରି ।
ଏମନ୍ତ ବିଚାରି ଦୁହେଁ ଧରି ଧନୁଶର
ବିଭୀଷଣ ସଙ୍ଗେ କଲେ ବିଚିତ୍ର ସମର ।
କୋଟି କୋଟି ଲକ୍ଷ ଲକ୍ଷ ମାଇଲେକ ବାଣ
କାଟି ନ ପାରିଲା ପ୍ରତି ଶରେ ବିଭୀଷଣ ।
ପଡ଼ୁଛନ୍ତି ବାଣେ ଆସି ତେଜ ସମ ଜାଣି
କାତର ହୋଇଲା ବେଳୁଁ ବେଳ ବୀରମଣି ।
ଧନୁଧର ନ ପାରିଲା ଭୂମିରେ ପଡ଼ିଲା
ବିଷମ ଆଘାତ ପାଇ ଚେତା ହଜିଗଲା ।
ବିଭୀଷଣ ପଡ଼ିବାର ଦେଖି ଦୁଇବୀରେ
ବାଣବୃଷ୍ଟି କଲେ କୋପେ ଅଙ୍ଗଦ ଅଙ୍ଗରେ ।
ଯୁଝି ଯୁଝି ଅଶକତ ହୋଇଲାଣି ବୀର
ବାଣର ଆଘାତ ପାଇ କମ୍ପିଲା ଶରୀର ।
ପଡ଼ିଲା ଭୂମିରେ ଢଳ ତାରାର ନନ୍ଦନ
ତାହା ଦେଖି ନଳ ନୀଳ ମନ୍ତ୍ରୀ ଜାମ୍ବବାନ ।
ଗିରି ବୃକ୍ଷ ହସ୍ତେ ଧରି କଲେ ଯାଇ ରଣ
ବିନ୍ଧନ୍ତି ସେ ବେନବୀରେ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଗିରି ବୃକ୍ଷ କାଟି ତାଙ୍କ ଶିର ଦେଲେ ଚିରାଇ
ଏକାବେଳେ ତିନିବୀରେ ଚେତନା ହରାଇ ।
ଭୂମିରେ ପଡ଼ିଲେ ତାହା ଦେଖି ହନୁମାନ
ବିଚାରିଲା କାହିଁଗଲେ କମଳଲୋଚନ ।
ଭରତ ଶତ୍ରୁଘ୍ନ ଦୁହେଁ କାହିଁଗଲେ ପୁଣି
କାହିଁଗଲା ସୁଗ୍ରୀବ ହେ କପିକୁଳମଣି ।
ମୁହିଁ ତ ଅଛଇ ଏକା ମଲେଣି ସମସ୍ତେ
ମୁଁ ମଲେ ବାରତା ସୀତା ପାଇବେ କେମନ୍ତେ
ଯୁଦ୍ଧ କରିବାର ମୋର ନୁହଇ ଉଚିତ
ଏମନ୍ତ ବିଚାରି ତହୁଁ ବୀର ହନୁମନ୍ତ ।
କ୍ଷୁଦ୍ରରୂପ ଧରି ଯାଇଁ ଉଠିଲା ପର୍ବତେ
ବସିଲା ପର୍ବତ ଶିଖ ବୃକ୍ଷର ଅଗ୍ରତେ ।
ସମର ଭୂମିକି ଦୃଷ୍ଟି ଦେଲା ବୀରମଣି
ଦୁଇ ବିନା ତିନିଜଣ ନାହିଁ ତହିଁ ପୁଣି ।

ରୁଧିର ମଡ଼ାର କିଛି ନାହିଁ ଚିହ୍ନ ବର୍ଣ୍ଣ
ରଥ ରଥୀ ଗଜ ଅଶ୍ୱ ପଦାତି ସଇନ ।
କିଛିନାହିଁ ଦୁଇଗୋଟା ଅସୁର କେବଳ
ଦେଖି ଆଚମ୍ବିତ ହୋଇ ପବନ ଦୁଲାଳ ।
କପାଳରେ କର ମାରି ବୋଲେରେ ଦଇବ
ମାୟା ଯୁଦ୍ଧ କଲେ ଆସି ସେ ଦୁଇ ଦାନବ ।
କି ବୁଦ୍ଧି କରିବି ରାମ ଗଲେ କାହିଁ ପୁଣି
ଶତ୍ରୁଘନ ଭରତ ଯେ କପିକୁଳମଣି ।
ଏ ଚାରିଙ୍କ ଚିହ୍ନବର୍ଣ୍ଣ ନ ମିଳଇ ତହିଁ
ଅସୁରଙ୍କ ମାୟା ବୁଝି ନ ପାରିଲୁ କେହି ।
ଶୁଣ ଗୋ ପାର୍ବତୀ ଦେବୀ ବୋଲନ୍ତି ଶଙ୍କର
କଳପା ପାତାଳକେତୁ ଏ ବେନି ଅସୁର ।
ରଣଭୂଇଁରୁ ସାନନ୍ଦ ହୋଇ ଚଳିଗଲେ
ଲକ୍ଷଶିରା ଦାନବର ସମ୍ମୁଖରେ ମିଳିଲେ ।
ବୋଇଲେ ଯୁଦ୍ଧର କଥାଯାକ ତାହା ଆଗେ
ଶୁଣି ଦାନବ ଆସ୍ଥାନୁ ଉଠି ଆସି ବେଗେ ।
ଦୁହିଁଙ୍କର ହାତଧରି କଲା ଗଉରବ
ଶତ୍ରୁକ୍ଷୟ ଧ୍ୱଜାବାନ୍ଧି କଲେ ମହୋତ୍ସବ ।
ପ୍ରଚଣ୍ଡ ପର୍ବତୁ ହନୁ ଆଇଲା ଓହ୍ଲାଇ
ବିଭୀଷଣ ନିକଟରେ ପ୍ରବେଶିଲା ଯାଇ ।
ତେତେବେଳେ ରଜନୀ ଯେ ଦ୍ୱିତୀୟ ପ୍ରହର
ଶୁକ୍ଳପକ୍ଷ ଅଷ୍ଟମୀତିଥି ରବିବାର ।
ତିନିଦିନ ତିନିରାତି ମାୟାଯୁଦ୍ଧ କରି
ସେଦିନ ରାତିରେ ଗଲେ ରଣ ଜୟ କରି ।
ପ୍ରହରେକ ରାତିରେ ସେ ଯୁଦ୍ଧସ୍ଥାନୁ ଗଲେ
ତହୁଁ ଦୁଇଘଡ଼ିରେ ସେ ପୁରେ ପ୍ରବେଶିଲେ
ତଦୁତ୍ତରୁ ହନୁ ଆସି ମିଳିଲାକ ତହିଁ
ଆଶ୍ୱିନମାସ ଚନ୍ଦ୍ରମା ଆକାଶରେ ଉଇଁ ।
ରଣଭୂମିକି ଦିବସ ପ୍ରାୟ ଅଛି କରି
ମାରୁତି ବୋଇଲା ଆହେ ଲଙ୍କା ଦଣ୍ଡଧାରୀ ।
ବିଧାତା ଅମରବର ଦେଇଅଛି ତୋତେ
ଅସୁରଙ୍କ ହାତେ ଏଥେ ମଲୁ ତୁ କେମନ୍ତେ ।
ଜଣାଯାଏ ଦଇବର ବଳ ଅଟେ ମୂଳ
ଦେବତାମାନଙ୍କ କଥା ମିଥ୍ୟାହିଁ କେବଳ ।
ଉଠ ଉଠ ଡାକୁଅଛି ମୁହିଁ ହନୁମାନ
ସର୍ବଜ୍ଞ ପୁରୁଷ ତୁ ହୋ ରାବଣର ସାନ ।

ଅସୁର ହୋଇ ତୁ ମାୟା ଜାଣି ନ ପାରିଲୁ
ଆପଣା ହସ୍ତେ ଆପଣା ଜୀବନକୁ ଦେଲୁ ।
ଆମ୍ଭଙ୍କୁ ଅନାଥ କରି ପ୍ରଭୁ ରଘୁନାଥ
ସଙ୍ଗେ ଘେନି ମିତ୍ରଭାବ ଶତ୍ରୁଘ୍ନ ଭରତ ।
କି ବୁଦ୍ଧି କରିବି ମୁହିଁ ବଞ୍ଚିଅଛି ଏକା
ଏତେ ବୋଲି ଉଠାଇଲା ମନେ ପାଇ ଶଙ୍କା
ନ ଉଠିଲା ସହୁଁ ହନୁ କରଇ ରୋଦନ
ରାଜ୍ୟସୁଖ ଭୋଗ ତେଜି ହରାଇଲୁ ପ୍ରାଣ ।
ଧିକ ଧିକ ବିଧାତାରେ ଧିକ ତୋର କଥା
ଧାର୍ମିକ ବିବେକବନ୍ତ ଯେଉଁ ମହାରଥୀ ।
ସ୍ୱର୍ଣ୍ଣମୟ ଲଙ୍କାପୁର ସୁଖଭୋଗ ଛାଡ଼ି
ବିଲଙ୍କାର ଶମଶାନେ ଆସି ଅଛି ପଡ଼ି ।
ତହୁଁ କାନ୍ଦି କାନ୍ଦି ଯାଇଁ ଜାମ୍ବବାନ ପାଶେ
ବୋଇଲା ଭୋ ମନ୍ତ୍ରୀବର ଏ ବିଲଙ୍କା ଦେଶେ
ମଡ଼ା ମଶାଣିରେ ପୂରିଅଛି ଏହି ଭୂଇଁ
ଦେଖ ଚଣ୍ଡୀ ଗୃମଣ୍ଡାଏ ଆସୁଛନ୍ତି ଧାଇଁ ।
କାକ ଗୃଧ୍ର ଶୃଗାଳଙ୍କ ରାବ ଭୟଙ୍କର
ଉଠ ଉଠ ଯିବା ବେଗେ ପର୍ବତ ଉପର ।
ମୁହିଁ ହନୁମାନ କଥା ନ କହୁଛ ମୋତେ
ବୁଦ୍ଧି ଦିଅ ଶ୍ରୀରାମଙ୍କୁ ପାଇବା କେମନ୍ତେ ।
ଏତେ କହି ଉଠାଇଲା ଦୁଇହସ୍ତ ତୋଳି
ନ ଉଠିଲା ଚେତାହତ ହେତୁ ମହାବଳୀ
ଦେଖି ହନୁମାନର ଯେ ବୁଦ୍ଧି ଗଲା ହଜି
ଶୋକ ସମୁଦ୍ରରେ ବୀର ଗୋଟାଯାକ ମଜ୍ଜି ।
ନଳ ନୀଳ ଅଙ୍ଗଦକୁ ଉଠାଇଲା ଯାଇଁ
ପଡ଼ିଛନ୍ତି ତିନିଜଣ ଚେତନା ହରାଇ ।
ଦେଖି ମୁଣ୍ଡେ ହାତ ଦେଇ ବସିଗଲା ହନୁ
ଚନ୍ଦ୍ର ବୋଲେ ଶୋକ ତେଜ ପବନର ସୂନୁ ।

## ହନୁମାନର ଅଯୋଧ୍ୟା ଗମନ ଓ ଲକ୍ଷ୍ମଣ ସୀତାଙ୍କର ବିଲଙ୍କା ଯାତ୍ରା

ଶଙ୍କର କହନ୍ତି ପୁଣି ଶୁଣ ତୁ ଗଉରୀ
ବ୍ରହ୍ମା ଆଦି ଦେବଗଣ ସ୍ୱର୍ଗେ ସଭା କରି ।
ବୋଇଲେ ପାତାଳକେତୁ କଲା ସର୍ବନାଶ
କେମନ୍ତେ ମରିବ ସେହି ଦାରୁଣ ରାକ୍ଷସ ।
ବୃହସ୍ପତି ବୋଇଲେ ହେ କିଛିହିଁ ନ ଭାଳ
ଅଯୋଧ୍ୟା ପୁରକୁ ଯାଇଁ ପବନ ଦୁଲାଳ ।
ବାରତା କହିଲେ ସୀତା ଲକ୍ଷ୍ମଣ ଆସିବେ
ବିଲଙ୍କାପୁରରେ ପଶି ଅସୁର ନାଶିବେ ।
ପବନକୁ କୁହ ଯାଇ କହୁ ତା ପୁଅକୁ
ଅଯୋଧ୍ୟାରୁ ଆଣୁ ଯାଇ ସୀତା ଲକ୍ଷ୍ମଣଙ୍କୁ ।
ଶୁଣି ବାସବ ପବନ ଦେବତାକୁ ଗୁହିଁ
ବୋଇଲେ ହୋ ଦେବକାର୍ଯ୍ୟକର ଯାଇଁ ତୁହି
ଅସୁର ନ ମଲେ ଜାଣ ସରିବଟି ସବୁ
ବେଗେ ଯାଅ ବିଳମ୍ବ ତୁ ନ କରହୋ ବାବୁ
ରାମ ବିନେ ହନୁମାନ ହରାଇଲେ ପ୍ରାଣ
ନିଶ୍ଚେ ନାଶଯିବ ଏହି ସ୍ୱର୍ଗପୁର ଜାଣ ।
ଏମନ୍ତ ବାସବ ମୁଖୁଁ ଶୁଣିଣ ପବନ
ପୁତ୍ର ନିକଟକୁ କଲା ସତ୍ୱରେ ଗମନ ।
ବୋଇଲା ରେ ପୁତ୍ର କିମ୍ପା ଶୋକକରୁ ବସି
ବେଗେ ଯାଇଁ ଅଯୋଧ୍ୟାକୁ ସୀତା ଘେନିଆସି
ଲକ୍ଷ୍ମଣଙ୍କ ଆଗେ କହି ଯୁଦ୍ଧ କଥାମାନ
ଦୁରାଚାରୀ ରାକ୍ଷସଙ୍କୁ କରାଅ ନିଧନ ।
ହନୁ ବୋଲେ କହ ପିତା ପ୍ରଭୁ ମୋର କାହିଁ
ନ ଦେଖିଲେ ଏ ଜୀବନ ନ ରଖିବି ମୁହିଁ ।
ପବନ ବୋଇଲେ ତୁହି ନ ହୁଅ କାତର
ପାତାଳକେତୁର ମାୟା ଅତି ଅଗୋଚର ।

ମାୟାଯୁଦ୍ଧେ ତାଙ୍କୁ ନେଇ ରଖିଛି ପାତାଳେ
ନ ପାଇବୁ ବାବୁ ତୁହି ଖୋଜ କେତେବେଳେ
ନ ମଲେ ଅସୁରେ ସେହି ନ ମିଳିବେ ଜାଣ
ତୋର ହସ୍ତେ ଅବଧ ଏ ଦୈତ୍ୟ ତିନିଜଣ ।
ବେଗେ ବାବୁ ଯାଅ କ୍ଷଣେ ବିଳମ୍ବ ନ କର
ହନୁ ବୋଲେ ପିତା କହ ଏହି ପାଞ୍ଚବାର ।
କେମନ୍ତେ ପାଇବେ ରକ୍ଷା ଶତ୍ରୁ ହିବ ଖାଇ
ପବନ ବୋଲଇ ପୁତ୍ର ନ ଭାଳ ତା ପାଇଁ ।
ଜଗିବୁ ଏହାକୁ ଆମ୍ଭେ ତୁ ଆସିବାଯାଏ
ଅସୁରେ ମଲେ ଜୀବନ ପାଇବେ ସଭିଏଁ ।
ହନୁ ବୋଇଲା ହେ ତାତ ସାହାହୁଅ ମୋତେ
ନିମିଷକେ ଅଯୋଧ୍ୟାରେ ମିଳଇ ଯେମନ୍ତେ ।
ପିତା ପୁତ୍ର ଦୁହେଁ ମିଳି ନିମିଷକେ ଗଲେ
ଅଯୋଧ୍ୟାପୁରରେ ଯାଇଁ ପ୍ରବେଶ ହୋଇଲେ
ସୂର୍ଯ୍ୟ ଉଦେକାଳେ ଯାଇଁ ପ୍ରବେଶିଲା ହନୁ
ଅଶ୍ରୁଜଳ ଗଳୁଅଛି ତା ବେନି ନୟନୁ ।
ହନୁ କାନ୍ଦିବାର ଦେଖି ଅଯୋଧ୍ୟାର ଲୋକେ
ବାଳ ବୃଦ୍ଧ ଯୁବା ସ୍ତ୍ରିଏ ନିମଜ୍ଜିଲେ ଶୋକେ ।
କି ହେଲା କି ହେଲା ହନୁ ଯୁଦ୍ଧ ସମାଚାର
କାହିଁଗଲେ କହ ପ୍ରଭୁ ରଘୁକୁଳବର ।
ଏକାକେ ଅଇଲୁ ବାବୁ ନାହାନ୍ତି ତ କେହି
କାହିଁକି ନୟନୁ ତୋର ଲୁହ ପଡ଼େ ବହି ।
ହନୁ ବୋଲେ କି କହିବି ହେଲା ସର୍ବନାଶ
ଶୁଣିବ ଯେବେ ସମସ୍ତେ ମୋ ସଙ୍ଗତେ ଆସ ।
ଶୋକଭର ହୋଇ ପଛେପଛେ ଗଲେ ଲୋକେ
ମାରୁତି ପ୍ରବେଶ ଯାଇଁ ଲକ୍ଷ୍ମଣଙ୍କ ପାଶେ ।
ଶିରେ କର ଦୁଇ ତାଡ଼ି ବୋଲେ ହନୁମାନ
ଅଯୋଧ୍ୟା କିଷ୍କିନ୍ଧ୍ୟା ଲଙ୍କା ଏ ତିନି ଭୁବନ ।
ଆଜଠାରୁ ଶୋକସିନ୍ଧୁ ମଧ୍ୟେ ଗଲା ବୁଡ଼ି
ଏମନ୍ତ କହିଣ ମୂର୍ଚ୍ଛା ଯାଇ ହନୁ ପଡ଼ି ।
ଶୁଣି ଲକ୍ଷ୍ମଣଙ୍କ ନେତ୍ରୁ ବହିପଡ଼େ ନୀର
ରାଣୀହଂସପୁରକୁ ଯେ ଗଲା ଏ ଖବର ।
ମାତାମାନେ ଶୁଣି ପଡ଼ି ମୂର୍ଚ୍ଛା ଗଲେ ତଳେ
ରୋଦନ କରନ୍ତି ମାରି କରକୁ କପାଳେ ।
ରୋଦନ ଧ୍ୱନିରେ ପୁର ପଡ଼ିଲା ଉଚ୍ଛୁଳି
ପୁଣି ଶିରେ କରତାଡ଼ି ଜନକ ଦୁଲାଳୀ

ବୋଇଲେ ଲକ୍ଷ୍ମଣ ବେଗେ ସଜକର ରଥ
ବିଲଙ୍କାକୁ ଯିବା ବାବୁ କାହିଁଗଲେ ନାଥ ।
ଖୋଜ ନ ପାଇଲେ ତହିଁ ହରାଇବି ପ୍ରାଣ
ଶୁଣି କ୍ରୋଧ ଶାନ୍ତକରି ବୋଇଲେ ଲକ୍ଷ୍ମଣ ।
ନ ହୁଅ କାତର କେହି ଶୋକ ତ୍ୟାଗ କର
ମାରିବି ବିଲଙ୍କାପୁରେ ପଶିଣ ଅସୁର ।
ପାତାଳେ ଅସୁର ନେଇ ରଖିଥିବ ଯହିଁ
ନିଷ୍ଟେ ଖୋଜ ଆଣିବଇଁ ଶ୍ରୀରାମଙ୍କୁ ମୁହିଁ ।
ଏତେ କହି ଧନୁ ଧରି ହେଲେ ବେଗେ ସଜ
ବିକାଶିଲେ ଖରବେଳେ ସୂର୍ଯ୍ୟପ୍ରାୟ ତେଜ ।
ସଜ ହୋଇ ବାହାରିଲେ ସୀତ ଠାକୁରାଣୀ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଅଯୋଧ୍ୟାର ରାଣୀ ।
କାହିଁପାଇଁ ଯିବ ପୁରମଧ୍ୟେ ଥାଅ ରହି
ଏମନ୍ତ ଶୁଣି ବୋଇଲେ ଦେବୀ ବଇଦେହୀ ।
ଯିବଇଁରେ ବାବୁ ମୋତେ ନ କର ବାରଣ
ବଡ଼ ପ୍ରତାପୀ ଅଟଇ ସେ ବିଲଙ୍କା ରାଣ ।
ଏତେ କହି ଆଗ ହୋଇ ବସିଲେକ ରଥେ
ଲକ୍ଷ୍ମଣ ବସିଲେ ପଛେ ଧନୁଶର ହସ୍ତେ ।
ତାଙ୍କ ପଛେ ହନୁମାନ ଚଢ଼ିଲା ବିମାନ
ଶୂନ୍ୟରେ ଉଠିଲା ସେହି କୁବେରର ଯାନ ।
ଗୃହୁଁ ଗୃହୁଁ ଅଦୃଶ୍ୟ ଯେ ହୋଇଲା ଗଗନେ
ଶୋକ ସମୁଦ୍ରରେ ବୁଡ଼ିଗଲେ ପୁରଜନେ ।
ରାଣୀମାନଙ୍କର ଶୋକ କେ ପାରିବ କହି
ଗୃତକ ପକ୍ଷୀ ପରାୟେ ରହିଲେକ ଗୃହିଁ ।
କ୍ଷଣକେ ମିଳିଲା ରଥ ପ୍ରଚଣ୍ଡ ପର୍ବତେ
ଜାନକୀ ବୋଇଲେ ମୁହିଁ ଅଛି ଏହି ରଥେ । ୫୫.
ତୁମ୍ଭେ ଦୁହେଁ ଯାଇ କର ଦୈତ୍ୟସଙ୍ଗେ ରଣ
ହନୁମନ୍ତକୁ ଅନାଇ ବୋଇଲେ ଲକ୍ଷ୍ମଣ ।
ଏ ପୁଷ୍ପକ ରଥେ ଦେବୀ ଥିଲେ ନାହିଁ ଭୟ
ଚାଲ ଆମ୍ଭେ କରିବା ଯେ ଦାନବଙ୍କୁ କ୍ଷୟ ।
ଏମନ୍ତ ବୋଲି ବାହାର ହୋଇଲେ ଲକ୍ଷ୍ମଣ
ସଙ୍ଗତରେ ଅଛି ବୀର ପବନ ନନ୍ଦନ ।
ବିଲଙ୍କାର ସିଂହଦ୍ୱାରେ ଅଛି ପଡ଼ିହାରୀ
ତାହାକୁ କହିଲେ କହ ଯାଇଁ ଶୀଘ୍ରକରି । ୫୪
ଶ୍ରୀରାମର ଭାଇ ଯାର ନାମଟି ଲକ୍ଷ୍ମଣ
ଯେ ମାରିଛି ଇନ୍ଦ୍ରଜିତ ରାବଣ ନନ୍ଦନ । ୫୬.

ସେ ମାଗୁଛି ଯୁଦ୍ଧ ଆସି ସିଂହଦ୍ୱାରେ ରହି
ରଥ ଗଜ ଥାଟ ତାର ସଙ୍ଗତରେ ନାହିଁ ।
ଏକା ଅଛି ହନୁମାନ ପବନ ନନ୍ଦନ
ଯେହୁ ପୋଡ଼ିଥିଲା ତୋର ବିଲଙ୍କା ଭୁବନ ।
ଏହା ଶୁଣି ପଡ଼ିହାରୀ ବେଗେ ଗଲା ଧାଇଁ
ବୋଇଲା ମଣିମା ଶୁଣ ଦୈତ୍ୟକୁଳ ସାଇଁ ।
ଶ୍ରୀରାମର ଭାଇ ନାମ ଅଟଇ ଲକ୍ଷ୍ମଣ
ଏକାଳେ ସେ ଦ୍ୱାରେ ରହି ମାଗୁଅଛି ରଣ ।
ସଙ୍ଗେ ଅଛି ହନୁମାନ ପବନ ନନ୍ଦନ
ଯୁଦ୍ଧ ନ ଦେଲେ ସେ ପୁର କରିବ ଦହନ ।
ଶୁଣି ଲଙ୍କେଶ୍ୱରୀ କୋପେ ମନ୍ତ୍ରୀକି ହକାରି
ବୋଲେ ଶୁଣ କହୁଅଛି ଆସି ପ୍ରତିହାରୀ ।
କଳାପା ଅସୁର ଶୁଣି ବୋଲଇ ହେ ରାୟ
ଆମ୍ଭେ ଦୁହେଁ ଯାଉଅଛୁ ତୁମ୍ଭେ ରହିଥାଅ ।
ମାୟାବଳେ ତାକୁ ଆମ୍ଭେ ଆସୁଛୁ ସଂହାରି
ଏମନ୍ତ ବୋଲି ପାତାଳକେତୁକୁ ହକାରି ।
ମାୟାବଳେ ରଥ ଗଜ ଥାଟ ସଙ୍ଗେ ଘେନି
ବାହାରିଲେ ବିଲଙ୍କାରୁ ସେ ଅସୁର ବେନି ।
ଉତ୍ତର ଦୁଆର ବାଟେ ହୋଇଲେ ବାହାର
ଥାଟମାଡ଼ି ଆସୁଛନ୍ତି ଲହଡ଼ି ପ୍ରକାର ।
ପୂର୍ବଦ୍ୱାରେ ଥିଲେ ହନୁ ସୁମିତ୍ରାନନ୍ଦନ
ଅସୁର ଥାଟକୁ ଦେଖି ବୋଲେ ହନୁମାନ ।
ଆସିଲେ ସେ ଦୁଇଗୋଟା ମାୟାବୀ ଅସୁର
ସାଗର ସମାନ ଥାଟ ହୋଇଲେ ବାହାର ।
ମାୟାରେ ଏ ସୈନ୍ୟ ସବୁ ଅଛନ୍ତି ଭୁଆଇ
ବିଚାରି ଯୁଦ୍ଧ କରିବା ଆମ୍ଭେ ଏଥେ ଥାଇ ।
ଏହି ମାୟାବଳେ କରିଅଛି ସର୍ବନାଶ
କୋପେ ସଉମିତ୍ରି ହେଲେ ଅନଳ ସଦୃଶ ।
ନାରାୟଣୀ ଚନ୍ଦ୍ରକୁ ସେ ବସାଇଲେ ଗୁଣେ
ଶ୍ରୀରାମ ସୁମରି ଛାଡ଼ିଦେଲେ ତତକ୍ଷଣେ ।
କୋଟି କୋଟି ଦେବୀ ତହୁଁ ହୋଇଲେ ବାହାର
କେ ଧରିଛି ଖଡଗ କେ ଧରିଛି ଖପର ।
କାହା ହସ୍ତେ ଭଇରବୀ ଚନ୍ଦ୍ର ବିରାଜୁଛି
କେହି ଖେମଟା ନାଟରେ ନାଚ ଯାଉଅଛି ।
ହି ହି ହସେ କେହି ଗହ ଗହ ନାଦେ
ମରିଦଲେ ଅସୁରଙ୍କୁ କେହି କେହି ପାଦେ ।
କେଉଁ ଦେବୀ ଖଡ଼ଗରେ ପକାଇଲା ହାଣି
ଘଡ଼ିକରେ ନପାତିଲେ ଅସୁର ସଇନ ।
ଅସୁର ମାୟାକୁ ସହୁଁ କଲେ ସେ ବିନାଶ
ମାୟାରଥ ଆରୋହିଲେ ସେ ଦୁଇ ରାକ୍ଷସ ।
କୋପେ ସଉମିତ୍ରି ଧନୁ ଧଇଲେକ କରେ
ବଇଷ୍ଣବୀ ଚନ୍ଦ୍ର ବେଗେ ବସାଇ ଗୁଣରେ ।
ବୋଇଲେ ପାତାଳକେତୁ ଅସୁରକୁ ମାର
ବେନିଖଣ୍ଡ କରି ତଳେ ପକା ତାର ଶିର ।
ଏହା କହି ଛାଡ଼ିଦେଲେ ଶ୍ରୀରାମ ସୁମରି
ଶୂନ୍ୟେ ଯାଇଁ ବିରାଜିଲା କୋଟି ସୂର୍ଯ୍ୟ ପରି ।
ଦେଖି ଭୟେ ଦାନବ ଯେ ହୋଇଲା ଶୂକର
ରଣଛାଡ଼ି ପଳାଇଣ ଗଲା ଖଣ୍ଡେଦୂର ।
ଗର୍ଜନ କରି ସେ ଚନ୍ଦ୍ର ଶୂନ୍ୟରୁ ଖସିଲା
ପାତାଳକେତୁର ଶିର ଦୁଇଖଣ୍ଡ କଲା ।
ଦାନବକୁ ମାରି ଆସି ପଶିଲା ତୂଣୀରେ
ଦେବେ ପୁଷ୍ପବୃଷ୍ଟି କଲେ ଲକ୍ଷ୍ମଣର ଶିରେ ।
ବୋଇଲେ ଧନ୍ୟ ଧନ୍ୟ ତୁ ସୁମିତ୍ରା ନନ୍ଦନ
ତ୍ରିପୁରେ ନାହିଁ ବୀର ତୋହର ସମାନ ।
ଲଙ୍କାରେ ତୁ ମାରିଥିଲୁ ବୀର ଇନ୍ଦ୍ରଜିତ
ମାୟାଯୁଦ୍ଧେ ବାନ୍ଧିଥିଲା ଦେବ ପୁରୁହୂତ ।
ଯାହାର ମାୟାକୁ ଜାଣି ନ ପାରନ୍ତି ହର
ତେଡ଼େ ବୀରଗୋଟାକୁ ତୁ କଲୁ ଯେ ସଂହାର
ତାଠାରୁ ବଳି ଏହାର ମାୟା ଅକଳିତ
ଦେବଦାନବେ ମାନବେ ଅଟେ ଅବିଦିତ ।
ଏହାକୁ ମାରିଲୁ ଏଣୁ ବୋଲୁ ତୋତେ ଧନ୍ୟ
ତ୍ରିଭୁବନରେ ହେଲୁ କଲ୍ୟାଣ ଭାଜନ ।
ପାତାଳକେତୁ ମରିବା ଦେଖିଣ କଳାପା
ଧାଇଁଲା ସେ ମନେ ମନେ ହୋଇ ବଡ଼ ଖପପା
ଧନୁଶର ଆଚ୍ଛାଦିଲେ ନାରାଚେ ଗଗନ
ଏକବାଣେ କାଟିଲେ ତା ସୁମିତ୍ରା ନନ୍ଦନ ।
ପାଶୁପତ ବାଣ କୋପେ ବସାଇଲେ ଗୁଣେ
ରୁଦ୍ରଦେବତାଙ୍କୁ ସୁମରିଲେ ମନେ ମନେ ।
ସୂତ୍ରସନେ ରୁଦ୍ରତେଜ ଦେଲୁ ଆମ୍ଭେ ତାଙ୍କୁ
ମନ୍ତ୍ର ପଢ଼ି ଫିଙ୍ଗିଦେଲା କୋପେ ନାରାଚକୁ ।

ରୁଦ୍ର ମୂର୍ତ୍ତି ଧରଗଲା ଗଗନକୁ କ୍ଷେପି
ହୋଇଲା ଶର ପ୍ରଳୟ ଅନଳ ସ୍ୱରୂପୀ
ରଥ ସହିତ କଳପା ଅସୁରକୁ ଦହି
ଲକ୍ଷ୍ମଣ ତୂଣୀରେ ଆସି ବାହୁଡ଼ିଣ ରହି ।
ଦେଖିଣ ଦେବତାଗଣେ ପରଶଂସା କଲେ
ଲକ୍ଷ୍ମଣଙ୍କୁ ଧନ୍ୟ ଧନ୍ୟ ବୋଲିଣ ବୋଇଲେ ।
ଜୟ ଜୟ ଶବଦରେ ପୂରିଲା ଆକାଶ
ଚଣ୍ଡ ବୋଲେ ଏକା ଅଛି ଦୁର୍ଦ୍ଦାନ୍ତ ରାକ୍ଷସ ।

— ❊ —

## ସୀତାଙ୍କର କାଳୀରୂପ ଧାରଣ ଓ ଲକ୍ଷଣିରା ବଧ

ଏଥୁଅନ୍ତେ ହିମବନ୍ତ ଜେମା ଭୁଗୋ ଶୁଣ
ପାପ ତମିରକୁ ଏହି ସୂର୍ଯ୍ୟସମ ଜାଣ ।
ଶୂର ଯାଇଁ ଜଣାଇଲା ଲକ୍ଷଶିରା ଆଗେ
ପାତାଳକେତୁ ଅସୁର ମଲା ମନ୍ତ୍ରୀସଙ୍ଗେ ।
ଦୁହେଁ ଶୂର ନର ହାତେ ହରାଇଲେ ପ୍ରାଣ
ରାମଠାରୁ ଏ ମାନବ ବୀରପଣେ ଟାଣ ।
ଶୁଣି ଲକ୍ଷେଶିରା କୋପେ ଉଠେ ଶିରଝୁଣି
ଧାଇଁଲାକ ଅସମ୍ଭାଳ ହୋଇ ଗଦା ଘେନି ।
ଚକ୍ରପ୍ରାୟ ବୁଲାଇଲା ଦେଇ ସିଂହରଡ଼ି
ଆକାଶ ଘୋଟିଛି ତାର କାୟାକୋଟି ବେଢ଼ି ।
ଦେଖି ଦାନବର ସେହି ଭୟଙ୍କର ରୂପ
ବେଳୁ ବେଳ ବଢ଼ିଗଲା ଲକ୍ଷ୍ମଣଙ୍କ କୋପ ।
ଧନୁର୍ଧର ବିନ୍ଧିଲେ ଯେ କୋଟି କୋଟି ବାଣ
ଅସୁର ଦେହରେ ପଡ଼ି ସବୁ ହୁଏ ଚୂର୍ଣ୍ଣ ।
ଗର୍ଜ୍ଜଇ ସେ କାଳାନ୍ତକ ମେଘ ପରକାରେ
ବୋଲଇ ମାନବ ଫେରିଯିବୁ କେଉଁ ଘରେ ।
ଟିକି ଟିକି କରି ତୋର ମାଂସ ଦେବି ଖାଇ
ପାତାଳକେତୁର ହନ୍ତାମଲେ ତୋର ଭାଇ ।
ତୁ ମରିବୁ ମୋର ହସ୍ତେ ଘଡ଼ିଏକ ରହ
ପୂରିଲାଣି ତୋ ଆୟୁଷ ଯିବୁ ଯମଗୃହ ।
ଏତେ କହି ଗଦାଧରି ଅଇଲାକ ଧାଇଁ
ହନୁମାନ ଗଦା ନେଲା ହସ୍ତରୁ ଛଡ଼ାଇ ।
ପିଟିଲା ସେ ଲୁହାଗଦା ବୁଲାଇ ତା ଶିରେ
ମୂର୍ଚ୍ଛା ଯାଇଣ ଅସୁର ପଡ଼ିଲା ଭୂମିରେ ।
ବିଶ୍ୱମୂର୍ତ୍ତି ଧରି ହନୁ ବସିଲାକ ମାଡ଼ି
ଅଚେତନ ହୋଇ ଦୈତ୍ୟ ତଳେ ଅଛି ପଡ଼ି ।
ଶୁଣ ଶାକମ୍ଭରୀ ଭୁଗୋ ଅଦ୍ଭୁତ କଥାଏ
ଲୟ ଲଗାଇଲେ ସୀତା ଯୋଗମାୟା ପ୍ରାୟେ
ଆସନକୁ ଦୃଢ଼କରି ଧ୍ୟାନେ ହେଲେ ମଗ୍ନ
ଯୋଗମାୟା ଅହୋରାତ୍ରେ ହୋଇଲେ ପ୍ରସନ୍ନ ।
ବୋଇଲେ କି ବରେ ଇଚ୍ଛା ଅଛଇ ତୋହର
ମାଗିଲା ମାତ୍ରକେ ତୋତେ ଦେବି ସେହି ବର ।
ଏମନ୍ତ ଆକାଶ ବାଣୀ ଶୁଣି ଠାକୁରାଣୀ
ଯୋଗମାୟା ସ୍ତୁତି କଲେ ଯୋଡ଼ି କେନପାଣି ।
ବୋଇଲେ ଗୋ ମାତାଯେବେ ହୋଇଲୁ ପ୍ରସନ୍ନ
ଯେମନ୍ତେ ମରିବ ଏହି ବଳିଙ୍କା ରାଜନ ।
ତହିଁର ଉପାୟ ମୋତେ କହ କୃପାକରି
ଏମନ୍ତ ଶୁଣି ବୋଇଲେ ସେହି ଆଦ୍ୟନାରୀ ।
ମୋର ତେଜବଳେ ତୁଲୋ ଅସୁରକୁ ମାର
ଭିନ୍ନ କିଛି ନାହିଁ ଜାଣ ତୋହର ମୋହର ।
ଅସୁର ନାଶିବାପାଇ ଜନ୍ମିଅଛୁ ତୁହି
ଏବେ ମୋର ତେଜଘେନ ହେଉଅଛି ମୂର୍ତ୍ତି ।
ଏତେ କହି ଆପଣାର ତେଜ ଦେଲେ ରଖି
ତହୁଁ ପୁଷ୍ପକ ରଥରେ ବସିଲେ ସୁମୁଖୀ ।
ରାମଙ୍କ ବଚନେ ଦେବୀ ହୋଇ ଉନମତ୍ତା
ଅସୁର ମାରିବା ପାଇଁ ବାହାରିଲେ ସୀତା ।
ବୋଇଲେ ରଥକୁ ତୁହୋ ଯାଅ ବେଗ ହୋଇ
ଯହିଁ ଲକ୍ଷ୍ମଣ ସଙ୍ଗରେ ଅସୁର ଯୁଝଇ ।
ଆଜ୍ଞାମାତ୍ରେ ଦେବଯାନ ଶୂନ୍ୟେ ଗଲା ଚଳି
ସମର ଭୂମିରେ ଯାଇଁ ନିମିଷକେ ମିଳି ।
ଅସୁର ଗୁଛରେ ହନୁ ରୁଦ୍ର ମୂର୍ତ୍ତି ଧରି
ବସିଥିଲା ଚେତାପାଇ ଗରଜନ କରି ।

ପେଲଦେଲା ହନୁମାନ ପଡ଼ିଲାକ ଖସି
ଉଠି ହନୁକୁ ଧଇଲା ହସ୍ତେ ଦୃଢ଼େ କଷି ।
କାଖତଳେ ଯାକଦେଇ ଧାଇଁଲା ଅସୁର
ଲକ୍ଷ୍ମଣଙ୍କୁ ଧରିବାକୁ ବଢ଼ାଇଛି କର ।
ଧନୁ ଧରି ଅନୁକ୍ଷଣେ ସୁମିତ୍ରା ନନ୍ଦନ
ହାନୁଛନ୍ତି ତୀକ୍ଷ୍ଣ ତୀକ୍ଷ୍ଣ ବାଣ ଘନ ଘନ ।
ବ୍ରହ୍ମଶକ୍ତି ଶୂଳଶକ୍ତି ବଜ୍ରଶକ୍ତି ବାଣ,
ଅର୍ଦ୍ଧଚନ୍ଦ୍ର ବାବଲ ଯେ ଶର ନାରାୟଣ ।
ବିଷ୍ଣୁ ଚକ୍ର ବୈଷ୍ଣବୀ ଚକ୍ର ନାରାୟଣୀ
ପାଶୁପତ ରୁଦ୍ରଶର ଚକ୍ର କାତ୍ୟାୟନୀ ।
ନାଗପାଶ କାଳପାଶ ପାଶ ବରୁଣର
ମାରନ୍ତି ବିଶ୍ରାମ ନାହିଁ ସୁମିତ୍ରା କୁମର ।
ଅଗ୍ନିଶର ସୂର୍ଯ୍ୟଶର ବ୍ରହ୍ମାସ୍ତ୍ର ଆବର
ପବନ ପର୍ବତ ଆଦି ଯେତେ ଦେବଶର ।
ସବୁ ଗିଳି ଦେଲା ଦୈତ୍ୟ ବଦନ ବିସ୍ତାରି
ଶୂଳ ଗଦା ଅସିପତ୍ର କୁନ୍ତ ଆଦି କରି ।
ସବୁ ଗିଳି ଆଁ ଆଁ କରି ଧାଇଁଲା ଦଇତ
ଦେଖନ୍ତି ବେଳ ଅସୁରର ବଳ ଅପ୍ରମିତ ।
ହାନି ହାନି ସଉମିତ୍ରି ଅସକତ ହେଲେ
ଭୟ ପାଇ ଯୁଦ୍ଧ ତେଜ ତହୁଁ ପଳାଇଲେ ।
ଗୋଡ଼ାଇଛି ଦାନବ ଯେ ରହ ରହ କହି
ପଳାନ୍ତି ଲକ୍ଷ୍ମଣବୀର ପଛକୁ ନ ଚାହିଁ ।
ଗୋଡ଼ାଇଛି ଦାନବ ଯେ କରି ଘୋର ରଡ଼ି
ହନୁମାନ ଦାନବର କାଖୁଁ ଖସି ପଡ଼ି ।
ମୂର୍ଚ୍ଛା ଗଲା ବୀର ଗୋଟି ବିଷମ ଆଘାତେ
ଧାଇଁ ଧାଇଁ ସଉମିତ୍ରି ଭୟେ ହସ୍ତବ୍ୟସ୍ତେ ।
ବୋଇଲେ ଗୋ ମାତ ସୂର୍ଯ୍ୟବଂଶ ଠାକୁରାଣୀ
ଦାନବତ ଭୟଙ୍କର କାଳଯମ ଜାଣି ।
ଧାଇଁଅଛି ନିଶ୍ଚେ ଆଜ ଖାଇଯିବ ମୋତେ
ଅଯୋଧ୍ୟା ପୁରକୁ ତୁମ୍ଭେ ପଳା ଯା ତୁରିତେ ।
କାହିଁଗଲ ରଘୁକୁଳ ନାଥ ଆସି ରଖ
ଗିରି ଗୁହା ପରି ଦିଶେ ଦାନବର ମୁଖ ।
ଏମନ୍ତ ଦୁର୍ବାର ଦୈତ୍ୟ ଦେଖି ନାହିଁ କାହିଁ
କହୁଛନ୍ତି ଧାଇଁଛନ୍ତି ବିଶ୍ରାମ ଯେ ନାହିଁ ।
ବୁଲିଲଣି ସେ ପ୍ରଚଣ୍ଡ ଗିରି ଚାରିପାଖ
ଯୋଜନେକ ଦୀର୍ଘପ୍ରସ୍ଥ କରିଗୋଟାଯାକ

ଲକ୍ଷ୍ମଣ କାତର ବାଣୀ ଶୁଣି ବଇଦେହୀ
ପୁଷ୍ପକରଥରୁ ଦେବୀ ପଡ଼ିଲେକ ଡେଇଁ ।
ମହାକାଳୀ ରୂପକୁ ସେ ଧଇଲେ ସେକାଳେ
ଚଲ ଆସିମାଛ ଝାମ୍ପି ନିଏ ଯେସନେ ଜଳେ ।
ପକ୍ଷୀଙ୍କି ଯେସନେ ଶୂନ୍ୟ ବାଜ ନିଏ ମାରି
ତେସନ ତେଡ଼େ ଅସୁର ଗୋଟାକୁ ଯେ ଧରି
ଭୂମିରେ ପକାଇ ମାଡ଼ି ବସିଲେ ଛାତିରେ
ବଜ୍ରଶୂଳ ପ୍ରହାରିଲେ ଅସୁର ନାଭିରେ ।
ନାଭି ଫୁଟି ମହୀ ଫୁଟି ଗଲା ସେହି ଶୂଳ
ସପତ ପାତାଳ ଭେଦି ଭେଦିଲା ଅତଳ ।
ମହାକାଳୀ ଭଇରବୀ ରୂପ ଭୟଙ୍କର
ଶୁର ଅସୁର ତହିଁକ କେତେକ ମାତର ।
କ୍ଷଣକରେ ତାର ପ୍ରାଣଲିଙ୍ଗ ନେଲେ ହରି
ସଂହାର ମୂରତି ଦେବୀ ମହାଭୟଙ୍କରୀ ।
ସହସ୍ର ହସ୍ତରେ ଧରି ସହସ୍ରେକ ଅସ୍ତ୍ର
ସହସ୍ର ମୁଖରେ ତିନି ସହସ୍ର ଯେ ନେତ୍ର ।
ଲହ ଲହ ଜିଭ ପୁଣି ଗହ ଗହ ନାଦ
ଗହ ଗହ ଶୁଭୁଅଛି ନିଶ୍ୱାସ ଶବଦ ।
ରହ ରହ ଦାନବରେ ଯିବୁ ଆଜ କାହିଁ
ଏହା କହି ନାଚୁଛନ୍ତି ଦୈତ୍ୟ ଉରେ ରହି ।
ଚଉଦ ବ୍ରହ୍ମାଣ୍ଡଯାକ ଭୟେ ଥରହର
ବେଳୁଟବେଳ ଭୟଙ୍କର ସମୁଦ୍ର ଜୁଆର ।
ବଡବା ଅନଳ ଶିଖା ଉପରକୁ ଉଠେ
ଗୁପତେ ଦାନବ ତର ଥିଲା ତରୁ ଫୋଟେ ।
ପଳାଇ କହିଲା ଯାଇଁ ରାଣୀର ଅଗରେ
ଉଠି କହି ନ ପାରଇ ଭୟେ ହସ୍ତବ୍ୟସ୍ତେ ।
ବହି ମଡ଼ୁଅଛି ତାର ନେତ୍ରୁ ଅଶ୍ରୁଜଳ
ହେ ଦଇବ ବୋଲି କରି ମାରଇ କପାଳ ।
ରାଣୀ ବୋଇଲେ ରେ ଚର କହେଲୁ କହେଲୁ
କି କହିବ ମାତ ବୋଲି ଚର ଜଣାଇଲା ।
ଅକସ୍ମାତେ କାହୁଁ ଏକ ଦେବୀ ଧାଇଁଆସି
ରାଜାଙ୍କୁ ପକାଇ ତାଙ୍କ ଛାତିପରେ ବସି ।
ନାଭିରେ ମାରିଣ ଶୂଳ ହରିନେଲେ ପ୍ରାଣ
ସେ ଦେବୀ ମୂରତି ମହାଭୟଙ୍କର ଜାଣ ।
କେତେମୁଖ କେତେନେତ୍ର କେତେହଜାର ହସ୍ତ
ଧରିଅଛଇ ସେ ଦେବୀ ଅସଂଖ୍ୟ ଯେ ଅସ୍ତ୍ର ।

ଲହ ଲହ ଜିଭ କରି ଘୋଟିଛୁ ବ୍ରହ୍ମାଣ୍ଡ
ବଦନ ତାହାର ନବ ନୀଳ ମେଘଖଣ୍ଡ ।
ଦେଖି ମହାଭୟ ପାଇ ଅଇଲ ପଳାଇ
ଶୁଣି ମହାକୋପ କରି ଉଠେ ମହାଦୈତ୍ୟ ।
ଵିଲଙ୍କା ନଗରେ ଥିଲେ ଯେତେକ ଅସୁରି
ସମସ୍ତଙ୍କୁ ବୋଇଲା ଲୋ ଆସ ବେଗକରି ।
ବିଧବା ହୋଇ କମ୍ପାଇ ରହିବା ଏ ପୁରେ
ରଣସଜ୍ଜ କରିବା ନା ଗୃହ ଲୋ ସମରେ ।
ଯେତେ ବାଳ ବୃଦ୍ଧ ସ୍ତିରି ଯୁବା ଅଛ ବର୍ଗି
ସମସ୍ତେ ଆସ ମୃତ୍ୟୁକୁ ନ କରିଣ ଭ୍ରାନ୍ତି ।
ସ୍ୱାମୀମାନଙ୍କର ଶବ ଇନ୍ଧନ କରିବା
ରଣଭୂଇଁ ଗୋଟାଯାକ କୁଣ୍ଡ ନିର୍ମାଣିବା ।
ରୁଧିର ଘୃତକୁ ତହିଁ କରିବା ଆହୁତି
ନର ବାନରଙ୍କୁ ବଳି ଦେଇ ସମାପତି ।
ପଶିବା ଅନଳ କୁଣ୍ଡେ କଥା ରହିଥିବ
ରାଣୀର ମୁଖରୁ ଶୁଣି ଏମନ୍ତ ପ୍ରସ୍ତାବ ।
ସକଳ ଅସୁରି ଆସି ହୋଇଲେକ ଜୁଣ୍ଡ
ଧରିଛନ୍ତି ଖଣ୍ଡା ଛୁରି ଅସି ଯଷ୍ଟି ଦଣ୍ଡ
ହୁଳହୁଳି ଧ୍ୱନିରେ ଯେ ପୂରିଛୁ ସେ ପୁର
ବାଳ ବୃଦ୍ଧ ଯୁବା ଥିଲେ ଯେତେକ ଅସୁର ।
ସମସ୍ତେ ଅଇଲେ ଏକ ନ ରହିଲେ ପୁରେ
ଖରଣସି ମହାଦୈତ୍ୟ ହୋଇଛି ଆଗରେ ।
ହୁଳହୁଳି ଦେଇ ଆସୁଅଛନ୍ତି ଅସୁରି
ଏହା ଦେଖି ମହାମାୟା ବଦନ ବିସ୍ତାରି ।
ଅସୁରିମାନଙ୍କୁ ଦେଲେ ଗର୍ଭରେ ପୂରାଇ
ଏ ଅଦ୍ଭୁତ କର୍ମ ଯହୁଁ କଲେ ମହାମାୟୀ ।
ଏଣେ ମୋହ ଯାଇଥିଲା ପବନ ନନ୍ଦନ
ମହାରୁଦ୍ର ମୂରତିକି କରିଣ ଧାରଣ ।
ବାଳବୃଦ୍ଧ ଯୁବାଙ୍କୁ ସେ ପକାଇଲା ମାରି
ନିର୍ଦ୍ଦୟ କଣ୍ଠରେ ଦୟା ନାହିଁ ଯେ ତାହାରି ।
ସୀତାଙ୍କର ସେ ଅଦ୍ଭୁତ ରୂପ ଦେଖି ଡରେ
ଲକ୍ଷ୍ମଣ ଯେ ରହିଛନ୍ତି କରଯୋଡ଼ି ଶିରେ ।
ହନୁମାନ ଖଣ୍ଡେଦୂରେ ହୋଇଅଛି ଉଭା
ଜଗ ଵିଜଗ ବ୍ୟାପିଛି ଜାନକୀଙ୍କ ପ୍ରଭା ।
ହରି ବ୍ରହ୍ମା ଆଦି ଦେବେ ଭୟରେ କାତର
ଵିଲଙ୍କା ଭୁବନେ ମିଳି ସକଳ ଅମର ।
କର ଦୁଇ ଶିରେ ଦେଇ କରୁଛନ୍ତି ସ୍ତୁତି
ଜୟ ଜୟ ଜାନକୀ ଗୋ ସଂହାର ମୂରତି ।
ଜୟ ଜୟ ଜାନକୀ ଗୋ ରାମର ଘରଣୀ
ତୁହି ମାତା ଯୋଗମାୟା ସଂସାର ତାରିଣୀ ।
ତୁହି ମା ଅନାଦି ଆଦି ଶକତି ଅଭୟା
ତୁହି କାଳୀ କି କପାଳୀ ତୁ ଜୟା ଅଜୟା ।
ତୋହର ମହିମା ମାଗୋ ତୁହି ଏକା ଜାଣୁ
ମେରୁ ହୋଇପାରୁ ତୁଟଗୋ ହୋଇପାରୁ ଅଣୁ ।
ଯୁଗେ ଯୁଗେ ରଖୁ ମାଗୋ ସଙ୍କଟୁ ଆମ୍ଭଙ୍କୁ
ଏକ ଏକ ରୂପେ ମାଗୋ ମାରି ଦାନବଙ୍କୁ ।
ଏମନ୍ତେ ବହୁତ ସ୍ତୁତି କଲେ ଦେବଗଣ
ତହିଁରେ ଯହୁଁ ଜାନକୀ ନୋହିଲେ ପ୍ରସନ୍ନ ।
ଦେଖି ହରି ବ୍ରହ୍ମା ଦୈନ୍ୟ ଯୋଡ଼ିଲେକ କର
ପଢ଼ିଲେ ସହସ୍ରନାମ ସୀତା ଦେବୀଙ୍କର ।
ସେ ସହସ୍ର ନାମ ଶୁଣି ଜନକ ଦୁଲଣୀ
ବୋଇଲେ ବ୍ରହ୍ମାଙ୍କୁ ଚାହିଁ ଆହେ କୁଟପାଣି ।
ଯେ ପଢ଼ିବ ତୋର କୃତ ମୋ ସହସ୍ର ନାମ
ତାହାର ପୂର୍ଣ୍ଣ କରିବ ନିଶ୍ଚେ ମନସ୍କାମ ।
ଧନ ଜନ ଗୋପ ଲକ୍ଷ୍ମୀ ବଢ଼ିବ ତାହାର
କହିଲ ଯେଉଁ ସହସ୍ର ନାମ ଯେ ମୋହର ।
ତ୍ରିସନ୍ଧ୍ୟାରେ ଶ୍ରଦ୍ଧାରେ ଯେ ପଢ଼ିବ ଶୁଣିବ
ମାରିଭୟ ରାଜଭୟ ତାକୁ ନ ଲାଗିବ ।
ସକଳ ବିପଦ ମୁହିଁ ଖଣ୍ଡିବି ତାହାର
ସତ୍ୟ ସତ୍ୟ କହୁଛି ମୁଁ ଆହେ ବେଦଵର ।
ମୋର ଏହି ମହାକାଳୀ ରୂପ ଭୟଙ୍କର
ଏହିରୂପେ କରଇ ମୁଁ ଜଗତ ସଂହାର ।
ଏରୂପେ ମୋତେ ଯେ ପୂଜା କରିବ ଶ୍ରଦ୍ଧାରେ
ଗନ୍ଧପୁଷ୍ପ ଧୂପ ଦୀପ ଦେଇ ମୋ ପୟରେ ।
ବଳଭୋଜ୍ୟ ଦେଇ ମୋତେ ପୂଜିବ ଯେ ଜନ
ତାର ମନବାଞ୍ଛା ପୂର୍ଣ୍ଣ ହେବ ପଦ୍ମାସନ ।
ବିଗ୍ରମାସେ କୃଷ୍ଣପକ୍ଷେ ଯେ ପୂଜିବ ମୋତେ
ତାହାକୁ ଅଭୟବର ଦେବ ଏ ଜଗତେ ।
କାହିଁ ଅଛନ୍ତି ହୋ ସ୍ୱାମୀ ଦିଅ ମୋତେ ଆଣି
ନୋହିଲେ ବ୍ରହ୍ମାଣ୍ଡ ଯାକ ଭକ୍ଷିବି ଏକ୍ଷଣି ।
ଦେବ କି ଦାନବ ଯକ୍ଷ ମାନବ କି ନାଗ
କିନ୍ନର ଗନ୍ଧର୍ବ ଋଷି କୀଟହିଁ ପତଙ୍ଗ ।
ବୃକ୍ଷ ଗିରି ଜଳ ସ୍ଥଳ ନ ରଖିବି ମୁହିଁ
ଶୁଣି ମହାଭୟେ ଦେବେ ବ୍ରହ୍ମା ମୁଖ ଚାହିଁ ।
କି କରିବା କାହୁଁ ଦେବ କାହିଁ ଛନ୍ତି ରାମ
ଇନ୍ଦ୍ର ପଚାରିଲେ ଜାଣୁ ତୁହି କହୋ ଯମ ।

ତାର ଯମ ରାଜା କମ୍ପେ ହୋଇ ଥରହର
ରାମଙ୍କୁ କି ରଖିବାକୁ ଶକ୍ୟ ମୁହିଁ ଛାର ।
ନାଗମାନଙ୍କୁ ଯେ ଗୁହିଁ ବୋଇଲେ ବାସବ
ପାତାଳପୁରର କଥା ଜାଣ ତୁମ୍ଭେ ସବ ।
ଶ୍ରୀରାମ ଅଛନ୍ତି କାହିଁ ଜାଣିଥିଲେ କହ
ନ ଦେଲେଟି ନ ରହିବ ଏ ଆମ୍ଭର ଦେହ ।
ଚନ୍ଦ୍ରଚୂଳ ନାମେ ନାଗ ବୋଇଲା ଏମନ୍ତ
ଅନ୍ଧକୂପେ ପକାଇଲା ଅସୁର ଦୁର୍ଦ୍ଦାନ୍ତ ।
ମୁଁ ତାହାଙ୍କୁ ରଖିଅଛି ମୋ ପୁରେ ଯତନେ
ମଣିନାଗ ବୋଲେ ଦେବ ସହସ୍ର ଲୋଚନେ ।
ଭରତକୁ ବିଷକୂପେ ପକାଇଲା ନେଇ
ଯତନ କରି ମୋ ପୁରେ ଅଛି ମୁହିଁ ଥୋଇ ।
ଆଦିତ୍ୟ ଦେବତା ତହୁଁ ବୋଇଲେ ଏମନ୍ତ
କପିରାଜ ସୁଗ୍ରୀବକୁ ନେଇ ସେ ଦୁରନ୍ତ ।
ତପ୍ତକୂପେ ପକାଇଲା ଯାଇଥାନ୍ତା ପୋଡ଼ି
ପୁତ୍ର ଜାଣି କରଣକୁ ନେଲି ତହୁଁ କାଢ଼ି ।
ପଡ଼ିଅଛି ତହିଁ ତାର ନାହିଁ ଏକା ପ୍ରାଣ
ତାହାକୁ ଜୀଆଇ ତହୁଁ ଯାଇଁ କାଢ଼ିଆଣ ।
ଶୀତଳ ହୋଇଛି ଜଳ ପାରିବ ତ ପଶି
ଏମନ୍ତ ଶୁଣି ବାସବ ମନେ ହୋଇ ଖୁସି ।
ବୋଇଲା ଶତ୍ରୁଘ୍ନ କାହିଁ ଅଛି କଏ ଜାଣ
ନାରଦ ବୋଇଲେ ଜାଣେ ଆହେ। ସୁରଗଣ
ବିଶ୍ୱାବସୁ ଗନ୍ଧର୍ବର ଘରିଯା ରଖିଛି
ଅସୁର ମାୟାନ୍ଧରେ ସେହୁ ରହିଅଛି ।
ବାସବ ବୋଇଲେ ଆଣ ବିଳମ୍ବ ନ କର
ଚନ୍ଦ୍ରଚୂଳ ଯାଇଁ ଆଣିଦେଲା ରଘୁବର ।
ମଣିନାଗ ଭରତକୁ ଆଣିଦେଲା ବେଗେ
ତପତ କୂପରେ ପଶି ବୁଡ଼ି ବୁଡ଼ି ନାଗେ ।
ସୁଗ୍ରୀବକୁ ଆଣିଦେଲେ ନାହିଁ ତାର ପ୍ରାଣ
ନାରଦ ପାତାଳ ପୁରେ ମିଳିଲେ ତକ୍ଷଣ ।
ରତ୍ନାବତୀ ସହିତରେ ଶତ୍ରୁଘ୍ନକୁ ଆଣି
ଦେଲେ ସେ ବିଲଙ୍କାପୁରେ ଯହିଁ ବଜ୍ରପାଣି ।
ଅମୃତ ସିଞ୍ଚିଲେ ଇନ୍ଦ୍ର ବଞ୍ଚିଲା ସୁଗ୍ରୀବ
ବଞ୍ଚିଲେ ଅଙ୍ଗଦ ନଳ ନୀଳ ଯେ ଜାମ୍ବବ ।
ବିଭୀଷଣ ବଞ୍ଚିଲା ଯେ ଅମୃତ ସିଞ୍ଚନେ
ଦେଖି ଦେବୀ ବଇଦେହୀ ରାମଙ୍କ ଅଗ୍ରତେ ।
ପ୍ରସନ୍ନେ ସେ ରୂପ ତେଜି ଭଜିଲେକ ଶାନ୍ତି
ଜୟ ଜୟ ଶବଦରେ ପୁରେ ବସୁମତୀ ।
ଶ୍ରୀରାମ ବୋଇଲେ ଇନ୍ଦ୍ର ବଦନକୁ ଚାହିଁ
ଗନ୍ଧର୍ବଙ୍କ ପୁର ଆଜୁ ହେଲା ଏହି ଭୂଇଁ ।
ଏହାକହି ଦେବତାଙ୍କୁ ଦେଲେକ ମେଲାଣି
ପୁଷ୍ପକରଥେ ବସିଲେ ଜନକ ଦୁଲଣୀ ।
ଶ୍ରୀରାମ ଭରତ ହନୁ ଶତ୍ରୁଘ୍ନ ସୁଗ୍ରୀବ
ବିଭୀଷଣ ନଳ ନୀଳ ଅଙ୍ଗଦ ଜାମ୍ବବ ।
ସମସ୍ତେ ବସିଲେ ରଥ ଗଲା ଶୂନ୍ୟମାର୍ଗେ
ଯୁଦ୍ଧକଥା ହନୁ କହେ ଶ୍ରୀରାମଙ୍କ ଆଗେ ।
ଶୁଣି ବିଗୁରନ୍ତି ସର୍ବେ ବସି ଏହି ରଥେ
ଏମନ୍ତ ଦାନବ କାହିଁ ଦେଖିନାହୁଁ ନେତ୍ରେ ।
ଧନ୍ୟ ତୁ ଲକ୍ଷ୍ମଣ ଯାହା ମାରିଲୁ ତାହାକୁ
ବଞ୍ଚାଇଲେ ସୀତାଦେବୀ ଆସି ଯେ ଆମ୍ଭଙ୍କୁ ।
ଏମନ୍ତ ଯେ କୁହାକୁହି ହେଉଁ ଗଲା ରଥ
ନିମିଷକେ ଅଯୋଧ୍ୟାରେ ହେଲା ଉପଗତ ।
ଗୃହକ ପରାସ୍ତେ ଲୋକେ ଗୁହିଁଥିଲେ ବସି
ପୁଷ୍ପକ ବିମାନ ଶୂନ୍ୟେ ଦେଖି ହେଲେ ଖୁସି ।
କେ ବୋଇଲା ଅଇଲାଣି ଦେଖ ଗୋ ପୁଷ୍ପକ
କେ ବୋଇଲା ଅଛନ୍ତି ତ ଅଯୋଧ୍ୟା ନାୟକ ।
କେ ବୋଇଲା ବସିଛନ୍ତି ଜନକ ଦୁଲଣୀ
କେ ବୋଇଲା ଲକ୍ଷ୍ମଣ ଯେ ହୋଇ ଧନୁପାଣି ।
ବସିଛନ୍ତି ଭରତଙ୍କ ପାଖରେ ଗୋ ଦେଖ
ଶତ୍ରୁଘ୍ନ ତ ବସିଛନ୍ତି ତାହାଙ୍କର ପାଖ ।
କେ ବୋଲଇ ହନୁକୁ ଗୋ ଦେଖ କିନା ତୁହି
କରଯୋଡ଼ି ପ୍ରଭୁଙ୍କର ଆଗେ ଅଛି ରହି ।
ବାନରରାଜାକୁ ଦେଖ ବସିଅଛି ପାଖେ
ବିଭୀଷଣହିଁ ଅଛଇ ତ ର ବାମପାଖେ ।
ନଳ ନୀଳ ଜାମ୍ବବ ତ ଅଛନ୍ତି ଗୋ ତହିଁ
କହୁଁ କହୁଁ ରଥ ଯାଇଁ ପୁରରେ ମିଳଇ ।
କଉଶଲ୍ୟା ଦେବୀ ଦେଖି ପୁତ୍ରର ବଦନ
ଧାଇଁ ଆସି ସ୍ନେହଦେଲେ ବଦନେ ଚୁମ୍ବନ ।
ସକଳ ମାତାଏ ଆସି ମିଳିଲେକ ତହିଁ
ସୀତାଯୋଗୁଁ ବଞ୍ଚିଲୁ ଯେ ରାମଚନ୍ଦ୍ର କହି ।
ଶୁଣିଣ ସମସ୍ତେ କଲେ ସୀତାଙ୍କୁ ପ୍ରଶଂସା
ସୀତା ରାମ ପାଦେ ଚନ୍ଦ୍ରଧରର ଭରସା ।

—ସ ମା ପ୍ତ—

ମୁଦ୍ରାକର — ଜାନକୀ ମହାନ୍ତି, ଶଶିକା ପ୍ରିଣ୍ଟିଂ ପ୍ରେସ, କଟକ-୨

# ବିଜ୍ଞାପନ

ପ୍ରିୟ ବ୍ୟବସାୟୀ ଓ ଗ୍ରାହକମାନଙ୍କୁ ଅନୁରୋଧ କରୁଅଛୁ କି ଆମ୍ଭର କଟକ ଧର୍ମଗ୍ରନ୍ଥ ଷ୍ଟୋରରେ ହିନ୍ଦୁ ଜଗତର ନାନାବିଧ ଉପାଦେୟ ଗ୍ରନ୍ଥ, ଭୃଗୁସଂହିତା, ପୁରୋହିତ କର୍ମକାଣ୍ଡ, ବିହାରୀ କର୍ମକାଣ୍ଡ, ବିହାରୀଲାଲ ଗୀତା, ଡାଣ୍ଡୀ ବ ଜଗମୋହନ ( ଦକ୍ଷିଣୀ-ରାମାୟଣ ), ପାତଞ୍ଜଳ ଯୋଗଦର୍ଶନ ଆଦି ଧର୍ମଶାସ୍ତ୍ରୀୟ ଗ୍ରନ୍ଥ, ପଞ୍ଜିକା, ଜ୍ୟୋତିଷ, ନାଟକ, ଉପନ୍ୟାସ ଓ ପୁରାଣ ପ୍ରଭୃତି ପୁସ୍ତକ ବିକ୍ରୟ ନିମନ୍ତେ ଗଚ୍ଛିତ ଅଛି । ଗ୍ରାହକ ଓ ବ୍ୟବସାୟୀମାନଙ୍କୁ ଉଚିତ କମିଶନ ଦିଆଯାଏ ।

ଏତଦ୍ ବ୍ୟତୀତ—ସକଳ ଧର୍ମରକ୍ଷା ଓ ଜଗଜ୍ଜନଙ୍କର ସୁଖ ଶାନ୍ତ୍ୟର୍ଥେ ଏକଲକ୍ଷ ଶ୍ଳୋକ ସମ୍ବଳିତ ପଦାର୍ଥ ଓ ସରଳ ଭାବାର୍ଥ ସହିତ—

**ଋକ୍, ଯଜୁଃ, ସାମ ଓ ଅଥର୍ବ**

## ଚତୁର୍ବେଦ

**ପ୍ରକାଶ ପାଇଲା**

ଏହା ଉତ୍କଳରେ ଓ ଉତ୍କଳାକ୍ଷରରେ ସର୍ବପ୍ରଥମ, ମୂଲ୍ୟବାନ ଅଦ୍ୱିତୀୟ ବିଶାଳ ଗ୍ରନ୍ଥ । ଗ୍ରାମର ପ୍ରତ୍ୟେକ ପାଠାଗାର ଓ ଦେବ-ମନ୍ଦିରାଦିରେ ପାଠକରି ଗୂଢ଼ତତ୍ତ୍ୱ ବୁଝି ସ୍ୱ ସ୍ୱ ଧର୍ମରକ୍ଷା କରନ୍ତୁ ।

---

ପ୍ରକାଶକ ଓ ପ୍ରାପ୍ତିସ୍ଥାନ—**ଧର୍ମଗ୍ରନ୍ଥ ଷ୍ଟୋର**
ପ୍ରୋପ୍ରାଇଟର—**ଶ୍ରୀ ବିଦ୍ୟାଧର ସାହୁ**
ଅଲିଶାବଜାର, କଟକ-୨
ଫୋନ୍ ନଂ-୨୫୭୯୭